# ଚନ୍ଦ୍ରଲୋକ ଯାତ୍ରୀ



ଲେଖକ— ଯୁଲୁସ୍ ଭର୍ଣ୍ଣ

ଅନୁବାଦକ—ଶ୍ରୀ ଗଣେଶ୍ୱର ମିଶ୍ର

ମୂଲ୍ୟ— ଦୁଇଟଙ୍କା ମାତ୍ର

ଅନୁବାଦକ

ଶ୍ରୀ ଗଣେଶ୍ୱର ମିଶ୍ର

ଅଠଗଡ଼

ପ୍ରଥମ ମୁଦ୍ରଣ

୧୯୭୨

ମୁଦ୍ରାକର

ଶ୍ରୀ ରାମଚନ୍ଦ୍ର କର

ସାରସ୍ୱତ ପ୍ରେସ

କଟକ—୧

# ଭୂମିକା

'ଚନ୍ଦ୍ରଲୋକ ଯାତ୍ରୀ' ମୋର ମୌଳିକ ଲେଖା ନୁହେଁ । ଏହା ପ୍ରସିଦ୍ଧ ଇଂରେଜ ଲେଖକ ଶ୍ରୀଯୁକ୍ତ ଯୁଲସ୍ ଭର୍ଣ୍ଣଙ୍କ ଲିଖିତ From Earth to the Moon ଓ Round the Moon ନାମକ ଦୁଇଟି ଇଂରେଜୀ ପୁସ୍ତକର ଅନୁବାଦ । ଉକ୍ତ ପୁସ୍ତକ ଦୁଇଟିରେ ସେ ବିଖ୍ୟାତ ଲେଖକ ଅତି ଚମତ୍କାର ବୈଜ୍ଞାନିକ ଗବେଷଣାମାନ କରିଛନ୍ତି ଏବଂ ଅନନ୍ତ ଶୂନ୍ୟମଣ୍ଡଳର ଯେଉଁ ପ୍ରାକୃତିକ ତଥ୍ୟମାନ ଗଳ୍ପ ଆକାରରେ ବର୍ଣ୍ଣନା କରିଯାଇଛନ୍ତି, ତାହା ବିଶେଷ ଆକର୍ଷଣୀୟ ହୋଇଅଛି । କୌତୁକପୂର୍ଣ୍ଣ ଉପନ୍ୟାସ ଛଳରେ ଉକ୍ତ ବିଷୟଗୁଡ଼ିକର ଅବତାରଣା ଏତେ ମନୋରମ ଯେ, ଇଂରେଜୀ ଅଭିଜ୍ଞ ପାଠକମାନେ ତାହା ପଢ଼ି ବିଶେଷ ଆନନ୍ଦ ଅନୁଭବ କରନ୍ତି ଏବଂ ତହିଁରୁ ବହୁ ଜ୍ଞାତବ୍ୟ ତଥ୍ୟ ମଧ୍ୟ ସଂଗ୍ରହ କରନ୍ତି ।

୧୯୪୦ ମସିହାରେ ପ୍ରଥମେ ମୁଁ ଉକ୍ତ ବହି ଦୁଇଟିକୁ ଓଡ଼ିଆରେ ଅନୁବାଦ କରିଥିଲି ଏବଂ ଏହାକୁ ପ୍ରକାଶ କରିବା ପାଇଁ ବହୁ ପ୍ରକାଶକଙ୍କୁ ଅନୁରୋଧ କରିଥିଲି । ମାତ୍ର ବହୁ ଚେଷ୍ଟା ସତ୍ତ୍ୱେ ସେମାନେ ଏହାକୁ ପ୍ରକାଶ କରିବାକୁ ଆଗ୍ରହ ନ କରିବାରୁ ମୁଁ ହତାଶ ହୋଇ ପାଣ୍ଡୁଲିପିଟିକୁ କୀଟମାନଙ୍କ ଆହାର ପାଇଁ ଛାଡ଼ି ଦେଇଥିଲି । ୧୯୫୭ ମସିହାରେ ଦୈବାତ୍ ଥରେ ଓଡ଼ିଶାର ତତ୍କାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଦୃଷ୍ଟି ଉକ୍ତ ପାଣ୍ଡୁଲିପି ପ୍ରତି ଆକୃଷ୍ଟ ହେବାରୁ, ତାଙ୍କ ଅନୁରୋଧରେ ଉତ୍କଳ ବିଶ୍ୱବିଦ୍ୟାଳୟ ଏହାକୁ ଗ୍ରହଣକରି ପ୍ରକାଶକରିବାକୁ ସମ୍ମତିଦାନ

ହୋଇଥିଲେ । ସେହି ଗ୍ରନ୍ଥରେ ଏତେକାଳପରେ ଏହା ପ୍ରକାଶିତ-ହେଉଛି । ସେଥିଲାଗି ମୁଁ ଭୂତପୂର୍ବ ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥ ଓ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ନିକଟରେ ଋଣୀ ।

ଶ୍ରୀ ଯୁଲ୍‌ସ୍ ଭର୍ଣ୍ଣଙ୍କ ଉପରୋକ୍ତ ପୁସ୍ତକ ଦୁଇଟିକୁ ମୁଁ ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ ଆକାରରେ ଗୋଟିଏ ଗ୍ରନ୍ଥରେ ସନ୍ନିବେଶିତ କରିଲି । ତାର କାରଣ, ଏହାକୁ ଦୁଇ ଭାଗରେ ପ୍ରକାଶ କରିଥିଲେ ପାଠକମାନଙ୍କ ଆଗ୍ରହରେ ଆଘାତ ଲାଗିଥାନ୍ତା । ଦୁଇଟି ଭାଗ ଏକତ୍ର କରିବା ଦ୍ୱାରା ଯଦ୍ୟପି ଏହାର କଳେବର ଟିକିଏ ବଢ଼ି ଯାଇଛି, ତଥାପି ବିଷୟର ଅମୂଳଚୂଳ ବିବରଣୀ ଏକତ୍ର ସନ୍ନିବେଶିତ ହେବାରୁ ପାଠକମାନଙ୍କ ମନୋରଞ୍ଜନ ପାଇଁ ଟିକିଏ ସୁବିଧା ହୋଇଅଛି । ବର୍ତ୍ତମାନ ଚନ୍ଦ୍ରଲୋକକୁ ଯିବା ପାଇଁ ଯେ ବିପୁଳ ଆୟୋଜନ ଚାଲିଛି, ଏବଂ ତାହା ଜନସାଧାରଣଙ୍କ ମନରେ ଯେପରି ଆଗ୍ରହ ଜାତ କରିଛି, ସେତେବେଳେ ଏ ପୁସ୍ତକ ସେମାନଙ୍କ ମନକୁ ବିଶେଷ ରୂପେ ଆକର୍ଷଣ କରି ସେମାନଙ୍କ ଚିନ୍ତାଧାରାକୁ ସୁରଞ୍ଜିତ କରିପାରିବ ବୋଲି ମୋର ଦୃଢ଼ ଆଶା ।

ତା ୨୭-୧-୬୨
ଆଠଗଡ଼
ଜି: କଟକ

ଶ୍ରୀ ଗଣେଶ୍ୱର ମିଶ୍ର

# ଚନ୍ଦ୍ରଲୋକ ଯାତ୍ରୀ

## ପ୍ରଥମ ଭାଗ

—ଏକ—

### ଗନ୍ କ୍ଲବ୍

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଉତ୍ତର ଆମେରିକାର ଉତ୍ତର ଓ ଦକ୍ଷିଣ ରାଷ୍ଟ୍ରମାନଙ୍କ ଭିତରେ ନାନା କାରଣରୁ ବିରୋଧ ବଢ଼ି ତାହା କ୍ରମେ ଘୋର ବିଦ୍ରୋହରେ ପରିଣତ ହୋଇଥିଲା । ଶତାବ୍ଦୀର ଶେଷଆଡ଼କୁ ଉଭୟ ପକ୍ଷ ଭିତରେ ଘୋର ଯୁଦ୍ଧ ଲାଗିଗଲା । ତହିଁରେ ଉଭୟ ପକ୍ଷରୁ ବହୁତ ଲୋକ ମଲେ; ବହୁତ ଲୋକ ଆହତ ହେଲେ ଏବଂ ବହୁତ ତୋପ, ଗୋଳା, ବାରୁଦ ଓ ପର୍ବତ ପ୍ରମାଣ ଅର୍ଥ ତହିଁରେ ବ୍ୟୟିତ ହେଲା । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏ ଯୁଦ୍ଧ ଲାଗି ରହିଥିଲା ।

ଏହି ଯୁଦ୍ଧବ୍ୟାପାରରେ ଉତ୍ତରଗୋଷ୍ଠୀର ଯାନ୍‌କିଦଳ ବେଶୀ ଉତ୍ସାହୀ ଓ ଅଗ୍ରଣୀ ଥିଲେ । ସେମାନେ ଏ ଯୁଦ୍ଧରେ ଅଶାତୀତ ଭାବରେ ସାହାଯ୍ୟ କରି ହଜାର ହଜାର ସୈନ୍ୟଙ୍କୁ ତାଲିମ୍ କରି ପଠାଉଥିଲେ ଏବଂ ରାଶି ରାଶି ଅର୍ଥ ଦେଶ ଭିତରୁ ସଂଗ୍ରହ କରି ଯୁଦ୍ଧ ବ୍ୟୟରେ ଲଗାଉଥିଲେ । ବୈଜ୍ଞାନିକ ଉପାୟରେ ନାନା ରକମ ଚମତ୍କାରପ୍ରଦ ଅସ୍ତ୍ରଶସ୍ତ୍ରମାନ ଆବିଷ୍କାର କରି ସେମାନେ ଯୁଦ୍ଧକୁ ଯୋଗାଇବାରୁ ତାହା ଭୟଙ୍କର ଭାବରେ ମାତି ଉଠୁଥିଲା । ସବୁଠାରୁ ଅତିଶୟ ଭୀଷଣ ଥିଲା ଏମାନଙ୍କର ନୂଆ ନୂଆ ଆବିଷ୍କୃତ ତୋପମାନ । ତୋପମାନଙ୍କରୁ ଯେଉଁ ଗୋଳା-ସବୁ ନିକ୍ଷିପ୍ତ ହେଉଥିଲା, ତାହା ସାତ ମାଇଲ ଯାଏ ବ୍ୟାପି ଯାଉଥିଲା । ତହିଁରେ ଶତ୍ରୁ ସୈନ୍ୟ ଓ ତାଙ୍କ ଘୋଡ଼ା ସହସ୍ର ସଂଖ୍ୟାରେ ମରି ଶୋଉଥିଲେ ।

ଏପରି ବୈଜ୍ଞାନିକ ଉପାୟରେ ନାନା ରକମ ଅସ୍ତ୍ରଶସ୍ତ୍ର ଓ ଯୁଦ୍ଧଜାହାଜମାନ ଆବିଷ୍କାର କରିବାକୁ ପ୍ରତ୍ୟେକ ଯାନ୍‌କୀ ବରାବର ମୁଣ୍ଡ ଖେଳାଉଥିଲେ । କେହି ଦୁଇଜଣଙ୍କର ଭିତରେ, କେହି ଚାରିପାଞ୍ଚ ଜଣରେ, କେହି ବା ପାଞ୍ଚସାତ ଜଣରେ ଗୋଟିଏ ଗୋଟିଏ କମିଟି ଗଢି ନିଜ ନିଜ ଆବିଷ୍କାର କ୍ରିୟା ଚଳାଉଥିଲେ । କ୍ରମେ ଉକ୍ତ ଛୋଟ ଛୋଟ କମିଟିମାନ ସ୍ଥାନେ ସ୍ଥାନେ ମିଳିତ ହୋଇ ଗୋଟିଏ ଗୋଟିଏ ବଡ଼ କମିଟି ଗଢୁଥିଲେ ଏବଂ ତହିଁରେ ପଚିଶରୁ ଶହେ ପର୍ଯ୍ୟନ୍ତ ମେମ୍ବର ରହୁଥିଲେ । ଏପରି ଶତ ଶତ କମିଟି ଦେଶ ସାରା ବିଛେଇ ହୋଇ ପଡ଼ିଥିଲା ଓ ତହିଁରୁ ଆବିଷ୍କୃତ ଅନେକ ପ୍ରକାର ଅସ୍ତ୍ରଶସ୍ତ୍ର ସରକାରଙ୍କ ବିଜ୍ଞାନ ମନ୍ଦିରରେ ପରୀକ୍ଷିତ ହୋଇ ଯୁଦ୍ଧରେ ଲାଗୁ-ଥିଲା । ଏପରି କମିଟିମାନ ହୁ ହୁ ବଢିବାରୁ ସମସ୍ତଙ୍କୁ ମିଳାଇ

ଗୋଟିଏ ବୃହତ୍ କମିଟି ଗଠିତ ହେଲା । ତାର ନାମ ହେଲା ଗନ୍ କ୍ଲବ୍ ଏବଂ ତାହା ବାଲ୍ଟିମୋର ସହରରେ ସ୍ଥାପିତ ହେଲା । ଏପରି ଗୋଟିଏ ବହୁ ସମ୍ମାନିତ କ୍ଲବ୍ ସ୍ଥାପିତ ହେବାରୁ, ତହିଁରେ ଲକ୍ଷପତି, କୋଟିପତିଠାରୁ ଆରମ୍ଭ କରି ଗୃହୀ, ମୂଲିଆ ପର୍ଯ୍ୟନ୍ତ ଶତ ଶତ ଲୋକ ମେମ୍ବର ହେଲେ ଏବଂ ଏହି ମେମ୍ବର ସଂଖ୍ୟା ଏତେ ଜୋରରେ ବଢିଲା ଯେ ମାସକ ଭିତରେ କାର୍ଯ୍ୟକାରୀ ମେମ୍ବର ସଂଖ୍ୟା ହେଲା ୧୮୩୩ ଏବଂ ବିଭିନ୍ନ ଅନୁଷ୍ଠାନର ପ୍ରତିନିଧି ସଂଖ୍ୟା ହେଲା ୩୫, ୫୭୫ । ଏଥିରୁ ଜଣାପଡ଼ିବ, ଆମେରିକା ଦେଶରେ ବିଜ୍ଞାନର ଚର୍ଚ୍ଚା ଆରମ୍ଭ ହେଲେ ଲୋକେ କିପରି ଉତ୍ସାହୀ ହୁଅନ୍ତି ଏବଂ ମନୋନିବେଶ ସହକାରେ ତହିଁରେ ଲାଗି ପଡ଼ନ୍ତି । ଏହି ବିଖ୍ୟାତ ଓ ବହୁ ସମ୍ମାନିତ କ୍ଲବ୍‌ର ସଭାପତି ହେଲେ ଇମ୍ପେ ବାର୍ବକେନ୍ ଓ ଜେନେରାଲ୍ ସେକ୍ରେଟରୀ ହେଲେ ଯେ. ଟି. ମାଷ୍ଟନ୍ ।

ସମଗ୍ର ଉତ୍ତର ରାଷ୍ଟ୍ର ମଧ୍ୟରେ ଯୁଦ୍ଧ ସରଞ୍ଜାମ ତିଆରି ପାଇଁ ଯେତେ କଳ କାରଖାନା ସବୁ ଥିଲା, ସେ ସମସ୍ତ ଏହି ଗନ୍ କ୍ଲବ୍ ଅଧୀନରେ ରହିଲା ଏବଂ ଉକ୍ତ କ୍ଲବ୍ ଦ୍ୱାରା ପରିଚାଳିତ ବିଶାଳ କାରଖାନା ବାଲ୍ଟିମୋର ସହର ମଧ୍ୟରେ ସ୍ଥାପିତ ହେଲା । ଅତି ସୂକ୍ଷ୍ମ ବୈଜ୍ଞାନିକ କୌଶଳରେ ଯେଉଁ ଯନ୍ତ୍ରପାତି ଆବିଷ୍କୃତ ହେଉଥିଲା, ତାହା ସଭାପତିଙ୍କ ଅନୁମୋଦନ କ୍ରମେ ତିଆରି ହୋଇ ଯୁଦ୍ଧ କ୍ଷେତ୍ରକୁ ସଙ୍ଗେ ସଙ୍ଗେ ପଠାଯାଉଥିଲା ।

ଯନ୍ତ୍ରପାତିର ଏପରି ଗୁରୁତର ଆବିଷ୍କାର, ଉଦ୍ଭାବନ ଓ ନିର୍ମାଣ ହେଉଥିଲାବେଳେ ହଠାତ୍ ଦିନେ ସଭାପତିଙ୍କଠାକୁ ସମ୍ବାଦ ଆସିଲା ଯେ, ଯୁଦ୍ଧରେ ସନ୍ଧି ହୋଇ ଯାଇଛି । ତେଣୁ ତୋପମାନଙ୍କର ଭୟଙ୍କର

ଗର୍ଜନ ବନ୍ଦ ହୋଇଗଲା । ଯନ୍ତ୍ରଶାଳାର ଧୂଆଁ ନଳମାନଙ୍କରୁ ଧୂଆଁ ସବୁ ବନ୍ଦ ହୋଇଗଲା । ଗୁଳିଅଡେ ଯେଉଁ ହୈ ଚୈ ଲାଗିଥିଲା, ତାହା ମଧ୍ୟ ଦବିଗଲା । ଖବର କାଗଜ ସବୁ ଯୁଦ୍ଧ ବିଷୟରେ ତୁନି ହୋଇଗଲେ । ଯେଉଁଠି ସଭା, ସମିତି ଗୁଳିଅଡ଼େ ହେଉଥିଲା, ତାହା ମଧ୍ୟ ବନ୍ଦ ହୋଇଗଲା । ଏପରି ଉଦ୍‌ବେଗହୀନ ଅବସ୍ଥାଟା ଲୋକ ସାଧାରଣଙ୍କୁ ଯେପରି ଭଲ ଲାଗିଲା ନାହିଁ, ଗନ୍‌କ୍ଲବ୍‌ର ମେମ୍ବରମାନଙ୍କୁ ମଧ୍ୟ ସେପରି ଭଲ ଲାଗିଲା ନାହିଁ । କେତେ ମେମ୍ବର କେତେ ଅସ୍ତ୍ରଶସ୍ତ୍ର ମନେ ମନେ ଠିକ୍ କରିଥିଲେ, ତାହା କାର୍ଯ୍ୟରେ ଦେଖାଇ ପାରିଲେ ନାହିଁ । କେତେ ମେମ୍ବରଙ୍କ ଯନ୍ତ୍ରସବୁ ତିଆର ହେଉଥିଲା, ବନ୍ଦ ହୋଇଗଲା । କେତେକଙ୍କର ତିଆରି ଯନ୍ତ୍ରସବୁ ଯୁଦ୍ଧକୁ ଯାଉ ଯାଉ ବାଟରେ ଅଟକି ଗଲା । ଏପରି ଅବସ୍ଥାରେ ସମସ୍ତେ ବଡ଼ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ସ୍ଥାନେ ସ୍ଥାନେ ଲୋକେ ମେଳା ମେଳା ହୋଇ ଏ ବିଷୟରେ ଆଲୋଚନା କଲେ ଏବଂ ଯୁଦ୍ଧ ବନ୍ଦ ହୋଇଯିବାରୁ ବହୁତ ଦୁଃଖ ପ୍ରକାଶ କଲେ । କେତେକ ଏପରି ମଧ୍ୟ ଭାବି ନେଲେ ଯେ ଏତିକିବେଳେ ଯେବେ ଇଂଲଣ୍ଡ ଆମେରିକା ଆକ୍ରମଣ କରନ୍ତା, ତେବେ ସେମାନେ ତାକୁ ଟିକିଏ ଦଅନ୍ତେ । ସେମାନେ ଫ୍ରାନ୍‌ସ, ସ୍ପେନ କିମ୍ବା ଜାପାନ ଆକ୍ରମଣ କଲେ, ସେମାନଙ୍କର ବହୁତ ଉନ୍ନତି ହୁଅନ୍ତା । ମାତ୍ର ସେମାନଙ୍କର ଏପରି କଳ୍ପନାମାନ ଆମେରିକା ସଭାପତିଙ୍କ କାନକୁ କିପରି ଶୁଭିବ, ତାହା ସେମାନେ ଚିନ୍ତା କରୁନ ଥିଲେ । ମୋଟ ଉପରେ ଗୁଳିଅଡ଼େ ଗୋଟାଏ ବିକ୍ଷୋଭ ଘଟିଲା । ଲୋକଙ୍କ ମାନସିକ ଅଶାନ୍ତିର ସୀମା ରହିଲା ନାହିଁ । ଏପରି ସମୟରେ ହଠାତ୍ ଦିନେ ସଭାପତି ବାର୍ବିକେନ୍‌ଙ୍କଠାରୁ ସମସ୍ତ ମେମ୍ବର ଗୋଟାଏ ନୋଟିସ୍ ପାଇଲେ । ତାହା ଏହି:—

ବାଲ୍‌ଟିମୋର, ଅକ୍ଟୋବର, ତା-୩

"ଗନ୍ କ୍ଲବର ସଭାପତି ତାଙ୍କ ସମସ୍ତ ସହକାରୀବର୍ଗଙ୍କୁ ସମ୍ମାନ-ସହକାରେ ଜଣାଉଛନ୍ତି ଯେ ଆଗାମୀ ତା ୫ ରିଖ ଦିନ ଗନ୍‌କ୍ଲବର ଗୋଟିଏ ଅଧିବେଶନ ହେବ। ତହିଁରେ ସେ ସମସ୍ତଙ୍କୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ଦେବେ। ତେଣୁ ସେ ସମସ୍ତଙ୍କୁ ଅନୁରୋଧ କରୁଛନ୍ତି ଯେ ସେମାନେ ଏହି ନିମନ୍ତ୍ରଣ ରକ୍ଷାକରି ଅନ୍ୟାନ୍ୟ କାର୍ଯ୍ୟସବୁ ପଛକୁ ପକାଇ ସଭାରେ ଉପସ୍ଥିତ ହେବେ।

ସେମାନଙ୍କର ବିଶ୍ୱାସୀ ସହକର୍ମୀ
ଇମ୍ପେ ବାର୍ବିକେନ୍
**ସଭାପତି**।"

---

—ଦୁଇ—

## ସଭାପତି ବାର୍ବିକେନଙ୍କ ଘୋଷଣା

ସଭାପତିଙ୍କର ଏ ନୋଟିସ ସମସ୍ତଙ୍କ ମନରେ ଗୋଟାଏ ଭାବାନ୍ତର ଖେଳାଇ ଦେଲା। ଲୋକଙ୍କ ମନରେ ଯେଉଁ ଅସ୍ଥିରତା ଓ ଉଦ୍‌ବେଗହୀନତା ଘୋଟି ଯାଇଥିଲା, ତାହା ଗୋଟାଏ କୁହୁକ ପରି ପରିବର୍ତ୍ତିତ ହୋଇଗଲା। ମେମ୍ବରମାନଙ୍କ ମନରେ ଗୋଟାଏ ଉତ୍ସାହ ଖେଳିଗଲା। ସେମାନେ ନାନାବିଧ ଦ୍ରୁତଗାମୀ ଯାନ, ବାହନ ଓ ରେଲରେ ଚଢ଼ି ବାଲ୍‌ଟିମୋରରେ ଉପସ୍ଥିତ ହେଲେ। ବାଲ୍‌ଟିମୋର ଗୋଟାଏ ଅସୀମ ଉତ୍ସାହରେ ମାତିଉଠିଲା। ତା ୫ରିଖ ସକାଳ ସାତଟା ବେଳକୁ ଦେଖାଗଲା ଯେ, ଗନ୍ କ୍ଲବର ବିରାଟ ସୁସଜ୍ଜିତ ହଲ୍‌ ମେମ୍ବର-ମାନଙ୍କ ଦ୍ୱାରା ଭରପୁର ହୋଇଯାଇଛି। ହଲ ଗୃହପଟେ ଥିବା ପ୍ରକାଣ୍ଡ

ବାରଣ୍ଡାରେ ଦର୍ଶକ ସଂଖ୍ୟା ଏତେ ବଢ଼ି ଉଠିଲା ଯେ, ଲୋକେ ତହିଁରେ ସମ୍ଭାଇ ନପାରି ପ୍ରଶସ୍ତ ଅଗଣାରେ ଛିଡ଼ା ହୋଇଗଲେ । ପ୍ରତ୍ୟେକ ଲୋକ ଆଗକୁ ଟିକିଏ ଯାଇ ସଭାପତିଙ୍କ ଭାଷଣ ଶୁଣିବାକୁ ଚାହୁଁଥାଏ । ମାତ୍ର ସେ ସୁଯୋଗ ସମସ୍ତଙ୍କୁ ମିଳିବ କାହୁଁ ? ତେଣୁ ଘୋରଅଡ଼େ ଗୋଳମାଳ ହେଲା । ପାଟିତୁଣ୍ଡ, ହଇଚଇ, ଧକାଂଧକା, କହୁଣିଆ, ଅଣ୍ଟୁଆ ଲାଗି ରହିଲା । ଦର୍ଶକମାନଙ୍କ ମଧ୍ୟରେ ଖୁବ୍ ବଡ଼ଲୋକ, ଖୁବ୍ ବଡ଼ ଅଫିସରଙ୍କଠାରୁ ଅତି ଗ୍ରେଟ ଲୋକ ପର୍ଯ୍ୟନ୍ତ ସମସ୍ତେ ଲୁଣ୍ଠ ହୋଇ ଏ ଭିଡ଼ରେ ବ୍ୟତିବ୍ୟସ୍ତ ହେଉଥିଲେ ହେଁ ସଭାପତିଙ୍କ ଭାଷଣରୁ କାଣିଚାଏ ହେଲେ କାନରେ ପକାଇବାକୁ ଉତ୍କଣ୍ଠିତ ହେଉଥିଲେ ।

ଠିକ୍ ଆଠଟା ସମୟରେ ମାନ୍ୟବର ସଭାପତି ତାଙ୍କ ମୂଲ୍ୟବାନ ଉଚ୍ଚ ଆସନରୁ ଉଠି ଠିଆହେଲେ । ସମଗ୍ର ଜନତା ତାଙ୍କୁ ସମ୍ମାନ ଦେଖାଇଲା । ସେ ଜଳଦଗମ୍ଭୀର ସ୍ୱରରେ କହିଲେ, "ବନ୍ଧୁଗଣ ! ସଂଯୁକ୍ତରାଷ୍ଟ୍ରର ଉଭୟ ଅଞ୍ଚଳ ଭିତରେ ସନ୍ଧି ହେତୁ ଯେଉଁ ନିଷ୍ପୃହ ଭାବ ଗନ୍ କ୍ଲବର ମେମ୍ବରମାନଙ୍କ ମଧ୍ୟରେ ତଥା ସମଗ୍ର ଆମେରିକାରେ ଦେଖା ଯାଉଛି, ତାହା ସମସ୍ତେ ଅନୁଭବ କରୁଥାଇଁ । ମୁଁ ସାହସର ସହିତ କହିପାରେ ଯେ, ଯେବେ ଗୋଟାଏ ଯୁଦ୍ଧ ପୁଣି ହୁଅନ୍ତା, ତେବେ ଆମ୍ଭେମାନେ ପୁଣି କ୍ରିୟାଶୀଳ ହୋଇ ଉଠନ୍ତେ ।"

ଘୋରଅଡ଼େ ଶୁଭିଲା, "ତା ଠିକ୍, ଆମେ ଯୁଦ୍ଧ ଚାହୁଁ ।"

ବାର୍ବିକେନ୍ ପୁଣି କହିଲେ, "କିନ୍ତୁ ବନ୍ଧୁଗଣ ! ଯୁଦ୍ଧର ଆଶା ଆଉ ନାହିଁ । ପଚିଶ ବର୍ଷ ମଧ୍ୟରେ ପୁଣି ଯୁଦ୍ଧ ଲାଗିବ ବୋଲି ମୁଁ ଆଶା କରି ପାରୁନାହିଁ । ତେବେ ଆମ୍ଭମାନଙ୍କ ମସ୍ତିଷ୍କ ଓ ମାଂସ-

ପେଶୀସବୁ ଯେପରି ସତେଜ ଓ କାର୍ଯ୍ୟକ୍ଷମ ରହିବ, ତାହା ବିଚାରିବା ଆମ୍ଭମାନଙ୍କର ଏକାନ୍ତ କର୍ତ୍ତବ୍ୟ । ତେଣୁ ମୁଁ ବହୁଦିନ ହେଲା ବିଚାରି ବିଚାରି ଠିକ୍ କରିଛି, ଆମ୍ଭେମାନେ ଏପରି ଗୋଟାଏ ବିରାଟ ପରୀକ୍ଷାରେ ହାତ ଦେବା, ଯାହା ଏହି ଊନବିଂଶ ଶତାବ୍ଦୀରେ ସୁସାଧ୍ୟ ଓ ଆମେରିକା ବାସୀଙ୍କ ପକ୍ଷରେ ଉପଯୁକ୍ତ । ମୁଁ ବିଚାର କରି ଏପରି ଗୋଟିଏ ବିଷୟ ଠିକ୍ କରିଛି, ଯାହା ଅନ୍ୟଦେଶ ପକ୍ଷରେ ଅସମ୍ଭବ ବୋଲି ବିବେଚିତ ହେଲେ ମଧ୍ୟ ଆମ୍ଭ ଦେଶ ପକ୍ଷରେ, ଗନ୍ କ୍ଲବର ଅତୀତ ସମ୍ମାନ ପକ୍ଷରେ ଅସମ୍ଭବ ହେବ ନାହିଁ । ଏଥିଯୋଗେ ସାରା ପୃଥିବୀରେ ଗୋଟାଏ ହଲଚଲ ପଡ଼ିଯିବ ।"

ଏତେବେଳେ ସଭାପତିଙ୍କ କଥା ଶୁଣିବାକୁ ଲୋକେ ଅଣନିଶ୍ୱାସୀ ହୋଇ ଉଠିଥିଲେ । ତେଣୁ ବକ୍ତୃତା ବନ୍ଦ ନ କରିବାକୁ ସଭାପତିଙ୍କୁ ଚାରିଆଡ଼ୁ ଅନୁରୋଧ ହେଲା ।

ବାର୍ବିକେନ୍ ଦୃଢ଼ଭାବରେ କହିଲେ, "ଆପଣମାନଙ୍କ ମଧ୍ୟରୁ ସମସ୍ତେ ଚନ୍ଦ୍ରକୁ ଦେଖିଛନ୍ତି । ମୁଁ ସେହି ଚନ୍ଦ୍ର କଥା ଆଜି ସମସ୍ତଙ୍କୁ କହିବି । ଆମ୍ଭମାନେ ସେହି ଚନ୍ଦ୍ରଲୋକ ଆବିଷ୍କାର କରିବାକୁ ଚେଷ୍ଟା କରିବା । ମୁଁ ଆପଣମାନଙ୍କୁ ତଥା ଛତିଶ ଗୋଟି ରାଜ୍ୟ-ସମ୍ମିଳିତ ଆମେରିକାକୁ ସେହି ଅନାବିଷ୍କୃତ ଦେଶକୁ ନେଇଯିବି ବୋଲି ସ୍ଥିର କରିଛି । (ଘନ ଘନ କରତାଳି ଓ ଆନନ୍ଦ ଚିତ୍କାର) ଚନ୍ଦ୍ର ସମ୍ବନ୍ଧରେ ଏଥି ପୂର୍ବରୁ ବହୁ ଗବେଷଣା ହୋଇଛି । ତାର ଫଟୋ, ମାନଚିତ୍ର ଓ ଅନ୍ୟାନ୍ୟ ଅନେକ ବିବରଣ ବହୁ ଲୋକଙ୍କ ଦ୍ୱାରା ଆବିଷ୍କୃତ ହୋଇଛି । ତେଣୁ ଚନ୍ଦ୍ର ଆଜି ମାନବ ଜାତି ପକ୍ଷରେ ପୁରୁଣା ହୋଇନାହିଁ । ବାକି ଅଛି କେବଳ ତା ସଙ୍ଗେ ଭାବର

ଆଦାନ ପ୍ରଦାନ । ତାହା ଆମ୍ଭମାନଙ୍କ ଦ୍ୱାରା ହେବା ଉଚିତ । ଯୁଦ୍ଧରେ ଶତ୍ରୁକୁ ନିକ୍ଷେପ କରିବା ପାଇଁ ଯେଉଁ ବୃହତ ଗୋଳମାନ ଆମେ କଳ୍ପନା କରୁଥିଲେଇଁ, ସେହି ଗୋଳର ଅତବେଶୀ ଗୁଣ ଗୋଳ କଳ୍ପିତ ହେଲେ ଓ ତାହା ସେହିପରି ଗୋଟାଏ ବିଶାଳ ତୋପରୁ ନିକ୍ଷିପ୍ତ ହେଲେ, ତାହା ଯେ କାହିଁକି ଚନ୍ଦ୍ର ଦେହରେ ନ ପଡ଼ିବ, ମୁଁ ବୁଝିପାରୁ ନାହିଁ । ମୁଁ ବହୁ ଗବେଷଣା ଦ୍ୱାରା ଠିକ୍ କରିଛି, ଗୋଟାଏ ଗୋଳ ଯେବେ ପ୍ରତି ସେକେଣ୍ଡରେ ବାର ହଜାର ଗଜ ଜୋରରେ ନିକ୍ଷିପ୍ତ ହୁଏ ଏବଂ ତାହା ଚନ୍ଦ୍ରଅଡ଼କୁ ଲକ୍ଷ୍ୟ କରାଯାଏ, ତେବେ ତାହା ନିଶ୍ଚୟ ଚନ୍ଦ୍ରମଣ୍ଡଳରେ ପହଞ୍ଚି ପାରିବ । ତେଣୁ ବନ୍ଧୁଗଣ ! ଏପରି ଗୋଟିଏ ସମ୍ମାନଜନକ ଚେଷ୍ଟା କରିବାକୁ ମୁଁ ଏ ପ୍ରସ୍ତାବ ଆପଣମାନଙ୍କ ଆଗରେ ପେଶ୍ କଲି ।"

ସଭାପତିଙ୍କର ଏ ମୂଲ୍ୟବାନ୍ ଯୁଗୋଚିତ ଭାଷଣ ଶେଷ ହେବା ସଙ୍ଗେ ସଙ୍ଗେ ଚାରିଆଡ଼େ ଅସୀମ ଆନନ୍ଦର ଢେଉ ଖେଳିଗଲା । ହଲ୍ ଭିତରେ ଥିବା ଲୋକେ ଓ ବାହାରେ ଯେଉଁ ହଜାର ହଜାର ଲୋକ ଠିଆ ହୋଇଥିଲେ, ସେମାନେ ଆନନ୍ଦରେ ଅସ୍ଥିର ହୋଇ ପଡ଼ିଲେ । ହାତତାଳି, କରମର୍ଦ୍ଦନ, ହିପ୍ ହିପ୍ ହୁରେ, ମେଜବାଡ଼ିଆ, ନାଚ, ରୁମାଲ ଓ ଟୋପି ଫିଙ୍ଗା ଏ ସବୁରେ ସେ ସଭାସ୍ଥଳ କମ୍ପି ଉଠିଲା । ଲୋକେ ଅସୀମ ଆନନ୍ଦ ଉଦ୍‌ବେଗରେ ଦଗ୍‌ବିଦଗ୍ ଜ୍ଞାନଶୂନ୍ୟ ହୋଇ ପଡ଼ିଲେ । ସମସ୍ତେ ଚିତ୍କାର ଧ୍ୱନିରେ ମାତି ଉଠି ମେଜ, ଚୌକି ଉପରେ ଚଢ଼ି ଅସୀମ ଆବେଗରେ ସଭାପତିଙ୍କୁ ଅଭିବାଦନ କରିବାକୁ ମାଡ଼ି ଗଲେ । ସେତେବେଳେ ସେକ୍ରେଟେରୀମାନେ ତାଙ୍କୁ ରକ୍ଷାକରି ନ ଥିଲେ ସଭାପତି ନଷ୍ଟାନ୍ତ ହୋଇ ଯାଇଥାନ୍ତେ ।

ବିରାଟ ଜନତା ତାଙ୍କ ପ୍ରିୟ ସଭାପତିଙ୍କୁ ସମ୍ମାନ ଦେଖାଇବା ପାଇଁ ତାଙ୍କୁ ମୂଲ୍ୟବାନ ଆସନ ସହ ଉପରକୁ ଟେକି କାନ୍ଧରେ ବସାଇ ବାହାରକୁ ଆଣିଲେ । ବାହାର ଜନତାର ଆନନ୍ଦ ଚିତ୍କାର ଓ ଜୟଧ୍ୱନି ଗୁଡ଼ିଆଡ଼ୁ ଉଠି ସମୁଦ୍ର ଭାଙ୍ଗି ପଡ଼ିଲା ପରି ଶୁଭିଲା । ଯୁଦ୍ଧ ବେଳର ସେ ବିଶାଳ କଳ କାରଖାନା ଯେତେବେଳେ ଚାଲୁ ହେଉଥିଲା , ତାର ଭୀଷଣ ଗର୍ଜ୍ଜନରେ ବାଲ୍‌ଟିମୋର ସହର କମ୍ପି ଉଠୁଥିଲା । ଆଜି ଜନତାର କୋଳାହଳ ସମ ସ୍ୱରରେ ଉଠି ବାଲ୍‌ଟିମୋର ଲୋକଙ୍କୁ ସେହି କଳ କାରଖାନା କଥା ମନେ ପକାଇ ଦେଲା । ସଭାପତିଙ୍କୁ ପଚ୍ଛଆଡ଼ରେ ନେଇ ଯେତେବେଳେ ଜନତା ବଡ଼ ଦାଣ୍ଡରେ ପହଞ୍ଚିଲା, ବାହାର ଜନତା ଓ ତାର ଜୟଧ୍ୱନି ଅଧିକ ବିପୁଳତର ହୋଇ ଉଠିଲା । ସଭାପତିଙ୍କୁ ସମ୍ମାନ ଦେଖାଇ ଗୁଡ଼ିଆଡ଼ୁ ତାଙ୍କପ୍ରତି ଫୁଲମାଳ, ଫୁଲ ଓ ଅତରଭିଜା ରୁମାଲମାନ ଫିଙ୍ଗା ହେଲା । ଏପରି ଭାବରେ ବିପୁଳ ପଚ୍ଛଆଡ଼ ସଭାପତିଙ୍କୁ ବିଭିନ୍ନ ରାସ୍ତାମାନଙ୍କରେ ବୁଲାଇ ତାଙ୍କ ଘରେ ନେଇ ଛାଡ଼ିଦେଲା ।

ସଭାପତିଙ୍କଠାରୁ କମ୍ ସମୟ ଭିତରେ ନୋଟିସ ପାଇଥିବାରୁ ନିକଟବର୍ତ୍ତୀ ମେମ୍ବର ଓ ପ୍ରତିନିଧିମାନେ ସଭାରେ ଯୋଗ ଦେଇଥିଲେ । ମାତ୍ର ଦୂରବର୍ତ୍ତୀ ମେମ୍ବରମାନେ ଆସି ପାରି ନଥିଲେ । ତେଣୁ ସଭାପତିଙ୍କ ଭାଷଣ ଶେଷ ହେବା ସଙ୍ଗେ ସଙ୍ଗେ ତାଙ୍କ ସେକ୍ରେଟରିମାନେ ଦୂରବର୍ତ୍ତୀ ମେମ୍ବର ଓ ପ୍ରତିନିଧିମାନଙ୍କୁ ତାହା ତାର ଦ୍ୱାରା ଜଣାଇ ଦେଲେ । ତେଣୁ ବାଲ୍‌ଟିମୋର ସହର ଭିତରେ ସେ ଭାଷଣ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ସମଗ୍ର ଆମେରିକା ମହାଦେଶରେ ମଧ୍ୟ ପ୍ରଚାରିତ ହୋଇଗଲା । ସମସ୍ତେ ସବୁଆଡ଼େ ସଭାପତିଙ୍କ ନାମରେ ଜୟଧ୍ୱନି କରି ଗଗନ ଫଟାଇ ଦେଲେ । ତାଙ୍କ

ଭାଷଣରେ ଥିବା ପ୍ରସ୍ତାବ ସମସ୍ତଙ୍କ ମନକୁ ଆକର୍ଷଣ କଲା । ସମସ୍ତେ ଉତ୍ସାହରେ ଅଧୀର ହୋଇ ସତେ ଯେପରି ସେହି ମୁହୂର୍ତ୍ତରେ ଚନ୍ଦ୍ରଲୋକ ପର୍ଯ୍ୟନ୍ତ ଉଡ଼ିଯିବାକୁ କାମନା କଲେ । ସଭାପତିଙ୍କ ପ୍ରସ୍ତାବ କାହାକୁ ଅସମ୍ଭବ ବୋଲି ବୋଧ ହେଲା ନାହିଁ । ଫ୍ରାନ୍ସର ଲୋକେ 'ଅସମ୍ଭବ' ଶବ୍ଦଟାକୁ ତାଙ୍କ ଅଭିଧାନରୁ ଏଥିପୂର୍ବରୁ ପୋଛି ଦେଇଥିଲେ । ମାତ୍ର ତାର କାଳି ଦାଗ ପୁରା ଲିଭି ଯାଇ ନଥିଲା । କିନ୍ତୁ ଆଜି ଆମେରିକା ଲୋକେ ତାହା ତାଙ୍କ ଦେଶରୁ କାଢ଼ି ଫିଙ୍ଗି ଦେଲେ ।

ସନ୍ଧ୍ୟା ହେବା ସଙ୍ଗେ ସଙ୍ଗେ ବିମଳ ଚନ୍ଦ୍ର ନଭୋମଣ୍ଡଳରେ ଉଦିତ ହେଲା । ତାର ଉଜ୍ଜ୍ୱଳ ଧବଳ କିରଣ ପ୍ରବାହରେ ସମଗ୍ର ଆମେରିକା ବୁଡ଼ିଗଲା । ଏ ସମସ୍ତ ଆଲୋଚନା ସଭା ଯେପରି ତା'ରି ପାଇଁ ହେଉଛି ବୋଲି ଜାଣିପାରି ସେ ହସି ହସି ଗଗନରେ ଦେଖା ଦେବାରୁ ଲୋକେ ତାକୁ ଦେଖି ଆତ୍ମହରା ହୋଇଗଲେ । ଚନ୍ଦ୍ର ନାମରେ ଯେଉଁ ଉଚ୍ଛ୍ୱାସ ଓ ଆନନ୍ଦ ଚିତ୍କାର ଉଠିଲା, ତାହା ବର୍ଣ୍ଣନାତୀତ । ଆମେରିକାବାସୀ ସତେ ଯେପରି ଏହି ପ୍ରଥମ ଥର ଚନ୍ଦ୍ରକୁ ଦେଖିଲେ ବୋଲି ମନେ କଲେ । ଏପରି ମନୋରମ ଚନ୍ଦ୍ରକୁ ଗୋଳା ଫିଙ୍ଗି ଆହତ କରିବାକୁ ଅନେକେ କୁଣ୍ଠିତ ହେଲେ ମଧ୍ୟ ଜାତୀୟ ଗୌରବ ତହିଁରେ ସଂଶ୍ଳିଷ୍ଟ ଅଛି ବୋଲି ସେହି କଳ୍ପନାରେ ସମସ୍ତେ ଭାସିଗଲେ । ବାଲ୍‌ଟିମୋର ସହର ଏଥିରେ ଏକାସେ ଆନ୍ଦୋଳିତ ହେଲା ତା ନୁହେଁ, ସମଗ୍ର ଆମେରିକା ମଧ୍ୟରେ ଯେତେ ବଡ଼ ବଡ଼ ସହର ଅଛି, ସେ ସମସ୍ତ ଏ ଅଦ୍ଭୁତପୂର୍ବ ଆନନ୍ଦରେ ଆନ୍ଦୋଳିତ ହୋଇ ଉଠିଲା । ନିଉୟର୍କ, ବୋଷ୍ଟନ୍, ଅଲ୍‌ବାନୀ, ଓ୍ୱାଶିଂଟନ୍, ରିଚ୍‌ମଣ୍ଡ, ନିଉ ଅର୍ଲିନ୍ସ, ଗ୍ଲାର୍ଲ୍‌ସ୍‌ଟାଉନ୍,

ମାଶାଚୁସେଟ୍‌ସ୍, ମିଶିଗାନ ପ୍ରଭୃତି ସହର ଜନତାର ବିପୁଳ ଆନନ୍ଦ କୋଳାହଳରେ କମ୍ପି ଉଠିଲା । ଚନ୍ଦ୍ରକୁ ଦେବତାର ରୂପେ ଦେଖିବାପାଇଁ କେତେ ଦୂରବୀକ୍ଷଣ ଯନ୍ତ୍ର ଯେ ସେଦିନ ବିକ୍ରି ହୋଇଗଲା, ତାର ସୀମା ନାହିଁ । ଲୋକଙ୍କ ଚାହିଦା ଅନୁସାରେ ମୂଳଦାମର ଦଶଗୁଣ, କୋଡ଼ିଏ ଗୁଣ, ତ୍ରିଶଗୁଣ, ଷାଠିଏ ଗୁଣ, ଶେଷରେ ଶହେ ଗୁଣ ବଢ଼ିଗଲେ ମଧ୍ୟ ବିକ୍ରି ବନ୍ଦ ହେଲା ନାହିଁ । ତଦ୍ଦ୍ୱାରା ଅନେକ ବିକ୍ରେତାଙ୍କ ଭାଗ୍ୟ ବିପୁଳରୂପେ ଫୁଲିଗଲା ।

ତହିଁଆରଦିନ ସକାଳେ ବାର୍ବିକେନ୍‌ଙ୍କ ଘୋଷଣା ଖବରକାଗଜ ମାନଙ୍କରେ ନାନାରୂପେ ଚର୍ଚ୍ଚିତ ଓ ଆଲୋଚିତ ହୋଇ ବାହାରିଲା । ସମ୍ପାଦକମାନେ ଏ ପ୍ରସ୍ତାବର ନାନାଦିଗ ଆଲୋଚନା କରି ଶେଷରେ ମତ ଦେଲେ ଯେ, ଆମେରିକାର ବିଶିଷ୍ଟ ବୈଜ୍ଞାନିକ ବାର୍ବିକେନ୍‌ଙ୍କ ପ୍ରସ୍ତାବ ଉପେକ୍ଷାର ବିଷୟ ନୁହେଁ । ସେ ଏଥିରେ ହାତ ଦେଲେ ଅସମ୍ଭବକୁ ସମ୍ଭବ କରିପାରିବେ । ପାଞ୍ଚଶହ ଖବର-କାଗଜରେ ଏପରି ଆଲୋଚନା ହେବାରୁ ସମଗ୍ର ଦେଶରେ ଏ ଖବର ବ୍ୟାପିଗଲା । ଆମେରିକାର ନାନାବିଧ ଐତିହାସିକ, ସାହିତ୍ୟିକ, ଭୌଗୋଳିକ ଓ ଦାର୍ଶନିକ ଅନୁଷ୍ଠାନ ଓ ସମିତିମାନ ଏ ବିଷୟ ତାଙ୍କ ଭିତରେ ଆଲୋଚନା କରି ଗନ୍‌କ୍ଲବକୁ ତାଙ୍କର ଅଭିନନ୍ଦନ ଜଣାଇଲେ ଏବଂ ଏ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ସେମାନେ ଶାରୀରିକ, ମାନସିକ ଓ ଆର୍ଥିକ ସମସ୍ତ ପ୍ରକାର ସାହାଯ୍ୟ କରିବେ ବୋଲି ଘୋଷଣା କଲେ ।

ବାର୍ବିକେନ୍‌ଙ୍କ ସମ୍ମାନ ସମଗ୍ର ଦେଶରେ ଅତି ଉଚ୍ଚସ୍ତରକୁ ଉଠିଗଲା । ମହାମତି ଓ୍ୱାଶିଂଟନ ଆମେରିକାରେ ଯେଉଁ ବିପୁଳ ସମ୍ମାନର ଅଧିକାରୀ ଥିଲେ, ସେପରି ସମ୍ମାନ ବାର୍ବିକେନ୍‌ଙ୍କ ପ୍ରତି ତଳି

ଅସିଲା । ମନୁଷ୍ୟ ସ୍ୱୀୟ ସାଧନା ଓ ଅଧ୍ୟବସାୟ ବଳରେ ଲୋକପ୍ରିୟ ହୋଇ ହୋଇ କେତେ ଯୁଗପରେ ଯାଇ ବିପୁଳ ସମ୍ମାନର ଅଧିକାରୀ ହୁଏ । ମାତ୍ର ବାର୍ବିକେନ୍ ଅଳ୍ପକାଳ ମଧ୍ୟରେ ଏ ଯେଉଁ ବିରାଟ ସମ୍ମାନ ପାଇଲେ, ତାହା ବାସ୍ତବିକ ଶ୍ଳାଘନୀୟ ଏବଂ ଆମେରିକାର ଅସୀମ ଗୁଣଗ୍ରାହକତାର ପରିଚାୟକ ।

---

—ତିନି—

## କେମ୍ବ୍ରିଜ୍ ମାନମନ୍ଦିରର ଜବାବ

ଲୋକମାନଙ୍କର ଉତ୍ସାହ, ଉନ୍ମାଦନା, ସଭାସମିତି ଓ ଖବର-କାଗଜ ଆଲୋଚନା କେତେ ସପ୍ତାହ ଧରି ଲାଗି ରହିଲେ ସୁଦ୍ଧା ସଭାପତି ବାର୍ବିକେନ୍ ସେଥିରେ ଭାସି ନ ଯାଇ ତାଙ୍କ କାର୍ଯ୍ୟରେ ଲାଗି ରହିଲେ । ସେ ତାଙ୍କ କାର୍ଯ୍ୟନିର୍ବାହିକା ସମିତିର ମେମ୍ବରମାନଙ୍କୁ ଗନ୍ କ୍ଲବ୍ ଅଫିସକୁ ନିମନ୍ତ୍ରଣ କରି ଆଣିଲେ । ସେଠାରେ ନାନାଧ ଯୁକ୍ତିତର୍କ ଓ ଆଲୋଚନା ପରେ ସ୍ଥିର ହେଲା ଯେ ଜ୍ୟୋତିର୍ବିଦ ପଣ୍ଡିତମାନଙ୍କ ସଙ୍ଗେ ଏ ବିଷୟରେ ପରାମର୍ଶ କରିବାକୁ ହେବ । ସେମାନଙ୍କଠାରୁ ଜବାବ ଆସିଲେ ଯନ୍ତ୍ର ବିଷୟରେ ଆଲୋଚନା କରାଯିବ ।

ଏଥିପାଇଁ କେତେଗୁଡ଼ିଏ ପ୍ରଶ୍ନ ସମ୍ବଳିତ ଖଣ୍ଡିଏ ଚିଠି ଲିପିବଦ୍ଧ ହେଲା ଏବଂ ମାସାଚୁସେଟ୍ସ୍‌ର କେମ୍ବ୍ରିଜ ମାନମନ୍ଦିରକୁ ପ୍ରେରିତ ହେଲା । ସେ ଜ୍ୟୋତିର୍ବିଦମାନଙ୍କ ପାଖରେ ଯେଉଁ ବିରାଟ ଦୂରବୀକ୍ଷଣ ଯନ୍ତ୍ର ଅଛି, ତା ସାହାଯ୍ୟରେ ନୀହାରିକା ( ୧ ) ଓ

( ୧ ) ଆକାଶରେ ଭାସମାନ ସୂକ୍ଷ୍ମ ଆଲୋକିତ ବାଷ୍ପ ।

ଦିବ୍ୟ ସାରମେୟର (୨) ଉପଗ୍ରହ ଏଥିପୂର୍ବେ ଆବିଷ୍କୃତ ହୋଇଥିଲା । ଏହି ବିଖ୍ୟାତ ଜ୍ୟୋତିର୍ବିଦ ଦଳ ଗନ୍‌କ୍ଲବ୍ ମେମ୍ବରମାନଙ୍କର ବିଶେଷ ବିଶ୍ୱାସଭାଜନ ବୋଲି ପ୍ରତୀତ ହେବାରୁ ଉକ୍ତ ଚିଠି ସେମାନଙ୍କ ନିକଟକୁ ପଠାଗଲା । ଜ୍ୟୋତିର୍ବିଦମାନେ ଉକ୍ତ ପ୍ରଶ୍ନସବୁ ଅବିଲମ୍ବେ ଆଲୋଚନା କରି ଯେଉଁ ଉତ୍ତର ଦୁଇଦିନ ମଧ୍ୟରେ ପଠାଇଲେ, ତାର ନକଲ୍ ତଳେ ଦିଆଗଲା ।

"ଗନ୍‌କ୍ଲବର ସଭାପତି ମହାଶୟ,

ଆପଣଙ୍କର ତା ୭ ରିଖର ପତ୍ର ପାଇ ଆମ୍ଭ ସମିତିର ମେମ୍ବରମାନେ ବୈଠକରେ ଯାହା ସ୍ଥିରକଲେ, ତାହା ତଳେ ଉଲ୍ଲେଖ କଲୁଁ । ଆପଣଙ୍କର ପ୍ରଶ୍ନସବୁ ଏହି:—

୧ । ଗୋଟାଏ ଗୋଲା ଚନ୍ଦ୍ର ଲୋକକୁ ପଠାଇବା ସମ୍ଭବ କି ନା ?
୨ । ପୃଥିବୀ ଓ ତା ଉପଗ୍ରହ ଚନ୍ଦ୍ରର ଠିକ୍ ବ୍ୟବଧାନ କେତେ ?
୩ । ଯଦି ଯଥେଷ୍ଟ ବେଗ ଦିଆଯାଏ, ତେବେ ଗୋଟାଏ ଗୋଲା ଚନ୍ଦ୍ର ଲୋକକୁ ଯିବାକୁ କେତେ ସମୟ ଲାଗିବ ଏବଂ କେଉଁ ମୁହୂର୍ତ୍ତରେ ତାକୁ ଫିଙ୍ଗିଲେ ଚନ୍ଦ୍ରର ଗୋଟାଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ତାହା ଯାଇ ପଡ଼ିବ ?
୪ । କେଉଁ ମୁହୂର୍ତ୍ତରେ ଚନ୍ଦ୍ର ଏପରି ଏକ ସ୍ଥାନ ଧରିବ, ଯାହା ଆମ୍ଭ ଗୋଲା ପହଞ୍ଚିବା ପକ୍ଷରେ ସୁବିଧା ହେବ ?
୫ । ଆକାଶର କେଉଁ ବିନ୍ଦୁକୁ ଲକ୍ଷ୍ୟ କରି ତୋପ ମୁହଁ କରିବ ଏବଂ ନିର୍ଦ୍ଦିଷ୍ଟ ବିନ୍ଦୁକୁ ଗୋଲା ନିକ୍ଷେପ କରିବ ?

---

(୨) Sireus. ଆକାଶରେ କାଳପୁରୁଷ ପୁଞ୍ଜର ନିକଟବର୍ତ୍ତୀ ଅତ୍ୟୁଜ୍ଜ୍ୱଳ ନକ୍ଷତ୍ର ବିଶେଷ ।

୨ । ଯେତେବେଳେ ଗୋଳା ତାର ଗତି ଆରମ୍ଭ କରିବ, ସେତେବେଳେ ଚନ୍ଦ୍ର ଆକାଶର କେଉଁ ବିନ୍ଦୁରେ ରହିବା ଆବଶ୍ୟକ ?

"ଏ ସମସ୍ତ ପ୍ରଶ୍ନର ଉତ୍ତର ତଳେ ଦିଆଗଲା ।

"ପ୍ରଥମ ପ୍ରଶ୍ନର ଉତ୍ତର ଏହି ଯେ, ପ୍ରତି ସେକେଣ୍ଡରେ ବାରହଜାର ଗଜ ଗତି କଲାଭଳି ବେଗ ଗୋଳାକୁ ଯଦି ଦିଆଯାଏ, ତେବେ ତାହା ଚନ୍ଦ୍ରମଣ୍ଡଳକୁ ନିକ୍ଷେପ କରି ଯାଇପାରେ । ଗଣନାରୁ ଦେଖା ଯାଉଛି, ଏତିକି ବେଗ ଯଥେଷ୍ଟ ।

"ପୃଥିବୀଠାରୁ ଦୂରତା ହିସାବରେ ମାଧ୍ୟାକର୍ଷଣ ଶକ୍ତି ଅଳ୍ପେ ଅଳ୍ପେ କମିଯାଏ । ସୁତରାଂ ଗୋଳା ଯେତେ ଜୋରରେ ଯାଇଥିବ, ତାର ଓଜନ ସେତେ ଜୋରରେ କମୁଥିବ । ଅବଶେଷରେ ଆକାଶର ଯେଉଁ ସ୍ଥାନରେ ଚନ୍ଦ୍ର ଓ ପୃଥିବୀର ଆକର୍ଷଣ ସମାନ ହେବ, ସେଠାରେ ଗୋଳାର ଓଜନ ମୋଟେ ରହିବ ନାହିଁ । ସେ ଅଞ୍ଚଳକୁ ଗୋଳା ଯଦି ପାରି ହୋଇଯାଏ, ତାହା ତେଣିକି ଚନ୍ଦ୍ରର ଆକର୍ଷଣ ବଳରେ ଯାଇ ସେଠାରେ ପଡ଼ିବ । ଏହା ଅଙ୍କ ଗଣନାର କାଳ୍ପନିକ ବିଷୟ । କିନ୍ତୁ ଏ କାର୍ଯ୍ୟରେ ନିଯୁକ୍ତ ହେବା ଇଞ୍ଜିନ୍ ଉପରେ ଏହାର ସଫଳତା ସମ୍ପୂର୍ଣ୍ଣ ନିର୍ଭର କରେ ।

"ଦ୍ୱିତୀୟ ପ୍ରଶ୍ନର ଉତ୍ତର ଏହିଯେ,—ଚନ୍ଦ୍ର ପୃଥିବୀର ଚାରିପଟେ ଗୋଟାଏ ବୃତ୍ତାକାର ପଥରେ ଗତି କରେ ନାହିଁ, ଅଣ୍ଡାକାର ପଥରେ ଗତି କରେ । ପୃଥିବୀ ଏ କ୍ଷେତ୍ରର କେନ୍ଦ୍ରରେ ନ ରହି ଗୋଟାଏ ଅଂଶରେ ଅବସ୍ଥାନ କରେ । ତା ଫଳରେ ଚନ୍ଦ୍ର କେତେବେଳେ

ପୃଥିବୀର ଖୁବ୍ ନିକଟକୁ ଆସେ, ପୁଣି କେତେବେଳେ ଖୁବ୍ ଦୂରକୁ ଚାଲିଯାଏ । ଏହି ଦୂର ଅବସ୍ଥାନକୁ ଜ୍ୟୋତିଷୀ ଭାଷାରେ ଅପୋଜୀ ଓ ନିକଟ ଅବସ୍ଥାନକୁ ପେରିଗୀ ବୋଲିଯାଏ । ଅପୋଜୀ ଅବସ୍ଥାରେ ପୃଥିବୀଠାରୁ ଚନ୍ଦ୍ରର ଦୂରତା ୨,୫୭,୫୫୨ ମାଇଲ୍ ଏବଂ ପେରିଗୀ ଅବସ୍ଥାରେ ଦୂରତା ମୋଟେ ୧୮,୮୧୫ ମାଇଲ୍ । ସୁତରାଂ ଏହି ପେରିଗୀ ଅବସ୍ଥା ଆମ୍ଭମାନଙ୍କର ଆଲୋଚନାର ବିଷୟ ।

"ତୃତୀୟ ପ୍ରଶ୍ନର ଉତ୍ତର ଏହିଯେ—ଯଦି ଗୋଲା ଶୂନ୍ୟମଣ୍ଡଳରେ ତା ଗତିର ବେଗ ସେକେଣ୍ଡକେ ବାର ହଜାର ଗଜ ବରାବର ରକ୍ଷାକରେ, ତେବେ ଚନ୍ଦ୍ର ଦେହରେ ପହଞ୍ଚିବାକୁ ତାକୁ ପ୍ରାୟ ନଅ ଘଣ୍ଟା ଲାଗିବ । ସେ ଗତିର ବେଗ ଯେତେବେଳେ ନିଶ୍ଚୟ କମିବାର କଥା, ତେଣୁ ପୃଥିବୀ ଓ ଚନ୍ଦ୍ରର ମଧ୍ୟାକର୍ଷଣର ସମରେଖା ସ୍ଥାନରେ ପହଞ୍ଚିବାକୁ ଗୋଲାକୁ ତିନିଲକ୍ଷ ସେକେଣ୍ଡ ବା ୮୩ ଘଣ୍ଟା ୨୦ ମିନିଟ ଲାଗିବ । ସେଠାରୁ ଚନ୍ଦ୍ରମଣ୍ଡଳରେ ପହଞ୍ଚିବାକୁ ପଚାଶ ହଜାର ସେକେଣ୍ଡ ବା ୧୩ ଘଣ୍ଟା, ୫୩ମିନିଟ ୨୦ସେକେଣ୍ଡ ଲାଗିବ । ତେଣୁ ଚନ୍ଦ୍ର ଆକାଶରେ ଆମ୍ଭ ଲକ୍ଷ୍ୟ ସ୍ଥାନରେ ପହଞ୍ଚିବାର ୯୭ଘଣ୍ଟା ୧୩ମିନିଟ ୨୦ସେକେଣ୍ଡ ପୂର୍ବରୁ ଗୋଲାକୁ ନିକ୍ଷେପ କରିବା ଦରକାର ।

"ଚତୁର୍ଥ ପ୍ରଶ୍ନର ଉତ୍ତର ଏହିଯେ, ଉଲ୍ଲିଖିତ ମତେ ଚନ୍ଦ୍ରର ପେରିଗୀ ବା ଖୁବ୍ ନିକଟବର୍ତ୍ତୀ ହେବା ସମୟକୁ ଠିକ୍ କରିବାକୁ ହେବ । ତାହା ଯେତେବେଳେ ଜେନିଥ୍ (Zenith) ବା ଠିକ୍ ମୁଣ୍ଡ ଉପରେ ଗତି କରେ, ସେତେବେଳେ ଉକ୍ତ ଦୂରତାରୁ ୩୯୧୯ ମାଇଲ୍ କମିଯାଏ । ତେଣୁ ଗୋଲାକୁ ମୋଟେ ୨,୧୪,୯୭୬ ମାଇଲ୍ ଗତି କରିବାକୁ ହେବ । ମାତ୍ର ଚନ୍ଦ୍ର ପେରିଗୀରେ ଅବସ୍ଥାନ

କଲବେଳେ ସବୁ ସମୟରେ ଶୀର୍ଷ ବିନ୍ଦୁରେ (ଜେନିଥ୍‌ରେ) ଗତି କରେ ନାହିଁ। ବିନ୍ତୁ ବର୍ଷପରେ ଦୁଇଟି ବିଶିଷ୍ଟ ଘଟଣାରେ ଏହା ଘଟେ। ତେଣୁ ପେରିଗୀ ଓ ଶୀର୍ଷ ବିନ୍ଦୁ ଏହି ଦୁଇ ଅବସ୍ଥାନର ମିଳନ ସମୟକୁ ଅପେକ୍ଷା କରିବାକୁ ହେବ। ସୌଭାଗ୍ୟବଶତଃ ଏହି ଦୁଇ ଅବସ୍ଥାନର ମିଳନ ଆଗାମୀ ବର୍ଷ ଡିସେମ୍ବର ତା୪ ଦିନ ଘଟୁଛି। ଉକ୍ତ ତାରିଖର ରାତ୍ରି ମଧ୍ୟ ଭାଗରେ ଚନ୍ଦ୍ର ତାର ପେରିଗୀ ଓ ଶୀର୍ଷ ବିନ୍ଦୁର ମିଳନ ସ୍ଥାନରେ ଅବସ୍ଥିତ ହେବ। ଅର୍ଥାତ୍ ସେତେବେଳେ ସେ ଠିକ୍ ମୁଣ୍ଡ ଉପରେ ରହିବ ଏବଂ ପୃଥିବୀଠାରୁ ତାର ଦୂରତା କମିଯିବ।

"ପଞ୍ଚମ ପ୍ରଶ୍ନର ଉତ୍ତର ଏହି ଯେ, ଉଲ୍ଲିଖିତ ବିଷୟର ସବୁ ସ୍ଥିରୀକୃତ ହେଲେ, ତୋପର ମୁହଁ ଆକାଶର ଶୀର୍ଷବିନ୍ଦୁକୁ ଲକ୍ଷ୍ୟ କରି ଠିକ୍ ସିଧା ଭାବରେ ରହିବ। ତାହାହେଲେ ଚନ୍ଦ୍ରମଣ୍ଡଳ ଅଡ଼କୁ ତାର ଲମ୍ବ ସମକୋଣରେ ପଡ଼ିବ। ତହିଁରୁ ଗୋଲା କ୍ଷିପ୍ତ ହେଲେ, ତାହା ମାଧ୍ୟାକର୍ଷଣର ବେଗକୁ ଅନେକ ପରିମାଣରେ କାଟି ଯାଇପାରିବ। ଚନ୍ଦ୍ର କେଉଁ ସ୍ଥାନରେ ଠିକ୍ ଶୀର୍ଷ ବିନ୍ଦୁରେ ରହିବ, ତାହା ନିରୁପଣ କରିବାକୁ ହେବ। ଏପରି ସ୍ଥାନ ଉତ୍ତର ଦକ୍ଷିଣ ଅକ୍ଷାଂଶର ୦ ଓ ୨୮ ଡିଗ୍ରୀ ମଧ୍ୟରେ ରହିବା ଆବଶ୍ୟକ। ଏହାଛଡ଼ା ଅନ୍ୟଠାରେ ଚନ୍ଦ୍ର ତେର୍ଚ୍ଛା ଧରିଯିବ ଏବଂ ଉଦ୍ଦେଶ୍ୟର ସଫଳତାରେ ବାଧାଦେବ।

"ଷଷ୍ଠ ପ୍ରଶ୍ନର ଉତ୍ତର ଏହିଯେ—ଯେତେବେଳେ ଗୋଲା କ୍ଷିପ୍ତ ହେବ, ସେତେବେଳେ ଚନ୍ଦ୍ର ଶୀର୍ଷବିନ୍ଦୁରୁ ୫୨ ଡିଗ୍ରୀ ୪୨ ମିନିଟ୍ ୨୦ ସେକେଣ୍ଡ ଦୂରରେ ଥିବ। କାରଣ ଚନ୍ଦ୍ର ପ୍ରତ୍ୟହ ୧୩ ଡିଗ୍ରୀ ୧୦ ମିନିଟ ୩୫ ସେକେଣ୍ଡ ହିସାବରେ ଗତି କରେ। ଏହି ଦୂରତାକୁ ଟପି ଚନ୍ଦ୍ର ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ତାକୁ ଚାରିଦିନ

ଲାଗିବ ଏବଂ ଏହି ସମସ୍ତ ମଧ୍ୟରେ ଗୋଲା ଅଗ୍ରସର ହୋଇପାରିବ । ମାତ୍ର ପୃଥିବୀର ଗତିରେ ସାମାନ୍ୟ ଏପଟ ସେପଟ ହେଲେ, ତାହା ଗୋଲା ଗତିରେ ଯେଉଁ ଅଣୁପରିମାଣରେ ଅଙ୍କ ଆଣିବ, ତାହା ଏହି ହିସାବ ଉପରେ ଅବଶ୍ୟ ସାମାନ୍ୟ ପ୍ରଭାବ ପକେଇବ । ତେଣୁ ଏଥିପାଇଁ ଅଧିକ ୧୧ ଡିଗ୍ରୀ ଚନ୍ଦ୍ରର ପୂର୍ବୋକ୍ତ ବାଳମ୍ବସଙ୍ଗେ ଯୋଗକରି ତାକୁ ୭୪ ଡିଗ୍ରୀ କୋଣରେ ରଖିବାକୁ ହେବ । ତେଣୁ ଚନ୍ଦ୍ରକୁ ପୃଥିବୀର ସମତଳସଙ୍ଗେ ୭୪ ଡିଗ୍ରୀ କୋଣରେ ରଖି ଗୋଲା ନିକ୍ଷେପ କରିବାକୁ ହେବ ।

"ଏହି ହେଲା ଗନ୍‌କ୍ଲବ୍ ସଭାପତିଙ୍କର ସମସ୍ତ ପ୍ରଶ୍ନର ଉତ୍ତର । ଏ ସମସ୍ତ ଉତ୍ତରର ସାରାଂଶ ତଳେ ଉଲ୍ଲେଖ କଲୁଁ —

୧ । ଉତ୍ତର ଦକ୍ଷିଣ ଅକ୍ଷାଂଶର ୦ ଓ ୨୮ ଡିଗ୍ରୀ ମଧ୍ୟରେ ତୋପ ସ୍ଥାପନ କରାଯିବ ।

୨ । ତାହା ଶୀର୍ଷବିନ୍ଦୁକୁ ଲକ୍ଷ୍ୟ କରୁଥିବ ।

୩ । ଗୋଲାର ମୌଳିକ ବେଗ ସେକେଣ୍ଡକେ ବାର ହଜାର ଗଜ ହେବ ।

୪ । ଏହି ଗୋଲା ଆଗାମୀ ବର୍ଷ ଡିସେମ୍ବର ତା ୧ ରିଖ ରାତ୍ରି ୧୦ ଘଣ୍ଟା ୪୬ ମିନିଟ ୪୦ ସେକେଣ୍ଡରେ ନିଶ୍ଚୟ ନିକ୍ଷିପ୍ତ ହେବ ।

୫ । ଗୋଲା ଡିସେମ୍ବର ତା ୧ ରିଖ ଅଧରାତିରେ ନିକ୍ଷିପ୍ତ ହୋଇ ଚାରି ଦିନପରେ ଚନ୍ଦ୍ର ତାର ଶୀର୍ଷବିନ୍ଦୁରେ ପହଞ୍ଚିବା ବେଳେ ନିଶ୍ଚୟ ତାକୁ ସ୍ପର୍ଶ କରିବ ।

ତେଣୁ ଗନ୍‌କ୍ଲବର ମେମ୍ବରମାନଙ୍କୁ ଅନୁରୋଧ ଯେ ସେମାନେ ଏ କାମ ଶୀଘ୍ର ଆରମ୍ଭ କରନ୍ତୁ ଏବଂ ଠିକ୍ ମୁହୂର୍ତ୍ତରେ

ଏହାକୁ ସଫଳ କରିବାକୁ ଚେଷ୍ଟା କରନ୍ତୁ । ନୋହିଲେ ଜୁନ୍ ୧୮ ବର୍ଷ ୧୧ ଦିନ ପୂର୍ବରୁ ଆଉ ଶୀର୍ଷବିନ୍ଦୁ ଓ ପେରିଗୀର ମିଳନ ବିନ୍ଦୁରେ ପହଞ୍ଚିବ ନାହିଁ ।

ଆପଣ ଆମ୍ଭମାନଙ୍କର ଅଭିବାଦନ ଗ୍ରହଣ କରିବେ ।"

ଜେ. ଏମ୍. ବେଲଫାଷ୍ଟ୍
ଡିରେକ୍ଟର
**ଅବଜରଭେଟରୀ ଅଫ୍ କେମ୍ବ୍ରିଜ**

---

—ତିନି—

## ଗୋଲା ବିଷୟରେ ମୀମାଂସା

କେମ୍ବ୍ରିଜ୍ ମାନମନ୍ଦିରର ଜବାବ ଗନ୍‌କ୍ଲବ୍‌ର ସଭାପତିଙ୍କ ପାଖରେ ପହଞ୍ଚିବା ସଙ୍ଗେ ସଙ୍ଗେ ଆମେରିକାର ସମସ୍ତ ଖବର-କାଗଜରେ ମଧ୍ୟ ପ୍ରଶ୍ନୋତ୍ତର ସହ ଛାପା ହୋଇଗଲା । ସମସ୍ତେ ଏହାକୁ ନାନା ଦିଗରୁ ଆଲୋଚନା କଲେ ମଧ୍ୟ ଏହା ସୁସାଧ୍ୟ ବୋଲି ମତ ଦେଲେ ଏବଂ ଗନ୍ କ୍ଲବ୍ ଏହି କାର୍ଯ୍ୟରେ ଲାଗିଲେ । ଏଥିରେ ନିଶ୍ଚୟ ସଫଳ ହେବ ବୋଲି ସମସ୍ତେ ଆଶ୍ୱାସିତ ହେଲେ । ପୃଥିବୀର ଅନ୍ୟ ପ୍ରାନ୍ତର ଲୋକେ ଏହାକୁ କଷ୍ଟସାଧ୍ୟ ଓ ଅନେକ ପରିମାଣରେ ଅସମ୍ଭବ ବୋଲି ମନେ କଲେ ମଧ୍ୟ ଆମେରିକାର ଲୋକେ ଏହାକୁ ଗୋଟାଏ ସାମୟିକ ଖେଳ ବୋଲି ବିଚାରିଲେ ।

ସଭାପତି ବାର୍ବିକେନ ଏ ପତ୍ର ପାଇବା ମାତ୍ରକେ କିଛି ସମୟ ନଷ୍ଟ ନ କରି ଗୋଟାଏ କମିଟି ଅବିଳମ୍ବେ ଗଠନ କଲେ ।

ଏ କମିଟି ତିନିବାର ବୈଠକ କରି ତିନୋଟି ମୂଲ୍ୟବାନ ବିଷୟ ସଙ୍ଗେ ସଙ୍ଗେ ନିଷ୍ପତ୍ତି କଲେ । ପ୍ରଥମ ବୈଠକରେ ଗୋଲା ବିଷୟ, ଦ୍ୱିତୀୟ ବୈଠକରେ ତୋପ ବିଷୟ ଓ ତୃତୀୟ ବୈଠକରେ ବାରୁଦ ବିଷୟ ଠିକ୍ ହୋଇଗଲା ।

ଅକ୍ଟୋବର ତା୮ରିଖ ଦିନ ଏ କମିଟି ସେତେବେଳେ ବାର୍ବିକେନଙ୍କ ଘରର ବୈଠକଖାନାରେ ପ୍ରଥମ ବୈଠକ ଆରମ୍ଭ କଲେ, ସେତେବେଳେ ପେଢ଼ାର ଗୋଟିଏ ପାହାଡ଼ ଓ ଚା'ର ଗୋଟିଏ ସାଗର ସେମାନଙ୍କ ଆଗରେ ରଖାଗଲା । ପେଢ଼ାର ଉତ୍ତମ ଓ ଚା'ର ଉଷ୍ଣ ଜଳ ଉଦର ମଧ୍ୟରେ ଏକତ୍ର ଫେଣ୍ଟା ହୋଇ ମଧୁର ବାଷ୍ପ ମସ୍ତିଷ୍କ ମଣ୍ଡଳକୁ ନ ପଠାଇଲେ ବୈଜ୍ଞାନିକମାନଙ୍କ ମଗଜରୁ ଅମୃତ ଝରିବ କୁଆଡ଼ୁ ?

ସଭାପତି ବାର୍ବିକେନ ସମିତିର କାର୍ଯ୍ୟ ଆରମ୍ଭ କରି କହିଲେ, "ବନ୍ଧୁଗଣ ! ଯେଉଁ ମେସିନ୍ ଗୋଲା ନିକ୍ଷେପ କରିବ, ତାର ବିଷୟ ଆଗ ହେବା ଦର୍କାର । କାହିଁକି ନା ତା ଉପରେ ସମସ୍ତ ପ୍ରସ୍ତାବ ନିର୍ଭର କରେ । ଚାଲନ୍ତୁ, ଆମ୍ଭେମାନେ ସେ ମେସିନ୍ କଥା ଆଗ ଆଲୋଚନା କରିବା । ମୁଁ ମନେକରେଁ, ତୋପର ଆକାର ପ୍ରକାର କିପରି ହେବା ଉଚିତ, ତାହା ପ୍ରଥମେ ଦେଖାଯାଉ । ତା ହେଲେ ଗୋଲାର ଆକାର କିପରି ହେବ, ତାହା ସ୍ଥିର ହେବ ।" ଅନ୍ୟ ମେମ୍ବରମାନେ ସେ ବିଷୟରେ ମନୋନିବେଶ କରିବାକୁ ପ୍ରସ୍ତୁତ ବୋଲି ଜଣାଇଲେ ।

ବାର୍ବିକେନ କହିଲେ, "ଏ ସମସ୍ୟାର ମୌଳିକ ପ୍ରଶ୍ନ ହେଉଛି, ଗୋଟାଏ ଗୋଲାକୁ ସେକେଣ୍ଡକେ ବାର ହଜାର ଗଜର

ବେଗ କପରି ଦେବାକୁ ହେବ । ମୋର ଦୃଢ଼ ବିଶ୍ୱାସ, ଆମ୍ଭେମାନେ ଏ ଉଦ୍ୟମରେ ନିଶ୍ଚୟ ସଫଳ ହେବା । ଆପାତତଃ ଦେଖିବାକୁ ହେବ ଏଥିପୂର୍ବରୁ ଆମ୍ଭେମାନେ କେତେ ବେଗ ବ୍ୟବହାର କରି ପାରିଛୁଁ । ଜେନେରାଲ୍ ମର୍ଗାନ୍ ଏ ବିଷୟରେ ତାଙ୍କର କଅଣ ଅଭିଜ୍ଞତା ଅଛି, ଜଣାନ୍ତୁ ।"

ଜେନେରାଲ୍ ମର୍ଗାନ କହିଲେ, "ଯୁଦ୍ଧ ସମୟରେ ମୁଁ ପରୀକ୍ଷା ସମିତିର (Experiment Commission) ମେମ୍ବର ଥିଲି । ଡାଲ୍‌ଗ୍ରିନ୍‌ର ଶହେ ପାଉଣ୍ଡିଆ ତୋପ ତାର ଗୋଲାକୁ ସେକେଣ୍ଡକେ ପାଞ୍ଚଶହ ଗଜର ବେଗ ଦେଇ ପାରିଥିଲା । ଏହାପରେ ରଡ୍‌ମ୍ୟାନ କଲମ୍ବିଆଡ୍ ଯାହା ନିଉୟର୍କ ନିକଟ ଫୋର୍ଟ ହାମିଲ୍‌ଟନ୍‌ରେ ପରୀକ୍ଷିତ ହୋଇଥିଲା, ତାହା ଅଧଟନ୍ ଓଜନର ଗୋଟାଏ ଗୋଲାକୁ ମିନିଟକେ ଆଠଶହ ଗଜ ବେଗରେ ଛଅ ମାଇଲ୍ ଦୂରକୁ ଫିଙ୍ଗିଥିଲା । ଏପରି ସଫଳତା ଇଂଲଣ୍ଡ ଏ ପର୍ଯ୍ୟନ୍ତ ପାଇ ପାରି ନାହିଁ ।"

ବାର୍ବିକେନ କହିଲେ, "ତାହେଲେ ଏ ପର୍ଯ୍ୟନ୍ତ ମିନିଟ୍‌କେ ଆଠଶହ ଗଜର ବେଗ ସୃଷ୍ଟି ହୋଇ ପାରିଛି । ହଉ, ବର୍ତ୍ତମାନ ପାଇଁ ଏହି ଆଠଶହ ଗଜର ହିସାବ ଧରାଯାଉ । ଆଗାମୀ ଅଧିବେଶନରେ ଆମେ ଠିକ୍ କରିବା, କି ଉପାୟରେ ଏହି ବେଗ ଜାତ ହୋଇ ପାରିବ । ବର୍ତ୍ତମାନ ବିଚାରନ୍ତୁ, ଆମ ଗୋଲାର ଆକାର କେତେ ହେବ । ମୁଁ ଭାବୁଛି, ଗୋଲା ଅଧଟନ ଓଜନରୁ କମ୍ ହେବନାହିଁ ।"

ମେଜର୍ ଏଲ୍‌ଫିନ୍‌ଷ୍ଟୋନ୍ ପଚାରିଲେ, "କାହିଁକି?"

ଜେ. ଟି. ମାଷ୍ଟନ୍ ସାଙ୍ଗେ ସାଙ୍ଗେ କହିଲେ, "କାରଣ ଏହାର ଆକାର ବଡ଼ ଥିଲେ ଚନ୍ଦ୍ରମଣ୍ଡଳ ଅଧିବାସୀଙ୍କ ଦୃଷ୍ଟି ତା

ଉପରେ ପଡ଼ିବ । ତହିଁରେ କୌଣସି ରକମର ବାସିନ୍ଦା ଥିବା ସମ୍ଭବ ।”

ବାର୍ବେକେନ, “ହିଁ ତା ଠିକ୍ । ତା ଛଡ଼ା ଅନ୍ୟ ମଧ୍ୟ କାରଣ ଅଛି । ଏତେ ଅଯୋଜନ କରି ଗୋଲାଟାଏ ଛାଡ଼ିବା । ଅଭ ତାପରେ ତା କଥା କିଛି ଭାବିବା ନାହିଁ । ଏହା ଠିକ୍ ନୁହେଁ । ଆମ ଭିତରୁ କେହି ତା ସଙ୍ଗେ ଯିବା ଉଚିତ ।”

ଏ ପ୍ରସ୍ତାବରେ ସମସ୍ତେ ବିସ୍ମିତ ହୋଇଗଲେ । ଜେନେରାଲ୍ ମର୍ଗାନ କହିଲେ, “କଣ ?”

ବାର୍ବେକେନ୍ କଥାକୁ ଓଜନ କରି କହିବାର ଲୋକ । ସେ ଆଗରୁ କୌଣସି କଥା ଦୃଢ଼ରୂପେ ନ ଭାବି, ପ୍ରକାଶ କରନ୍ତି ନାହିଁ । ସେ ଦୃଢ଼ସ୍ୱରରେ କହିଲେ, “ନିଶ୍ଚୟ, ନୋହିଲେ ଏତେ ବଡ଼ ଗୋଟାଏ ପରୀକ୍ଷା ନିଷ୍ଫଳ ହୋଇଯିବ ସେ ।”

ମେଜର କହିଲେ “ତାହେଲେ ଗୋଲାର ଆକାର ଭୀଷଣରୂପେ ବଢ଼ାଇବାକୁ ପଡ଼ିବ ।”

ବାର୍ବେକେନ କହିଲେ, “ଅପଣ ମୋ କଥା ମନଦେଇ ଶୁଣନ୍ତୁ । ଦୂରବୀକ୍ଷଣ ଯନ୍ତ୍ର ସବୁ ଅନେକ ପରିମାଣରେ ପୂର୍ଣ୍ଣତା ପାଇଗଲେଣି । କୌଣସି କୌଣସି ଦୂରବୀକ୍ଷଣ ଯନ୍ତ୍ର ପଦାର୍ଥକୁ ଛଅ ହଜାର ଗୁଣ ବଢ଼ାଇ ପାରୁଛନ୍ତି ଏବଂ ଚନ୍ଦ୍ରକୁ ଖୁଲଣ ମାଇଲ ନିକଟକୁ ଅଣି ପାରୁଛନ୍ତି । ସେତିକି ଦୂରରେ ଥାଇ ଛଅ ବର୍ଗଫୁଟ ଅକାରର ଦ୍ରବ୍ୟ ସବୁ ପରିଷ୍କାର ଦେଖା ପଡୁଛି । ଦୂରବୀକ୍ଷଣ ଯନ୍ତ୍ରର ଦ୍ରବ୍ୟ ପ୍ରବେଶ ଶକ୍ତି (Power of penetration) ଏହାଛଡ଼ା ଅଉ ବୃଦ୍ଧି ପାଇନାହିଁ ।

ଦ୍ରବ୍ୟସବୁ ଯେତେ ସଫା ରହିବ, ଜ୍ଞାନ ପ୍ରବେଶ ଶକ୍ତି ସେତେ ବଢିବ । ମାତ୍ର ଚନ୍ଦ୍ରର ନିଜର ଆଲୋକ ନ ଥିବାରୁ ସେ ପାଉଥିବା ସୀମାବଦ୍ଧ ଆଲୋକ ବଳରେ ଜିନିଷ ସବୁକୁ ଅଧିକ ପରିଷ୍କାର କରି ପାରୁନାହିଁ । ତେଣୁ ଟେଲିସ୍କୋପ୍ (ଦୂରବୀକ୍ଷଣ)ର ଶକ୍ତି ଆଉ ବଢ଼ି ପାରୁନାହିଁ ।”

ଜେନେରାଲ୍, “ବେଶ୍, ତେବେ କଣ ଆପଣ ଛଅଫୁଟ ବ୍ୟାସର ଗୋଲ୍ଡ କରିବାକୁ ଚାହାଁନ୍ତି ?”

ବାର୍ବିକେନ—“ନା” ।

ଜେନେରାଲ୍—“ଆପଣ ଅବଶ୍ୟ ଚନ୍ଦ୍ରକୁ ଅଧିକ ଆଲୋକିତ କରିବାକୁ ଚାହିଁବେ ନାହିଁ ।”

ବାର୍ବିକେନ୍—“ଚାହିଁଲେ କଣ ହେଲା ? ଏତ ବଡ଼ ସହଜ ! ଯେଉଁ ଘନ ବାୟୁମଣ୍ଡଳ ଯୋଗେ ଚନ୍ଦ୍ରର ଆଲୋକ ଆମ୍ଭ ପାଖକୁ ପୂରା ଆସି ପାରୁନାହିଁ, ଆମେ ସେ ଘନତା ଯେତେ କମାଇ ପାରିବା, ଚନ୍ଦ୍ରର ଆଲୋକ ସେତେ ଅଧିକ ଆମେ ପାଇବା ।”

ଜେନେରାଲ୍—“କିପରି ?”

ବାର୍ବିକେନ୍—“ସେଥିପାଇଁ ମୁଁ ମୋ ଦୂରବୀଣକୁ ଗୋଟାଏ ବଡ଼ ପର୍ବତର ଉଚ୍ଚତମ ଶୃଙ୍ଗରେ ସ୍ଥାପନ କରିବି । ଏଇଟାତ ମୋ ପକ୍ଷରେ କଷ୍ଟକର କଥା ନୁହେଁ ?”

ମେଜର—“ମୁଁ ମାନିଲି । ତାହେଲେ ତା ବଳରେ ଆପଣ ଜିନିଷର ଆକାର ଆଉ କେତେଗୁଣ ବଢ଼ାଇ ପାରିବେ ?”

ବାର୍ବିକେନ୍—“ଗୋଟାଏ ଜିନିଷକୁ ୪୮ ହଜାର ଗୁଣ । ତାହେଲେ ଚନ୍ଦ୍ର ପାଞ୍ଚ ମାଇଲ୍ ଭିତରକୁ ଆସିଯିବ ଏବଂ ନଅଫୁଟ ବ୍ୟାସର ଜିନିଷ ଦେଖାଯାଇ ପାରିବ ।”

ଫେ. ଟି. ମାଷ୍ଟନ୍—"ତାହେଲେ ଆମ ଗୋଲାର ବ୍ୟାସ ନଅଫୁଟ ହେବ ?"

ବାର୍ବିକେନ ମୁଣ୍ଡ ହଲାଇ କହିଲେ, "ଠିକ୍ ।"

ମେଜର ପଚାରିଲେ, "ତାହେଲେ ତାର ଓଜନ କେତେହେବ ?"

ବାର୍ବିକେନ—"ମେଜର ! ଓଜନ ବିଷୟ ଆଲୋଚନା କରିବା ଆଗରୁ ମୁଁ କହିବାକୁ ଚାହେଁ ଯେ, ଅମ୍ଭ ପୂର୍ବପୁରୁଷମାନେ ଏ ବିଷୟରେ ବହୁତ ବିସ୍ମୟକର କାଣ୍ଡ କରି ଯାଇଅଛନ୍ତି । ମୁଁ ଦୃଢ଼ ଭାବରେ କହିପାରେ ଯେ ଅମ୍ଭମାନଙ୍କ ଅପେକ୍ଷା ମଧ୍ୟଯୁଗର ଲୋକେ ଅନେକ ଆଗେଇଥିଲେ ।"

ଫେ. ଟି. ମାଷ୍ଟନ୍ ଚିତ୍କାର କରି କହିଲେ, "ଆପଣ କଥାଟାକୁ ଭଲଭାବରେ ବୁଝାନ୍ତୁ ।"

ବାର୍ବିକେନ କହିଲେ, "ମୁଁ କେତେକ ଉଦାହରଣ ଦେଲେ ଆପଣମାନେ ବୁଝିପାରିବେ । ଦ୍ୱିତୀୟ ମହମ୍ମଦ ୧୪୫୩ ଖ୍ରୀଷ୍ଟାବ୍ଦରେ କନ୍ଷ୍ଟାଣ୍ଟିନୋପଲ୍ ଅବରୁଦ୍ଧ କଲାବେଳେ ସେମାନେ ୧୯୦୦ ପାଉଣ୍ଡ ଓଜନର ପଥର ସବୁ ଫିଙ୍ଗିଥିଲେ । ମାଲ୍‌ଟାର ରାଜାମାନଙ୍କ ଅମଳରେ ଗୋଟାଏ ପ୍ରକାର ତୋପରୁ ୨୫୦୦ ପାଉଣ୍ଡର ଗୋଲାମାନ ନିକ୍ଷେପ କରା ଯାଉଥିଲା । ଜଣେ ଫରାସୀ ଐତିହାସିକଙ୍କ ମତରେ, ଏକାଦଶ ଲୁଇଙ୍କ ଆଦେଶରେ ଗୋଟାଏ ତୋପ ପାଞ୍ଚଶହ ପାଉଣ୍ଡ ଓଜନର ଗୋଟାଏ ବୋମା ଛାଡ଼ୁଥିଲା ଯେ, ତାହା ବାଷ୍ଟିଲର ପାଗଲା ଗାରଦରେ ଯାଇ ପଡ଼ୁଥିଲା । ଏଥିରୁ ଅମ୍ଭେମାନେ କଅଣ ଦେଖି

ପାରୁଛୁଁ ? ମଜବୁତ ତୋପମାନଙ୍କରୁ ପାଞ୍ଚଶ ପାଉଣ୍ଡିଆ ଗୋଳ ଏବଂ ବର୍ତ୍ତମାନ କଲମ୍ବିଅଡ୍‌ରୁ ଅଧଟନ୍‌ର ଗୋଳ ଦଗା ଯାଇପାରେ । ତାହାହେଲେ ବୋଧ ହେଉଛୁ ଯେ, ଯଦ ତୋପର ଲକ୍ଷ୍ୟ ଅଧିକ ଦୂର ହୁଏ, ତାହାହେଲେ ଗୋଳର ଓଜନ କମିଯାଏ । ସମ୍ଭବ ଅମେ ଯଦ ବିଜ୍ଞାନର ଅଗ୍ରଗତ ସଙ୍ଗେ ସଙ୍ଗେ ଦ୍ୱିତୀୟ ମହମ୍ମଦ ଓ ମାଲ୍‌ଟା ସ୍ୱଜାଙ୍କ [ଗୋଳଠାରୁ ଅମ ଗୋଳକୁ ଦ୍ୱିଗୁଣ କରୁଁ, ତେବେ ଅମେ ସଫଳ ହୋଇ ପାରିବା ।”.

ମେଜର ପଚ୍ଚରିଲେ, “ଏକଥା ବରଂ ହେଲ । ତେବେ ଅପଣ ଗୋଳକୁ କ ଧାତୁରେ ନିର୍ମାଣ କରିବାକୁ ଚାହାନ୍ତ ?”

ଜେନେରାଲ୍ ମର୍ଗାନ୍—“କେବଳ ଇସ୍ପାତରେ ।”

ଯେ· ଟି. ମାଷ୍ଟନ୍—“ଇସ୍ପାତ ? ଏ ତ ସାଧାରଣ କଥା ।”

ମର୍ଗାନ୍, “ବନ୍ଧୁ ! ଅଉ ଅଧିକ ବଢ଼ାଅ ନାହିଁ । ଇସ୍ପାତ ଲୁହା ଯଥେଷ୍ଟ ।”

ଏଲ୍‌ଫିନ୍ ଷ୍ଟୋନ୍—“ଗୋଳର ଅକାର ଅନୁପାତରେ ଯେବେ ତାର ଓଜନ ଧରିଯିବ, ତାହାହେଲେ ନଅଫୁଟ ବ୍ୟାସର ଗୋଳ ବେଢାଏ ଭାର ହେବ ।”

ବାର୍ବିକେନ—“ତା ଠିକ୍ । ଯେବେ ଗୋଳ ନିଦାହୁଏ, ତେବେ ସିନା ଭାର ହେବ ? ପୋଲ ହେଲେ ?”

ଏଲ୍‌ଫିନ୍‌ଷ୍ଟୋନ୍—“ପୋଲ ? ତେବେ ତ ଗୋଟାଏ ସିମ୍ପା ପର ହେବ ?”

ବାର୍ବିକେନ୍—“ହଁ, ସିମ୍ପାପରି । ଏପରି ହେବା ତ ଦର୍କାର । ଗୋଟ ଏ ୧୦ ଇଞ୍ଚ ନିଦା ଗୋଳର ଓଜନ ବୁଇ ଲକ୍ଷ୍ୟ ପାଉଣ୍ଡ ।

ଏଇଟା ହେଉଛି ବେଶି ଓଜନ । ମାତ୍ର ଆମ ଗୋଲା ଯେତେବେଳେ ଖୁବ୍ ଦ୍ରୁତ ହେବା ପ୍ରୟୋଜନ, ଏହାର ଓଜନ କୋଡ଼ିଏ ହଜାର ପାଉଣ୍ଡ ହେବା ମୋର ମତ ।"

ମେଜର—"ତାର ମୋଟା କେତେ ହେବ ?"

ମର୍ଗାନ୍—"ଏପରି ଆକାର ହେଲେ ୮୦୦ ଇଞ୍ଚ୍ ବ୍ୟାସ ବିଶିଷ୍ଟ ଗୋଲାର ସବୁ ପାର୍ଶ୍ୱ ଦୁଇଫୁଟ ମୋଟା ହେବା ଅବଶ୍ୟକ ।"

ବାର୍ବିକେନ—"ତାହେଲେ ଏଇଟା ହେଉଛି ମୋଟା ହୋଇଯିବ । ଅମର ଦର୍କାର, ତାହା କପରି ବାରୁଦ ବାଷ୍ପର ଜୋରକୁ ସମ୍ଭାଳିବା ପାଇଁ ଶକ୍ତ ହେବ । ତେଣୁ ସମସ୍ୟା ଏହି ଯେ, କୋଡ଼ିଏ ହଜାର ପାଉଣ୍ଡ ଓଜନର ଗୋଟାଏ ପିମ୍ପା (obus) ର ମୋଟା କେତେ ହେବା ଦର୍କାର, ତାହା ଆମର ପକ୍କା ହିସାବୀ ବନ୍ଧୁ ମାଷ୍ଟନ୍ ସାହେବ ସଙ୍ଗେ ସଙ୍ଗେ କହି ପାରିବେ ।"

ମାଷ୍ଟନ୍—"ସହଜ କଥା ନୁହେ ।" ଏହା କହି ସେ ଖାତା ପେନ୍ସିଲ ଧରି ଅନେକ ହିସାବ କରି କହିଲେ, "ପାର୍ଶ୍ୱ ଦୁଇ ଇଞ୍ଚ୍ରୁ ଅଧିକ ମୋଟା ହୋଇ ପାରିବନାହିଁ ।"

ମେଜର୍ ସନ୍ଦେହ କରି କହିଲେ, "ଏହା କଣ ଠିକ ହେବ ?"

ସଭାପତି—"କେବେ ନୁହେଁ । ସେଥିପାଇଁ ଅଲ୍ୟୁମିନିୟମ୍‌ରେ ଗୋଲା କରିବାକୁ ମୁଁ ଭାବୁଛି ।" ଏହାଶୁଣି ସମସ୍ତେ ଅସ୍ଥିର ହୋଇଗଲେ ।

ସଭାପତି କହିଲେ, "ବନ୍ଧୁଗଣ ! ଆପଣମାନେ ଅବଶ୍ୟ ଜାଣନ୍ତି, ଜଣେ ଫରାସୀ ରସାୟନବିତ୍, ହେନ୍ରି ସେଣ୍ଟ୍ କ୍ଲେୟାର୍

ହୁଅଇଲା, ୧୮୫୪ ରେ ଅଲୁମିନିୟମ୍‌କୁ ଗୋଟାଏ ଶକ୍ତ, ସୁଦୃଢ଼ ପିଣ୍ଡରେ ପରିଣତ କରିପାରିଥିଲେ । ଏହି ମୂଲ୍ୟବାନ୍ ଧାତୁ ଦେହରେ ରୁପାର ଶୁକ୍ଳଗୁଣ, ସୁନାର ସ୍ଥାୟିତ୍ୱ, ତମ୍ବାର ତରଳ ଗୁଣ ଓ କାଚର ହାଲ୍‌କାଗୁଣ ଏକାଧାରରେ ପୂରି ରହିଛି । ଏହାକୁ ଶୀଘ୍ର ତରଳା ଯାଇପାରେ । ପ୍ରକୃତ ରାଜ୍ୟରେ ଏହା ସବୁଠି ପୂରି ରହିଛି । କାରଣ ଏହା ପ୍ରାୟ ଅଧିକାଂଶ ପାହାଡ଼ ଦେହରୁ ମିଳେ । ଏହା ଲୁହାଠାରୁ ତିନିଗୁଣ ହାଲ୍‌କା । ଆମ ଗୋଳପାଇଁ ଈଶ୍ୱର ବୋଧହୁଏ ଏହି ଧାତୁ ନିର୍ମାଣ କରିଛନ୍ତି ।”

ମେଜର—“ଅଲୁମିନିୟମ୍‌ର ଦାମ କଣ ବେଶି ନୁହେଁ ?”

ବାର୍ବିକେନ—“ବେଶି ଥିଲା, ଯେତେବେଳେ ନୂଆ ନୂଆ ଅବିଷ୍କୃତ ହୋଇଥିଲା । ସେତେବେଳେ ଏହାର ଦାମ ପାଉଣ୍ଡକୁ ଟ୨୬୦ରୁ ଟ୮୩୦୦ ମଧ୍ୟରେ ଥିଲା । ତାପରେ ଦାମ ଟ୮୪୦ କୁ ଆସିଗଲା ! ଏବେ ତାର ଦାମ ପାଉଣ୍ଡକୁ ଟ୨୮୯ ।

ମେଜର—“ତଥାପି ଏ ଦାମ ତ କିଛି କମ ନୁହେଁ ।”

ବାର୍ବିକେନ—“ଅବଶ୍ୟ ବେଶି, ମାତ୍ର ସୀମାର ଅତୀତ ନୁହେ ।”

ମର୍ଗାନ୍—“ତାହେଲେ ଗୋଲର ଓଜନ କେତେ ହେବ ?”

ବାର୍ବିକେନ—“ମୋ ହିସାବ ଦେଖନ୍ତୁ । ୧୦୮ ଇଞ୍ଚ ବ୍ୟାସ ଓ ବାର ଇଞ୍ଚ ବହଳର ଗୋଲ ଲୁହାରେ ହେଲେ ତାର ଓଜନ ହେବ ୨୨, ୪୫୦ ପାଉଣ୍ଡ । ମାତ୍ର ଆଲୁମିନିୟମ୍‌ରେ ହେଲେ ତାର ଓଜନ ହେବ ୧୯, ୨୫୦ ପାଉଣ୍ଡ ।”

ମାଷ୍ଟନ୍ ଆନନ୍ଦରେ ଅଧୀର ହୋଇ କହିଲେ, "ବାଃ, ବାଃ, ଏଇତ ଆମର ଦର୍କାର ।"

ମେଜର୍—"ହଁ, କିନ୍ତୁ ହିସାବ କରି ଦେଖ, ଏହାର ଦାମ ପାଉଣ୍ଡ ୫୨୮୯ ହିସାବରେ କେତେ ?"

ସଭାପତି—"ସାତଲକ୍ଷ ଊଣିଶ ହଜାର ଦୁଇଶହ ଟଙ୍କା । ମୁଁ ତାହା ଜାଣେ । କିନ୍ତୁ, ବନ୍ଧୁମାନେ, କିଛି ଭୟ ନାହିଁ । ଆମର ଏ ସଙ୍କଳ୍ପପାଇଁ ଟଙ୍କାର ଅଭାବ ହେବନାହିଁ । ମୁଁ ସେ କଥା ବୁଝିବି । ତେବେ ଆଲୁମିନିୟମ୍ ବିଷୟରେ ଆପଣମାନଙ୍କର ମତ କଣ ?"

ସମସ୍ତେ ଏଥିରେ ଏକମତ ବୋଲି ଜଣାଇଲେ ।

ସଭାପତି—"ଗୋଲାର ଆକାର ସମ୍ବନ୍ଧରେ ବିଶେଷ କିଛି ଯାଏ ଆସେ ନାହିଁ । ଏହା ଥରେ ବାୟୁମଣ୍ଡଳ ଭେଦକରି ଶୂନ୍ୟକୁ ଚାଲିଗଲେ ତାହା ନିଜ ରାସ୍ତାଧରି ଚାଲିବ । ମୁଁ ପ୍ରସ୍ତାବ କରୁଛି, ଗୋଲା ସମ୍ପୂର୍ଣ୍ଣ ଗୋଲ ହେବ । ତାହେଲେ ଏହା ଆପଣାଛାଏଁ ନଭୋମଣ୍ଡଳରେ ଦୂରିବ । ଆପଣମାନେ କ'ଣ ଭାବୁଛନ୍ତି ?"

ସମସ୍ତେ ଏଥିରେ ଏକମତ ହେବାରୁ ଗୋଲା ବିଷୟ ନିଷ୍ପତ୍ତି ସରିଲା । ସମିତିର ଅଧିବେଶନ ଶେଷ ହେଲା । ଜେ. ଟି. ମାଷ୍ଟନ୍ ଟିକିଏ ଆମୋଦପ୍ରିୟ ଲୋକ । ଗୋଟିଏ ଆଲୁମିନିୟମ୍ ଗୋଲା ଉପଗ୍ରହ ନିକଟକୁ ପଠାହେବାପାଇଁ ଶେଷରେ ନିଷ୍ପତ୍ତି ହେବାରୁ ତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ଅବଶିଷ୍ଟ ପେଡ଼ାତକ ଚଟାଚଟ୍ ପାଟିକୁ ପକେଇ ଦେଇ ଗାଜିଁ ଗାଜିଁ ହୋଇ ଯେଉଁ ଆନନ୍ଦ ପ୍ରକାଶ କଲେ, ତାହା ଅନ୍ୟ ମେମ୍ବରମାନଙ୍କ ମନ ପରିବର୍ତ୍ତନ ପାଇଁ ଯଥେଷ୍ଟ ଉପାଦାନ ହେଲା ।

—ପାଞ୍ଚ—

## ତୋପ ବିଷୟ ମୀମାଂସା

ସମିତିର ଉକ୍ତ ଅଧିବେଶନର ନିଷ୍ପତ୍ତି ବାହାରେ ବଡ଼ ପ୍ରତିକ୍ରିୟା ସୃଷ୍ଟିକଲା । କୋଡ଼ିଏ ହଜାର ପାଉଣ୍ଡ ଓଜନର ଏତେବଡ଼ ଗୋଟାଏ ଗୋଳା ଶୂନ୍ୟକୁ ଫିଙ୍ଗାଯିବ, ଏକଥା ଶୁଣି ସହରର ଲୋକମାନେ ଭୟରେ ଥରିଲେ । ଆଉ ଲୋକେ ପଚରାପଚରି ହେଲେ, ଏତେବଡ଼ ଗୋଟାଏ ବିଶାଳ ପିଣ୍ଡ ଶୂନ୍ୟକୁ ଛାଡ଼ିବାକୁ ହେଲେ, କେଉଁ ପରି ତୋପ ଏହାକୁ ଯଥେଷ୍ଟ ବେଗ ଦେଇପାରିବ ? ଦ୍ୱିତୀୟ ଅଧିବେଶନର ବିବରଣ ସାହସର ସହିତ ଏହାର ଉତ୍ତର ଦେଇଥିଲା ।

ତାପର ଦିନ ସନ୍ଧ୍ୟାରେ ସମିତିର ସେହି ତିନିଜଣ ମେମ୍ବର ପୁଣି ଚପଡ଼ା ପାହାଡ଼ ଓ ବ୍ଲୁ ସାଗର ନିକଟରେ ବସି ଆଲୋଚନା ଆରମ୍ଭ କଲେ । ବାର୍ବିକେନ କହିଲେ, "ମୋର ପ୍ରିୟ ବନ୍ଧୁଗଣ ! ଆଜି ଆମ୍ଭେମାନେ ଇଞ୍ଜିନ୍, ତାର ଲମ୍ବ, ଆକୃତି, ମିଶ୍ରଣ ଓ ଓଜନ ବିଷୟ ସ୍ଥିରକରିବା । ବୋଧହୁଏ ତାକୁ ଗୋଟାଏ ବିରାଟ ଆକାର ଦେବାକୁ ପଡ଼ିବ । ଏଥିପାଇଁ ଯେତେ ଅସୁବିଧା ଘଟିଲେ ମଧ୍ୟ, ଆମ୍ଭମାନଙ୍କ ଶିଳ୍ପ ବୁଦ୍ଧି ଏହାକୁ ନିଶ୍ଚୟ ଅତିକ୍ରମ କରିବ । ଏ ବିଷୟରେ ମୁଁ ଯାହା ଭାବୁଛି, କହୁଛି । ଆଗେ ସବୁ ଶୁଣନ୍ତୁ, ପରେ ଯୁକ୍ତି କରିବେ ।"

ସମସ୍ତେ ଏକମତ ବୋଲି କହିବାରୁ ସେ ପୁଣି କହିଲେ, "କାଲିର ଆଲୋଚନା ଆମକୁ କେଉଁଠି ନେଇ ଠିଆ କରିଛି ? ତାହା

ଏହି—୧୦୮ ଇଞ୍ଚ ବ୍ୟାସ ଓ ତୋଳିଏ ହଜାର ପାଉଣ୍ଡ ଓଜନର ଗୋଟାଏ ଗୋଲାକୁ କିପରି ମୌଳିକ ବେଗ ଦେବାକୁ ହେବ ? ଅଚ୍ଛା, ଯେତେବେଳେ ଗୋଟାଏ ଗୋଲା ଶୂନ୍ୟକୁ ନିକ୍ଷିପ୍ତ ହୁଏ, ସେତେବେଳେ ହୁଏ କଣ ? ତିନୋଟି ସ୍ୱାଧୀନ ଶକ୍ତି ଏଥିରେ କାର୍ଯ୍ୟ କରନ୍ତି । ପ୍ରଥମେ ବାୟୁମଣ୍ଡଳର ପ୍ରତିରୋଧ, ଦ୍ୱିତୀୟରେ ପୃଥିବୀର ଆକର୍ଷଣ ଓ ତୃତୀୟରେ ଗୋଲା ନିକ୍ଷେପ କାଳର ଯନ୍ତ୍ରର ଧକ୍କା । ଆସ, ଏହି ତିନି ଶକ୍ତିକି ପରୀକ୍ଷା କରିବା । ବାୟୁର ପ୍ରତିରୋଧ ଶକ୍ତି ବିଶେଷ କିଛି ନୁହେଁ । କାରଣ ପୃଥିବୀର ବାୟୁମଣ୍ଡଳ ୪୦ ମାଇଲ ପର୍ଯ୍ୟନ୍ତ ବିସ୍ତୃତ । ଗୋଲା ସେକେଣ୍ଡକେ ବାର ହଜାର ଗଜ ଜୋରରେ ଗଲାବେଳେ, ଉକ୍ତ ବାୟୁମଣ୍ଡଳକୁ ଛଅ ସେକେଣ୍ଡରେ ଭେଦକରି ଚାଲିଯିବ । ସୁତରାଂ ଏହି କମ ସମୟ ମଧ୍ୟରେ ବାୟୁର ପ୍ରତିରୋଧ କିଛି ବାଧା ଦେଇ ପାରିବ ନାହିଁ । ଏବେ ମାଧ୍ୟାକର୍ଷଣ କଥା, ଅର୍ଥାତ୍ ଗୋଲାର ଓଜନ କଥା ଭାବ । ଆମ୍ଭେମାନେ ଜାଣୁଛେ, ଏହି ଓଜନ ଦୂରତା ଅନୁପାତରେ କମିଯାଏ। ଭୌତିକତତ୍ତ୍ୱ (Physics)ରୁ ଏହି ଶିକ୍ଷା ମିଳୁଛି ଯେ, କୌଣସି ପଦାର୍ଥ ଆକାଶରେ ସ୍ଥିର ରହି-ନପାରି ପୃଥିବୀ ଉପରେ ପଡ଼ିଯାଏ । ସେହି ପତନର ଗତି ପ୍ରତି ସେକେଣ୍ଡରେ ପନ୍ଦର ଫୁଟ୍ ଅଧିକ ହୁଏ । ସେହିପରି କୌଣସି ପଦାର୍ଥକୁ ଯଦି ଶୂନ୍ୟକୁ ନିକ୍ଷେପ କରାଯାଏ, ତେବେ ତାର ବେଗ ପ୍ରତି ସେକେଣ୍ଡରେ ଅଧା କମିଯାଏ । ସେହି ନିକ୍ଷେପ ଯଦି ୨, ୫୭, ୫୦୨ ମାଇଲ ଉଚ୍ଚକୁ ଅର୍ଥାତ୍ ପୃଥିବୀରୁ ଚନ୍ଦ୍ରକୁ ହୁଏ, ତାହେଲେ ବେଗ ପ୍ରତି ସେକେଣ୍ଡରେ ଅଧା କମିଯିବ । ଏହା ସ୍ଥିରତା ସଙ୍ଗେ ପ୍ରାୟ ସମାନ । ତେଣୁ ପ୍ରଶ୍ନ ହେଉଛି, ଏହି ମାଧ୍ୟାକର୍ଷଣ ଶକ୍ତିକୁ କିପରି ସଫଳତାର ସହିତ ଅତିକ୍ରମ କରିବାକୁ ହେବ । ତା କିପରି ହେବ ? ମେସିନ୍‌ର ସେହି ଧକ୍କା ଶକ୍ତି ବଳରେ ?"

ମେଜ୍ଜର—"ସେତ ବଡ଼ କଠିନ କଥା ।"

ବାର୍ବିକେନ, "ତା ନିଶ୍ଚୟ । କିନ୍ତୁ ଆମେ ଏହା ଅତିକ୍ରମ କରିପିବା । ଇଞ୍ଜିନର ଲମ୍ବା ଓ ବ୍ୟବହୃତ ବାରୁଦର ପରିମାଣ ଉପରେ ଆବଶ୍ୟକ ଧକ୍କା ଶକ୍ତିର ବେଗ ନିର୍ଭର କରେ । ଗୋଟିଏ ଅନ୍ୟର ପ୍ରତିରୋଧ ଦ୍ୱାରା ସୀମାବଦ୍ଧ ହେବ । ତେଣୁ ତୋପକୁ କେଡ଼େ ଆକାର ଦିଆଯିବ, ଆଜି ସେ କଥାର ବିଚାର ହେଉ । ଏ ପର୍ଯ୍ୟନ୍ତ ଯେତେ ତୋପ ତିଆରି ହୋଇଛି, ତା ମଧ୍ୟରେ ସବୁଠାରୁ ଲମ୍ବା ତୋପ ୨୫ ଫୁଟ ମାତ୍ର । କିନ୍ତୁ ଆମେ ଆମ ତୋପକୁ ଯେଉଁ ଆକାର ଦେବାକୁ ଯାଉଥାଇଁ ତହିଁରେ ଲୋକେ ବିସ୍ମିତ ହୋଇଯିବେ ।"

ମାଷ୍ଟନ—"ନିଶ୍ଚୟ । ମୁଁ ଚାହେଁ ମୋ ପାଇଁ ଗୋଟାଏ ତୋପ କରିଦିଅ, ଯାହାର ଲମ୍ବା ଅଧମାଇଲ୍ ହେବ ।"

ବାର୍ବିକେନ ମେଜ ଉପରେ ଦୁଇ ବାହୁ ପ୍ରସାରିତ କରି ତା ମଧ୍ୟରେ ମୁହଁପୋତି କଣ ଚିନ୍ତା କରୁଥିଲେ । ହଠାତ୍ ମୁହଁ ଉଠାଇ ଗମ୍ଭୀର ସ୍ୱରରେ କହିଲେ, "ତୁମ୍ଭ ଦୁଅ ବନ୍ଧୁ ! ବିଷୟର ବାସ୍ତବତା ପ୍ରତି ଟିକିଏ ମନ ଦିଅ । ବହୁତ ଦୂରକୁ ଲକ୍ଷ୍ୟ କରୁଥିବା ଗୋଟାଏ ତୋପ ଅମର ଦରକାର । କାରଣ ଇଞ୍ଜିନ ଲମ୍ବାଥିଲେ ତାହା ବାରୁଦର ବାଷ୍ପକୁ ଗୋଲା ପଛରେ ଖୁବ୍ ଅଟକାଇ ପାରିବ । ତେବେ ଏଥିପାଇଁ କେତେକ ସୀମା ଅତିକ୍ରମ କରିବା ଅନାବଶ୍ୟକ ।"

ମେଜ୍ଜର—"ଠିକ୍ ।"

ବାର୍ବିକେନ—"ଏ ବିଷୟରେ ସାଧାରଣ ନିୟମ କଅଣ ? ସାଧାରଣତଃ ତୋପର ଲମ୍ବ ଗୋଲା-ବ୍ୟାସର କୋଡ଼ିଏ ଠାରୁ ପଚିଶ ଗୁଣ ମଧ୍ୟରେ ହୁଏ । ଓଜନ ମଧ୍ୟ ଗୋଲା ଓଜନର ୨୩୫ରୁ ୨୪୦

ଗୁଣ ମଧ୍ୟରେ ହୁଏ । ତେବେ ଏହି ଅନୁପାତ ଧରିଲେ ଯେଉଁ ତୋଳର ବ୍ୟାସ ନଅଫୁଟ ଓ ଓଜନ ତବଶ ହଜାର ପାଉଣ୍ଡ, ତାର ଇଞ୍ଜିନ ଲମ୍ବ ୨୨୫ ଫୁଟ ଓ ଓଜନ ବାସ୍ତବି ଲକ୍ଷ ପାଉଣ୍ଡ ହେବା ଉଚିତ୍ ।”

ମାଷ୍ଟନ୍—“ଆପଣ କଣ ପିସ୍ତଲଟିଏ ତିଆର କରିବେ କି ?”

ବାର୍ବିକେନ—“ମୁଁ ମଧ୍ୟ ସେୟା ଭାବୁଛି । ତେଣୁ ଅନୁପାତକୁ ଚାରିଗୁଣ ବୃଦ୍ଧି କରି ତାର ଲମ୍ବ ଠିକ୍ କରାଯିବ ଏବଂ ନଅଶହ ଫୁଟ ଲମ୍ବର ତୋପ ତିଆରି ହେବ ।”

ଜେନେରାଲ ଓ ମେଜର ଏ ବିଷୟରେ କେତେକ ଆପତ୍ତି ଉଠାଇଥିଲେ । କିନ୍ତୁ ଉକ୍ତ ପ୍ରସ୍ତାବ ସେକ୍ରେଟେରି ମାଷ୍ଟନଙ୍କ ପୂର୍ଣ୍ଣ ଅନୁମୋଦନ କ୍ରମେ ଶେଷରେ ଗୃହୀତ ହୋଇଥିଲା ।

ଏଲଫିନ୍‌ଷ୍ଟୋନ୍—“ତୋପର ପାର୍ଶ୍ୱ କେତେ ବହଳ ହେବ ?”

ବାର୍ବିକେନ୍—“ଛଅଫୁଟ ।

ମେଜର—“ଏତେବଡ଼ ଗୋଟାଏ ପିଣ୍ଡ ବୁହାହେବ କପରି ?”

ମାଷ୍ଟନ୍—“ସେଇତ ଚମତ୍କାର ।

ବାର୍ବିକେନ୍—“ତା ଅସାଧ୍ୟ । ମାଟି ଭୂଇଁରେ ଗୋଟାଏ ଗାତ ଖୋଳି, ସେ ଭୂଇଁକୁ ବାନ୍ଧ ଓ ଶକ୍ତ ପଥର ସିମେଣ୍ଟରେ ତା ଗୁରି ବେଢ଼ନ୍ତରେ ମୋଟା କାନ୍ଥଦେଇ ତା ମଧ୍ୟରେ ଇଞ୍ଜିନକୁ ଢାଳିବା ମୋର ମତ । ତାହା ତଳା ହୋଇଗଲେ, ଖୁବ୍ ସାବଧାନତାର ସହି ତାକୁ ଫୋଡ଼ିବାକୁ ହେବ, ଯେପରି ଛିଦ୍ର ରହିବ ନାହିଁ । ତା ହେଲେ ବାଷ୍ପ ବାହାରିଯିବ ଏବଂ ବାରୁଦର ସମ୍ପ୍ରସାରଣୀ ଶକ୍ତି ଗୋଳାକୁ

ଧକ୍କା ଦେବା କାର୍ଯ୍ୟରେ (Propulsion) ବ୍ୟବହୃତ ହୋଇ ପାରିବ ନାହିଁ ।"

ମାଷ୍ଟନ୍ ଆନନ୍ଦରେ ଚିତ୍କାର କରି କହିଲେ, "ହୁର୍‌ରେ ହୁର୍‌ରେ, ଆମର ତୋପ ଏଥର ହେଲାରେ ।"

ବାର୍ବିକେନ୍—"ନା, ନା, ବନ୍ଧୁ ! ଏବେ ସୁଦ୍ଧା ହୋଇନାହିଁ । ଆକାର ବିଷୟରେ ଆମେ ଆଲୋଚନା କରି ନ ଥାଇଁ ।

ସମସ୍ତେ ଏ ବିଷୟରେ କେତେକ କଥା ଭାବିଲେ । କିଏ କହିଲା,ଇଏ ଗୋଟାଏ ତୋପ, କିଏ କହିଲା ଇଏ ଗୋଟାଏ ହାଉଇଜର, କିଏ କହିଲା ଇଏ ଗୋଟାଏ ମର୍ଟାର । ଏଇଟା ବାସ୍ତବିକ କଣ ହେବ, କେହି ସ୍ଥିର କରି ପାରିଲେ ନାହିଁ । ଶେଷରେ ସଭାପତି କହିଲେ, "ଏଇଟା ସବୁ ପ୍ରକାରର ହେବ । ଦେଖନ୍ତୁ, ଏଥିରେ ତିନି ପ୍ରକାର ବ୍ୟବସ୍ଥା ରହିଲେ ଯାଇ ଚଳିବ । ତୋପ ରୂପରେ ଏଥିରେ ବାରୁଦ ଘରର ମାପ ସେତେ; ଗୋଲା ଚଳିବା ନଳର ମାପ ସେତିକି । ହାଉଇଜର ହିସାବରେ ଏହା ଗୋଲାକୁ ନିକ୍ଷେପ କରିବ । ପୁଣି ମର୍ଟାର ହିସାବରେ ଏହା ୯୦ ଡିଗ୍ରୀକୁ କୋଣ କରି ଲକ୍ଷ୍ୟ କରିବ ଏବଂ ଏ ଲକ୍ଷ୍ୟରୁ ଟଳିଲି ଯିବ ନାହିଁ । ଭୂଇଁରେ ଦୃଢ଼ରୂପେ ଆବଦ୍ଧ ହେବାରୁ ଏହା ଭିତରେ ଯେତେ ଧକ୍କା ଶକ୍ତି ଜାତ ହେବ, ତା ସମସ୍ତ ସେ ଗୋଲା ପ୍ରତି ପ୍ରୟୋଗ କରିବ ।"

ସମସ୍ତେ ମହାନନ୍ଦରେ ଏଥିରେ ସମ୍ମତି ଜଣାଇଲେ । ତାପରେ କେଉଁ ଧାତୁରେ ଏ ତୋପ ତିଆରି ହେବ, ତାର ଆଲୋଚନା ଚାଲିଲା । ବହୁ ଯୁକ୍ତି ତର୍କ ପରେ ସ୍ଥିର ହେଲା, ଇସ୍ପାତ ଲୁହାରେ ଏ ତୋପ ତିଆରି ହେବ । ତାର ଓଜନ ହେବ ୬୮,୦୪୦ ଟନ୍ ଏବଂ

ଲୁହାର ମୂଲ୍ୟ ହେବ ଛଅକୋଟି, ଏକଲକ୍ଷ, ବାଉନ ହଜାର, ଦୁଇଶହ ତେଣଟଙ୍କା । ଏ ଟଙ୍କାର ପରିମାଣ ଶୁଣି ମେମ୍ବରମାନେ ଚମକି ପଡ଼ିଲେ ଏବଂ ପରସ୍ପରକୁ ଚାହିଁ ରହିଲେ । ସଭାପତି ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ, "ବନ୍ଧୁଗଣ ! ମୁଁ ଭାଲି ଯେପରି କହୁଛି, ଅଙ୍କ ମଧ୍ୟ ସେହିପରି କହୁଛି, ଟଙ୍କା ବିଷୟରେ କିଛି ଚିନ୍ତା କରନ୍ତୁ ନାହିଁ । ସେ କଥା ମୁଁ ବୁଝିବି ।"

ସଭାପତିଙ୍କ ଆଶ୍ୱାସନାରେ ସମସ୍ତେ ଆନନ୍ଦିତ ହେଲେ ଏବଂ ଦ୍ୱିଗୁଣ ଉତ୍ସାହରେ 'ପେଡ଼ାର ପାହାଡ଼'ଓ ଗୁ ସାଗରକୁ ଖୋଲି କରିଦେଲେ । ଭାଲିଙ୍କ ପୁଣି ବୈଠକ ମୁଲତବି ରହିଲା ।

---

═ଛଅ═

## ବାରୁଦ ବିଷୟ ମୀମାଂସା

ସମିତିରେ ଯାହା ନିଷ୍ପତ୍ତି ହେଲା ତାହା ସଙ୍ଗେ ସଙ୍ଗେ ସାଧାରଣରେ ଘୋଷଣା କରି ଦିଆଗଲା । ଲୋକଙ୍କ ଉତ୍ସାହ ଆନନ୍ଦର ସୀମା ରହିଲା ନାହିଁ । ଗୋଲା ଓ ତୋପ ଏ ଦୁଇଟି ପ୍ରଧାନ ବିଷୟ ଲୋକେ ଜାଣିବାକୁ ଉତ୍କଣ୍ଠିତ ଥିଲେ । ଏବେ ସମସ୍ତେ ବୁଝି ପାରିଲେ ଯେ ଗନ୍‌କ୍ଲବର ସଂକଳ୍ପ ନିଶ୍ଚୟ ସିଦ୍ଧ ହେବ । ଅଳ୍ପ ଲୋକେକ ବାରୁଦ ବିଷୟରେ ସନ୍ଦିହାନ ହେଲେ । ଏହା ନିଷ୍ପତ୍ତି ନ ହେଲେ ଏତେ ଆଲୋଚନାର କୌଣସି ମୂଲ୍ୟ ରହିବ ନାହିଁ । ମାତ୍ର ତୃତୀୟ ବୈଠକ ଏ ବିଷୟରେ ନିଷ୍ପତ୍ତି କରି ସମସ୍ତଙ୍କ ମନରୁ ସନ୍ଦେହ ଦୂର କରିଦେଲା ।

ଲୋକେ କହନ୍ତି, ବାରୁଦ ଚତୁର୍ଦ୍ଦଶ ଶତାବ୍ଦୀରେ ସ୍ୱାର୍ଜ ନାମକ ଜଣେ ସାଧୁଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା । ସେ ଏଥିପାଇଁ ନିଜ

ଜୀବନ ତ୍ୟାଗ କରିଥିଲେ । ମାତ୍ର ପରେ ଅନୁସନ୍ଧାନ ଦ୍ୱାରା ସ୍ଥିର ହୋଇଛି ଯେ ଏହା ମଧ୍ୟଯୁଗର ଗୋଟାଏ ପୌରାଣିକ ଗଳ୍ପ । ବାରୁଦ ବାସ୍ତବରେ ଚୀନଦେଶରେ ପ୍ରଥମେ ଅବିଷ୍କୃତ ହୋଇଥିଲା । ଗନ୍ଧକ ଓ ଯବକ୍ଷାର ବା ସୋଡ଼ାର ମିଶ୍ରଣରୁ ପ୍ରଥମେ ଏହାର ଉତ୍ପତ୍ତି । ଏହା ପୂର୍ବେ ଅଗ୍ନି ସଂଯୋଗରେ ଗଳିତ ହୋଇ ଯାଉଥିଲା । ମାତ୍ର ଏବେ ଭୀଷଣ ଶବ୍ଦରେ ଗୋଲକୁ ଫଟାଇବା ଦ୍ରବ୍ୟରେ ପରିଣତ ହୋଇଛି ।

ଶିକ୍ଷିତ ଲୋକେ ବାରୁଦର ଉପରୋକ୍ତ ମିଥ୍ୟା ଇତିହାସ ଜାଣନ୍ତି । ମାତ୍ର କମ ଲୋକେ ଏହାର ଯାନ୍ତ୍ରିକ ଶକ୍ତି ବିଷୟ ଜାଣନ୍ତି । ତେଣୁ ଗନ୍କ୍ଲବ କମିଟି ଏ ବିଷୟରେ ଯାହା ନିଷ୍ପତ୍ତି କଲେ ତାର ଗୋଟାଏ ସାମାନ୍ୟ ଧାରଣା ଅଣିବା ଏକାନ୍ତ ଆବଶ୍ୟକ ।

ଏକ ଲିଟାର (୧) ବାରୁଦର ଓଜନ ଦୁଇ ପାଉଣ୍ଡ ବା ଏକ ସେର । ଏଥିରେ ଅଗ୍ନି ସଂଯୋଗ ହେଲେ ଏଥିରୁ ୪୦୦ ଲିଟାର ବାଷ୍ପ ବାହାରେ । ଏହି ବାଷ୍ପରେ ୨୪୦୦ ଡ଼ିଗ୍ରୀ ଉତ୍ତାପ ଲଗିଲେ ଏହା ୪୦୦୦ ଲିଟରର ଜାଗା ଅଧିକାର କରେ । ତେଣୁ ଏକ ଲିଟାର ବାରୁଦ ପରିମାଣ ଅଗ୍ନି ସଂଯୋଗରେ ୪୦୦୦ ଗୁଣ ହୁଏ । ତେଣୁ ବାଷ୍ପର ଏହି ଭୀଷଣ ଶକ୍ତି ତାର ୪୦୦୦ ଗୁଣ କମ ଜାଗାରେ ଆବଦ୍ଧ ରହିଲେ କଣ ହେବ, ତାହା ଭାବିବାର ବିଷୟ ।

ତୃତୀୟ ଦିନ ସନ୍ଧ୍ୟାରେ ଯେତେବେଳେ କମିଟି ମେମ୍ବର-ମାନେ ବୈଠକ ଆରମ୍ଭ କଲେ, ତା ପୂର୍ବରୁ ସେମାନେ ଅବଶ୍ୟ ବାରୁଦର ଏ ଭୀଷଣ ଶକ୍ତି ବିଷୟ ଜାଣିଥିଲେ । ସେମାନେ ଥୋଡ଼ାଏ

(୧) ଏକ ଗାଲନ୍—୪୨ ଲିଟାର୍ ।

ଯେଉଁ ଓ ଗୁ ଦ୍ୱାରା ଗଳାକୁ ସତେଙ୍କ ରଖି ଆଲୋଚନାରେ ଲାଗିଲେ ।

ମେଜର୍ ଏଲ୍‌ଫିନ୍ ଷ୍ଟୋନ୍ ଜଣେ ବିଖ୍ୟାତ ରସାୟନବିତ୍ । ସେ ଆରମ୍ଭରେ କହିଲେ, "ବନ୍ଧୁଗଣ ! ମୁଁ କେତେକ ସଂଖ୍ୟା କହିବି, ଯାହା ଆମ ହିସାବ ପାଇଁ ବହୁତ ସାହାଯ୍ୟ କରିବ । ଚବିଶ ପାଉଣ୍ଡିଆ ଗୋଲାକୁ ୧୬ ପାଉଣ୍ଡ ବାରୁଦ ସହଜରେ ନିକ୍ଷେପ କରି ପାରିଛି ।"

ବାର୍ବିକେନ୍—"ଏ ହିସାବ କଣ ଠିକ୍ ?"

ମେଜର୍—"ନିଶ୍ଚୟ ଠିକ୍ । ଆର୍ମଷ୍ଟ୍ରଙ୍ଗ୍‌ରେ ତୋପରେ ୮୦୦ ପାଉଣ୍ଡିଆ ଗୋଲା ଦାଗିବା ପାଇଁ ୭୫ ପାଉଣ୍ଡ୍ ବାରୁଦ ଦରକାର ହୁଏ । ରଡ଼୍‌ମ୍ୟାନ୍ କାଲମ୍ବିଅଡ଼୍ ୧୮୦ ପାଉଣ୍ଡ ବାରୁଦ ବଳରେ ଅଧ ଟନ୍ ଓଜନର ଗୋଲା ଛଅ ମାଇଲ ଦୂରକୁ ନିକ୍ଷେପ କରେ । ଏଥିରେ କୌଣସି ଭୁଲ ନାହିଁ । ମୁଁ ନିଜେ ଏହା ଅନୁଭବ କରିଛି ।"

ଜେନେରାଲ—"ଏହା ଠିକ୍ ବୋଲି ମୁଁ ଜାଣେ ।"

ମେଜର୍—"ଗୋଲାର ଓଜନ ଯାହାହେଉ ନା କାହିଁକି, ବାରୁଦର କମ୍ ବେଶୀରେ କିଛି ଯାଏ ଆସେ ନାହିଁ । ୨୪ ପାଉଣ୍ଡିଆ ଗୋଲାପାଇଁ ଯେବେ ୧୬ ପାଉଣ୍ଡ୍ ବାରୁଦ ଦର୍କାର, କିମ୍ବା ଅନ୍ୟ ପ୍ରକାରରେ କହିଲେ, ଯେବେ ସାଧାରଣ ତୋପରେ ଗୋଲା ଓଜନର ତିନି ଭାଗରୁ ଦୁଇଭାଗ ବାରୁଦ ଦରକାର, ତଥାପି ସବୁବେଳେ ଏପରି ଅନୁପାତ ଅନାବଶ୍ୟକ । ହିସାବରୁ ଦେଖିଲୁ, ଅଧ ଟନ୍‌ର ଗୋଲାପାଇଁ ୩୩୩ ପାଉଣ୍ଡ ବାରୁଦ ଅନୁପାତ ଅନୁସାରେ ଆବଶ୍ୟକ ସ୍ଥଳେ ୧୬ ପାଉଣ୍ଡ ମାତ୍ର ବାରୁଦରେ କାମ ହୋଇଅଛି ।"

ମାଷ୍ଟନ୍—"ତା ହେଲେ ଏପରି ସମୟ ଆସିଯିବ, ଯେତେବେଳେ ଗୋଲା ଯେତେ ଓଜନର ହେଉନା କାହିଁକି, ତା ପାଇଁ ବାରୁଦ ମୋଟେ ଲୋଡ଼ା ହେବ ନାହିଁ ।"

ମେଜର—"ଗୁରୁତର ଆଲୋଚନା ବେଳେ ମଧ୍ୟ ମାଷ୍ଟନ୍ ସାହେବ ତାଙ୍କ ରହସ୍ୟ ଛାଡ଼ି ପାରନ୍ତି ନାହିଁ । ମୁଁ ତାଙ୍କୁ ଅଦ୍ଭୁତ ଭଲ ନଜର ଦେଉଛି । ଯୁଦ୍ଧବେଳେ ବହୁ ଅଭିଜ୍ଞତାରୁ ଦେଖାଯାଇଛି, ଗୋଲା ଓଜନର ଦଶମାଂଶ ବାରୁଦ ମଧ୍ୟ ବ୍ୟବହାର କରାଯାଇ ପାରେ ।"

ମର୍ଗାନ୍—"କୌଣସି କଥାର ନିଶ୍ଚିତ ସିଦ୍ଧାନ୍ତ ନାହିଁ । ତେବେ, ଆବଶ୍ୟକ ଧକ୍କା ପାଇଁ ଯେତେ ବାରୁଦ ଦରକାର, ତାର ମୀମାଂସା କରିବା ପୂର୍ବରୁ ତାର ପ୍ରକୃତି ଉପରେ ଅନେକଟା ନିର୍ଭର କରେ ବୋଲି ମୁଁ ମନେ କରୁଛି ।"

ମେଜର୍—"ବଡ଼ ଦାନା ବିଶିଷ୍ଟ ବାରୁଦ ସେଥିପାଇଁ ଦରକାର । ତାର ଦାହିକା ଶକ୍ତି ଖୁବ୍ ପ୍ରବଳ ।"

ମର୍ଗାନ୍—"ତା ଠିକ୍, କିନ୍ତୁ ସେ ଦାନାଗୁଡ଼ାକ ଶୀଘ୍ର ଭାଙ୍ଗିଯାଏ ଏବଂ ତୋପକୁ ବିଗାଡ଼ି ଦିଏ ।"

ମେଜର୍—"ନିଶ୍ଚୟ, ଯେଉଁ ତୋପ ସବୁବେଳେ ବ୍ୟବହୃତ ହୁଏ, ତା ପାଇଁ ସିନା ଏ କଥା ଆବଶ୍ୟକ ? ଆମ ତୋପ ପାଇଁ ଅବଶ୍ୟ ନୁହେଁ । ବିସ୍ଫୋରଣର ଭୟ ଆମର ନାହିଁ । ଏଥିରେ ନିଆଁ ଧରିବା ମାତ୍ରେ ଆମର କାମ ଫତେ ।"

ସଭାପତି ବାର୍ବିକେନ୍ ଏ ପର୍ଯ୍ୟନ୍ତ ଆଉ ଗୋଟାଏ କଣ ଚିନ୍ତା କରୁଥିଲେ । ତେଣୁ ସେ ଏ ସମସ୍ତ ଆଲୋଚନାରେ ଯୋଗ ଦେଇ ନ ଥିଲେ । ସେ କହିଲେ, "ତେବେ କେତେ ବାରୁଦ ଦରକାର ବୋଲି ସ୍ଥିର ହେଲା ?"

ସମସ୍ତେ ଏ ବିଷୟ ଅନେକ ଚିନ୍ତା କଲା ପରେ ମର୍ଗାନ୍ କହିଲେ, "ଦୁଇ ଲକ୍ଷ ପାଉଣ୍ଡ ।"

ମେଜର—"ପାଞ୍ଚଲକ୍ଷ ପାଉଣ୍ଡରୁ ଊଣା ହେବ ନାହିଁ ।"

ମାଷ୍ଟନ୍—"ମୋ ମତ ଆଠ ଲକ୍ଷ ପାଉଣ୍ଡ ।"

ଚନ୍ଦ୍ରଲୋକକୁ ଗୋଟାଏ ଗୋଲା ଛଡ଼ା ହେବ ଯେ, ତାର ଓଜନ ୨୦ ହଜାର ପାଉଣ୍ଡ ଓ ତାର ଜୋର ହେବ ସେକେଣ୍ଡରେ ବାର ହଜାର ଗଜ । ଏହା ସଙ୍ଗେ ଭିନ୍ନ ପ୍ରକାର ପ୍ରସ୍ତାବକୁ ଆଲୋଚନା କରି ମେମ୍ବରମାନେ ଘଡ଼ିଏ କାଳ ନୀରବ ହୋଇଗଲେ ।

କିଛି ସମୟପରେ ବାର୍ବିକେନ୍ ନୀରବତା ଭଙ୍ଗ କରି କହିଲେ, "ମୁଁ ବିଚାରୁଛି, ଏପରି ଅବସ୍ଥାରେ ଆମ ତୋପର ପ୍ରତିଘାତ ଶକ୍ତି ଅସୀମ । ତେଣୁ ମାଷ୍ଟନ୍ ସାହେବଙ୍କ ପ୍ରସ୍ତାବିତ ବାରୁଦର ପରିମାଣ ଦୁଇଗୁଣ କଲେ କିଛି ଅସୁବିଧା ନାହିଁ ।"

ମାଷ୍ଟନ୍—"କଣ ? ଷୋହଳ ଲକ୍ଷ ପାଉଣ୍ଡ ?" ଏହା ଚିତ୍କାର କରି କହି ସେ ଚଉକିରୁ ଉଠି ପଡ଼ିଲେ ।

ବାର୍ବିକେନ୍—"ଠିକ୍ ସେଇଆ ।"

ମାଷ୍ଟନ୍—"ତା ହେଲେ ମୋ ପୂର୍ବ ପ୍ରସ୍ତାବ ଅନୁସାରେ ତୋପକୁ ଅଧମାଇଲ୍ ଲମ୍ବ କରାଯାଉ ।"

ମେଜର—"ଏ ପ୍ରସ୍ତାବରୁ ସେହି ଅର୍ଥ ଅସୃଷ୍ଟ ଛ ।"

ମାଷ୍ଟନ—"ଷୋଳ ଲକ୍ଷ ପାଉଣ୍ଡ ବାରୁଦ ବାଇଶ ହଜାର ଘନ ଫୁଟ ଜାଗା ମାଡ଼ ବସିବ । ତୁମ ତୋପର ଗର୍ଭ ସେତେବେଳେ ଚଉବନ ହଜାର ଘନଫୁଟ, ଏ ବାରୁଦ ତାର ଅଧା ମାଡ ବସିବ । ତା ହେଲେ ଅଉ ସେ ଅଧିକ ଜାଗା ବହିଲ, ଡହିଁରେ ଗୋଲକୁ ଅବଶ୍ୟକ ଧକ୍କା ଦେବା ପାଇଁ ଅଧିକ ବାଷ୍ପ ବିସ୍ଫୋରଣ ହୋଇ ପାରିବ ନାହିଁ ।"

ସମସ୍ତଙ୍କ ମନକୁ ଏ କଥା ଧରିଲା । କେହି ଅଉ କୌଣସି ଜବାବ ଦେଇ ନ ପାରି ସଭାପତଙ୍କ ମୁହଁକୁ ଗୁହିଁଲେ ।

ବାର୍ବିକେନ୍—"ଯାହାହେଉ, ସେହି ପରିମାଣର ବାରୁଦ ମୋର ପ୍ରସ୍ତାବ । ଭାବ, ଷୋଳ ଲକ୍ଷ ପାଉଣ୍ଡ ବାରୁଦରୁ ଛଅ ଶହ କୋଟି ଲିଟାର୍ ବାଷ୍ପ ବାହାରିବ ।"

ଜେନେରାଲ୍—"ତା ହେଲେ କେମିତ କାମ ହେବ ?"

ବାର୍ବିକେନ୍—"ବଡ଼ ସହଜ କଥା । ବାରୁଦର ଏ ଭୀଷଣ ପରିମାଣକୁ ଅମେ ସଂକୁଚିତ କରି ଦେବା ଏବଂ ସାଙ୍ଗେ ସାଙ୍ଗେ ସେହି ରସାୟନକ ଫଳକୁ ରକ୍ଷା କରିବା ।"

ଜେନେରାଲ୍—"ଭଲ କଥା । କନ୍ତୁ ତା ହେବ କପରି ?"

ବାର୍ବିକେନ୍—"ମୁଁ ବୁଝେଇ ଦେଉଛି । ବାରୁଦର ଯାହା ମୋଟ ପରିମାଣ, ତାକୁ ଏକ ଚତୁର୍ଥାଂଶକୁ ସଂକୁଚିତ କରି ଅଣିଲେ

ହେବ । ଆପଣ ଜାଣନ୍ତି, ପ୍ରତ୍ୟେକ ଫଳର ବହିରାବରଣ ତଳେ ଶସକୁ ଆଚ୍ଛାଦନ କରି ଗୋଟିଏ ଅତି ସୂକ୍ଷ୍ମତମ ପଦାର୍ଥ ଥାଏ ? ଏହି ପଦାର୍ଥ କପାଫଳ ମଧ୍ୟରେ ଅତି ସୁନ୍ଦର ଭାବରେ ସଂଗତ ଅଛି । ଏହା କପା ମଞ୍ଜିର ଭିତର ଆବରଣ ଛଡ଼ା ଅନ୍ୟ କିଛି ନୁହେଁ । ତାହା ଫୁଟିଲେ କପା ହୁଏ । ଏହି କପା ଥଣ୍ଡା ଯବକ୍ଷାର ଦ୍ରାବକ ( Nitric Acid ) ସଙ୍ଗେ ମିଶିଲେ ଏପରି ଗୋଟାଏ ଦ୍ରବ୍ୟରେ ପରିଣତ ହୁଏ, ଯାହା ଆଦୌ ଦ୍ରବୀଭୂତ ହୁଏ ନାହିଁ । ଜଣେ ଧରଣର ଦାହ୍ୟ ଓ ବିସ୍ଫୋରକ ପଦାର୍ଥରେ ପରିଣତ ହୁଏ । ଜଣେ ଫରାସୀ ଦ୍ରବ୍ୟବିତ୍ (କେମିଷ୍ଟ୍) ୧୮୩୨ ରେ ଏହାକୁ ଅବିଷ୍କାର କରି ଏହାର ନାମ ରଖିଥିଲେ ଯିଲେଡ଼ିନ୍ । ପରେ ୧୮୪୬ ରେ ବାସଲ୍‌ର ପ୍ରଫେସର ସ୍କୋନ୍‌ବିନ୍ ଏହାକୁ ବହୁ ପରୀକ୍ଷା କରି ଏହା ବିଶିଷ୍ଟ ବାରୁଦ ବୋଲି ଘୋଷଣା କରିଥିଲେ । ବର୍ତ୍ତମାନ ଏହାର ନାମ ନାଇଟ୍ରିକ୍ କଟନ୍ ବା 'ପିରୋକ୍ସାଇଲ୍' । ଆପଣମାନେ ସମସ୍ତେ ଜାଣନ୍ତି, ଏଥିରେ ଅନ୍ୟ କେତେକ ଦ୍ରବ୍ୟ ମିଶି ଏହାକୁ ଅଧିକ ମୂଲ୍ୟବାନ କରାଯାଇଅଛି ! ଏହା ବହୁତ ସାବଧାନତାର ସହିତ ତିଆରି ହୁଏ । ଏହାକୁ ଯବକ୍ଷାର ଦ୍ରାବକ ( Nitric Acid ) ଧୂଆଁରେ ପନ୍ଦର ମିନିଟ୍ ରଖାଯାଏ । ତାପରେ ପାଣିରେ ଧୂଅଯାଇ ଶୁଖା ଯାଏ । ଏହି ତାର ପ୍ରକ୍ରିୟା ।"

ମର୍ଗାନ୍—"ଏଥିରୁ ବଳି ସହଜ ଉପାୟ ଅନ୍ୟ କଣ ଅଛି ?"

ବାର୍ବିକେନ୍—"ଏହି ପିରୋକ୍ସାଇଲ୍ ଥଣ୍ଡା ଲଗିଲେ ଶୀଘ୍ର ହୁଏ ନାହିଁ । ଆମ ତୋପରେ ବୋଝେଇ ହେବା ପାଇଁ ଏହା ଅତି ମୂଲ୍ୟବାନ ପଦାର୍ଥ । ଏହା ଚବିଶଗୁଣର ନିଆଁ ଧରେ ଏବଂ ଏହାର ଅଗ୍ନି ପ୍ରଦାହ ଏତେ ଶୀଘ୍ର ହୁଏ ଯେ, ଅନ୍ୟ ପ୍ରକାର ବାରୁଦରେ ନିଆଁ

ଧରିବା ପୂର୍ବରୁ ଏହାର ବିସ୍ଫୋରଣ ସରିଥାଏ । ମାତ୍ର ଏହାର ଦାମ୍ ବହୁତ ବେଶି ।"

ମାଷ୍ଟନ୍—"ହେଲେ କଣ ହେଲା ?"

ବାର୍ବିକେନ୍—"ସାଧାରଣ ବାରୁଦରେ ଯେତେ ବେଗ ଉତ୍ପନ୍ନ ହୁଏ ଏଥିରେ ତାର ଚାରିଗୁଣ ହୁଏ । ମୋ ମତ, ଯଦି ଏହାର ଓଜନର ଦଶ ଭାଗରୁ ଆଠଭାଗ ଡାଠକ୍ଷାର (Potass) ଏଥିରେ ଭର୍ତ୍ତି କରାଯିବ, ତାହେଲେ ଏହାର ପ୍ରସାରଣୀ ଶକ୍ତି ଅତ୍ୟନ୍ତ ଅଧିକ ବୃଦ୍ଧି ପାଇବ ।"

ମେଜର—"ସେଇଟା କ'ଣ ନିହାତ ଦରକାର ?"

ବାର୍ବିକେନ—"ମୁଁ ସେପରି ମନେ କରୁନାହିଁ । ବର୍ତ୍ତମାନ ଷୋଳ ଲକ୍ଷ ପାଉଣ୍ଡ ବାରୁଦ ଜାଗାରେ ଆମେ ଚାରିଲକ୍ଷ ପାଉଣ୍ଡ ମାତ୍ର ଭୀଷଣ ଶକ୍ତିକାରୀ ବାରୁଦ ତୁଳା (ପିଚେଶ କାଇଲ୍) ପାଇଲେଇଁ । ଏହାକୁ ଆମେ ଚାପା ଦେଇ ରଖିଲେ ପାଞ୍ଚଶହ ପାଉଣ୍ଡ ତୁଳା ସତେଇଶ ଘ: ଫୁ: ସ୍ଥାନ ଭିତରେ ରହିପାରିବ । ଏହି ହିସାବରେ ସମୁଦାୟ ତୁଳା ଆମ ତୋପର ୧୮୦ ଫୁଟ ଜାଗା ଦଖଲ କରିବ । ତେଣୁ ଚନ୍ଦ୍ରଲୋକକୁ ଯାତ୍ରାଯାଣ କରିବାକୁ ଆରମ୍ଭ କରିବା ପୂର୍ବରୁ ଗୋଲା ତୋପ ଗର୍ଭଭିତରେ ୧୮୦ ଫୁଟ ଗତିକରି ଛଅଶହ କୋଟି ଲିଟର ଗ୍ୟାସ (ବାଷ୍ପ) ବଳରେ ଅଗ୍ରସର ହେବ ।

ଏକଥା ଶୁଣି ସେକ୍ରେଟେରୀ ମାଷ୍ଟନ ଉତ୍ସାହରେ ଅସ୍ଥିର ହୋଇ ଦଶହାତ ଉଚ୍ଚକୁ ଡେଇଁ ପଡ଼ିଲେ । ଏ ନିଷ୍ପତ୍ତିରେ ଅନ୍ୟ ମେମ୍ବରମାନେ ମଧ୍ୟ ବେଶ୍ ଆନନ୍ଦିତ ହେଲେ । ଏମାନଙ୍କ ପକ୍ଷରେ ଅଜ

କିଛି ଅସମ୍ଭବ ହୋଇ ରହିଲା ନାହିଁ । ଏମାନେ ଏହି ଉନ୍ନବନ ଅଧି-ବେଶନରେ ତୋପ, ଗୋଳା ଓ ବାରୁଦ ପରି ଉନୋଟି ଅତି ଜଟିଳ ସମସ୍ୟାର ମୀମାଂସା ଅତି ସହଜରେ କରି ପାରିଥିବାରୁ ମୁଣ୍ଡ ଉପରୁ ଗୋଟାଏ ବଡ଼ ବୋଝ ଖସିପଡ଼ିଲା । ଯୋଜନା (ପ୍ଲାନ) ଠିକ୍ ହୋଇଗଲା । ଏଣିକି କେବଳ ଏହାର କାର୍ଯ୍ୟ ବାକୀ ରହିଲା ।

---

—ସାତ—

## ବାବକେନଙ୍କର ପ୍ରଧାନ ଶତ୍ରୁ

ଗନ୍‌କ୍ଲବ ବିଷୟରେ ସାମାନ୍ୟ ଟିକିଏ ଖବର ବାହାରୁଥିଲେ ଆମେରିକା ଲୋକେ ତାହା ବଡ଼ ଉତ୍ସାହ ଓ ଆଗ୍ରହରେ ଗ୍ରହଣ କରୁଥିଲେ । ତେଣୁ କ୍ଲବର କମିଟି ରିପୋର୍ଟ ଯାହା ଦୈନିକ ବାହାରୁ-ଥିଲା, ତାକୁ ସେମାନେ ଅଧିକ ଆଗ୍ରହରେ ପଢ଼ୁଥିଲେ । ସେ ଖବର ବାହାରିବାକୁ ଲୋକେ ଚାହିଁ ରହୁଥିଲେ ଏବଂ ବାହାରି ପଡ଼ିଲେ ଦେଶ ସାରା ଗୋଟାଏ ଅସାଧାରଣ ଉନ୍ମାଦନା ଖେଳି ଯାଉଥିଲା ।

କାର୍ଯ୍ୟ ଆରମ୍ଭ କରି ତାକୁ ଶେଷ କରିବାକୁ ବର୍ଷେ ସମୟ ଲାଗିଯିବ । ତଥାପି ଏ ମଧ୍ୟରେ ଯେତେ ଯେତେ କାର୍ଯ୍ୟ ଲାଗିବ, ତାହା ଲୋକଙ୍କ ଉତ୍ସାହ ବୃଦ୍ଧି ପାଇଁ ସମଧିକ ଆହାର ଯୋଗାଇବ । କେଉଁଠାରେ କୂଅ ଖୋଳାହେବ, ଲୁହା ତରଳ ହୋଇ ସେହି କୂଅରେ ଢଳାହୋଇ ତୋପ ତିଆରି ହେବ । ତା ଭିତରେ ଗୋଳା ଓ ବାରୁଦ ଅସୀମ ବିପଦରାଶି ମଧ୍ୟରେ ଭରାହୋଇ ହେବ । ଏସବୁ କମ କୌତୂହଳର ବିଷୟ ହେବନାହିଁ । ତୋପରୁ ଦଗା ହେଲା ମାତ୍ରକେ

ଗୋଲ ମୁହୂର୍ତ୍ତ ଭିତରେ ଅଦୃଶ୍ୟ ହୋଇଯିବ । ତାପରେ ଏହାର କି ଅବସ୍ଥା ହେବ, ଶୂନ୍ୟରେ ଏହା କି କାଣ୍ଡ କରିବ, ଚନ୍ଦ୍ରଲୋକରେ କିପରି ପହଞ୍ଚିବ, ଏସବୁ କଥା କେତେକ କ୍ଷମତାଶାଳୀ ଲୋକଙ୍କ ଛଡ଼ା ଆଉ କେହି ଦେଖିପାରିବେ ନାହିଁ । ଏସବୁ ବିଷୟରେ ସାଧାରଣର ଆଗ୍ରହ ବହୁ ଗୁଣରେ ବୃଦ୍ଧି ପାଇଲା ।

ଏପରି ସମୟରେ ଗୋଟାଏ ଅଲକ୍ଷିତ ଘଟଣା ଘଟି ଏହି ବୈଜ୍ଞାନିକ ଚିନ୍ତାଧାରାକୁ ଅଦ୍ଭୁତ ଅଧିକ ଉଚ୍ଚକୁ ଉଠାଇ ନେଲା । ବାର୍ବିକେନଙ୍କ ଅସୀମ ଚିନ୍ତାଧାରାର ପୋଷକ ରୂପେ ସମଗ୍ର ଆମେରିକାରେ ତାଙ୍କର ପଚାଶ ଲକ୍ଷରୁ ଅଧିକ ସପକ୍ଷବାଦୀ ବାହାରିଥିଲେ । ମାତ୍ର ଜଣେ ଶକ୍ତିଶାଳୀ ଲୋକ ତାଙ୍କ ବିପକ୍ଷରେ ବରାବର ଠିଆ ହୋଇଥିଲେ । ସେ ବାର୍ବିକେନଙ୍କର ଭୀଷଣ ପ୍ରତିଦ୍ୱନ୍ଦୀ ଥିଲେ ଏବଂ ନାନା ଘଟଣାରେ ତାଙ୍କୁ ଭୟାନକ ରୂପେ ଆକ୍ରମଣ କରୁଥିଲେ । ତେଣୁ ବାର୍ବିକେନ ସମଗ୍ର ଆମେରିକାର ସପକ୍ଷବାଦୀ ଲୋକଙ୍କ ମତକୁ ଯେତିକି ଆଗ୍ରହ କରୁଥିଲେ, ତା ତୁଳନାରେ ଏହି ପ୍ରତିଦ୍ୱନ୍ଦୀଙ୍କ ମତକୁ ଅଧିକ ଆସ୍ଥା ଦେଉଥିଲେ । ଏହି ପ୍ରତିଦ୍ୱନ୍ଦିତା ବା ବିଦ୍ୱେଷର ମୌଳିକ ହେତୁ କ'ଣ ତାହା ସେ ବେଶ୍ ବୁଝି ପାରିଥିଲେ । ଏ ବିଦ୍ୱେଷ କେଉଁଠାରୁ ଉତ୍ପନ୍ନ, ନିତାନ୍ତ ପୁରୁଣା ଧରଣର ଏକାନ୍ତ ଇତର ବ୍ୟକ୍ତିଗତ ଶତ୍ରୁତା କାହିଁକି ଜାତ ହୋଇଥିଲା ଏବଂ ଏ ବିବାଦର ମୂଳ କେଉଁଠାରେ, ତାହା ତାଙ୍କୁ ଅବିଦିତ ନ ଥିଲା । ଏ ସମସ୍ତ ସତ୍ତ୍ୱେ ପ୍ରତିଦ୍ୱନ୍ଦୀ ସଙ୍ଗେ ତାଙ୍କର କେବେହେଲେ ପ୍ରତ୍ୟକ୍ଷ ସାକ୍ଷାତ ହୋଇ ନଥିଲା । ତାହା ହୋଇଥିଲେ କି ଶୋଚନୀୟ କାଣ୍ଡ ସେ ଘଟି ଯାଇଥାନ୍ତା, ତାର ଠିକଣା ନାହିଁ । ବାର୍ବିକେନଙ୍କ ପରି ସେ ମଧ୍ୟ ଜଣେ ବିଶିଷ୍ଟ ବୈଜ୍ଞାନିକ ପଣ୍ଡିତ, ଖୁବ୍ ସାହସୀ ଏବଂ ଖୁବ୍ ଦୃଢ଼-

ମତବାଦୀ । ତାଙ୍କ ନାମ କାପ୍‌ଟେନ୍ ନିକୋଲ୍ । ତାଙ୍କ ଘର ଫିଲ୍‌ଡେଲ୍‌ଫିଆରେ ।

ଯୁଦ୍ଧକାଳ ଭିତରେ ଉଭୟଙ୍କ ମଧ୍ୟରେ ଯେପରି ଅସୀମ ପ୍ରତିଯୋଗିତା ଲାଗିଥିଲା ତାହା ବର୍ଣନାତୀତ । ନାନା କୌଶଳରେ ତୋପ ଓ ଗୋଲା ତିଆରିରେ ବାର୍ବିକେନ ଯେପରି ଧୂରନ୍ଧର, ତାକୁ ଅକାମୀ କରିଦେବା ପାଇଁ ନାନା କୌଶଳ ଆବିଷ୍କାର କରିବା ବିଷୟରେ କାପ୍‌ଟେନ୍ ନିକୋଲ ମଧ୍ୟ ସେହିପରି ଧୂରନ୍ଧର । ବାର୍ବିକେନ୍ ବାଲ୍‌ଟିମୋରରେ ଗୋଟାଏ ନୂଆପ୍ରକାର ତୋପ ବା ଗୋଲା ଆବିଷ୍କାର କରିବା ସଙ୍ଗେ ସଙ୍ଗେ ନିକୋଲ୍ ଫିଲ୍‌ଡେଲ୍‌ଫିଆରେ ସେ ଖବର ପାଇ ତାକୁ ଅକାମୀ କରିଦେବା କୌଶଳ ଉଦ୍‌ଭାବନ କରି ଦେଉଥିଲେ । ଗୋଟାଏ ଗୋଲା ନୂଆ ବାହାରିବା ମାତ୍ରକେ ସଙ୍ଗେ ସଙ୍ଗେ ସେ ଜଳଯାନ ଲାଗି ଗୋଟାଏ ଧାତୁଫର୍ଦ୍ଦ ତିଆରି କରି ଦେଉଥିଲେ ଯହିଁରେ ଗୋଲା ବାଜି ଅକାମୀ ହୋଇଯାଉଥିଲା । କେବେ କେବେ ମଧ୍ୟ ସେ ଧାତୁ ଫର୍ଦ୍ଦକୁ ଫୁଟାଇ ଗୋଲା ବାହାରି ଯାଉଥିଲା । ଏପରି ଭାବରେ ଉଭୟଙ୍କ ପ୍ରତିଦ୍ୱନ୍ଦ୍ୱିତା ଏତେ ଭୀଷଣ ଭାବରେ ବଢ଼ିଲା ଯେ, ତାହା କ୍ରମେ ବିଜ୍ଞାନରୁ ଆସି ବ୍ୟକ୍ତିଗତରେ ପରିଣତ ହେଲା । ଉଭୟେ ଉଭୟଙ୍କ ଭୟ, ଘୃଣା ଉପହାସ ଓ ବିଦ୍ରୂପ କରିବାକୁ ଲାଗିଲେ ।

ଉଭୟେ ପରସ୍ପରକୁ ସାକ୍ଷାତ କରିଥିଲେ ଅବସ୍ଥାଟା କି ଆକାର ଧାରଣ କରିଥାନ୍ତା କୁହାଯାଇ ପାରୁନାହିଁ । ତଥାପି ତାହା ଯେ ଗୋଟାଏ ଦ୍ୱନ୍ଦ୍ୱ ଯୁଦ୍ଧରେ ପରିଣତ ହୋଇଥାନ୍ତା, ଏଥିରେ ସନ୍ଦେହ ନାହିଁ । ଏହି ଦୁଇ ମହତ୍ ବ୍ୟକ୍ତିଙ୍କ ଜୀବନ ରକ୍ଷା ହେବା ଦେଶ-ପକ୍ଷରେ ଏକାନ୍ତ ମଙ୍ଗଳକର ବୋଲି ମନେକରି ସେ ଦୁହିଙ୍କ

ବନ୍ଧୁମାନେ ଉଭୟଙ୍କୁ ଫାଟିଏ ମାଇଲ ତଫାତରେ ରଖୁଥିଲେ ଏବଂ କୌଣସି କାରଣରୁ ସାକ୍ଷାତ କରାଇ ଦେଉ ନଥିଲେ ।

ଉଭୟଙ୍କର ପ୍ରତିଦ୍ୱନ୍ଦ୍ୱିତା ଅସାଧାରଣରୂପେ ବୃଦ୍ଧିପାଇ ଯେତେବେଳେ ଚରମ ସୀମାରେ ଆସି ଉପନୀତ ହେଲା ଏବଂ ନିକୋଲଙ୍କ ଅଲୌକିକ ଗବେଷଣା ବଳରେ ଆବିଷ୍କୃତ ହୋଇଥିବା 'ସାଞ୍ଜୁଫଳକ' ବାର୍ବିକେନ୍‌ଙ୍କ ନିକୋଣାକୃତ ଗୋଲା ଆଘାତରେ ଭାଙ୍ଗିପଡ଼ିଲା, ନିକୋଲଙ୍କ ପରାଜୟ ତହିଁରେ ଅସାଧାରଣରୂପେ ବଢ଼ିଗଲା । ଏହାଦ୍ୱାରା ଲୋକସମାଜରେ ତାଙ୍କର ଖାତିର କମିଗଲା । ମାତ୍ର ସେ ପରାଜୟ ସ୍ୱୀକାର କରି ଦବିଯିବାର ଲୋକ ନୁହନ୍ତି । ସେ ଅତୁଳ ଅଧିକ ବୈଜ୍ଞାନିକ କୌଶଳରେ ଗୋଟାଏ ଅତି ଶକ୍ତ ସାଞ୍ଜୁଫଳକ ତିଆର କଲେ । ଏହା ଗୋଟାଏ ଅତି ଚମତ୍କାର ଜିନିଷ । ବାର୍ବିକେନ୍‌ଙ୍କର କଣ, ପୃଥିବୀର ଯେ କୌଣସି ଗୋଲା ଏହାଦ୍ୱାରା ପ୍ରତିହତ ହୋଇପାରିବ । ସେ ତାକୁ ୱାଶିଂଟନ୍‌କୁ ନେଇ ତାହା ଫୁଟାଇବାକୁ ବାର୍ବିକେନ୍‌ଙ୍କୁ ଆହ୍ୱାନ କଲେ । ମାତ୍ର ଯୁଦ୍ଧ ଶେଷ ହୋଇ ଯାଇଥିବାରୁ ବାର୍ବିକେନ୍ ଏଥିରେ କର୍ଣ୍ଣପାତ କଲେନାହିଁ ।

ଏଥିରେ ନିକୋଲଙ୍କ କ୍ରୋଧର ସୀମା ରହିଲା ନାହିଁ । ସେ ନାନାଭାବରେ ବାର୍ବିକେନ୍‌ଙ୍କୁ ଆହ୍ୱାନ କଲେ । ମାତ୍ର ସଭାପତି କୌଣସି ପ୍ରସ୍ତାବରେ ରାଜି ହେଲେ ନାହିଁ । ତାପରେ ଯେତେବେଳେ ବାର୍ବିକେନ ଚନ୍ଦ୍ରଲୋକ ବିଷୟରେ ତାଙ୍କ ଐତିହାସିକ ଭାଷଣ ତା୫ରଖରେ ଦେଲେ ଏବଂ ତୋପ, ଗୋଲା ଓ ବାରୁଦ ବିଷୟରେ କମିଟିର ରିପୋର୍ଟମାନ ପରେ ପରେ ବାହାରିଲା, ନିକୋଲ

ତାହା ପ୍ରତି ଈର୍ଷାରେ ଜଳିଗଲେ । ଏ ପ୍ରସ୍ତାବକୁ ପ୍ରତିରୋଧ କରିବାର କୌଶଳ ସେ ଆଉ ପାଇଲେ ନାହିଁ । ନଅଶହ ଫୁଟ ଲମ୍ବରୁ ଅଧିକ ତୋପ ଆଉ ସେ କିଏଣ କରି ପାରିବେ ? ଅଥବା ତିନିଶ ହଜାର ପାଉଣ୍ଡର ଗୋଲକୁ ପ୍ରତିରୋଧ କରିବାକୁ କେଉଁଠେ ସାଞ୍ଜୁ ଫଳକ ସେ ତିଆରି କରି ପାରିବେ ? ଏଥିରେ ସେ ନିଜକୁ ପରାସ୍ତ ମନେ କରି ବହୁତ ଦବିଗଲେ ଏବଂ ପରେ ପୁଣି ଉତ୍ସାହରେ ମାତିଉଠି ଏପରି ବିରାଟ କଳ୍ପନାକୁ ସ୍ୱୀୟ ଯୁକ୍ତି ବଳରେ ପଣ୍ଡ କରିବାକୁ ବସିଲେ ।

ସେ ଖବର କାଗଜ ମାନଙ୍କରେ ପ୍ରଚାର କଲେ ଯେ ଗୋଟାଏ କୌଣସି ପଦାର୍ଥକୁ ସେକେଣ୍ଡକେ ବାରହଜାର ଗଜର ବେଗ ଦିଆ ଯାଇ ପାରେନା । ଯଦି ବା ଦିଆଯାଏ, ତେବେ ତାହା ବାୟୁମଣ୍ଡଳର ସୀମା ଟପି ଯାଇ ପାରିବ ନାହିଁ । ଏହାର ଗତି କେବେହେଁ ଚବିଶ ମାଇଲରୁ ଅଧିକ ହୋଇ ପାରିବ ନାହିଁ । ବେଗ ହେଲେ ମଧ୍ୟ, ଓ ତାହା ଯଥେଷ୍ଟ ବୋଲି ବିବେଚିତ ହେଲେ ମଧ୍ୟ, ଷୋଳ ଲକ୍ଷ ପାଉଣ୍ଡ ବାରୁଦରୁ ଜାତ ହୋଇଥିବା ବାଷ୍ପର ଚାପ ଗୋଲା କଦାପି ସମ୍ଭାଳି ପାରିବ ନାହିଁ । ସେ ଚାପକୁ ସମ୍ଭାଳିଲେ ମଧ୍ୟ ଏତେ ବଡ଼ ଗତି ତା ପକ୍ଷରେ ଅସହ୍ୟ ହେବ ଏବଂ ତୋପରୁ ବାହାରୁ ବାହାରୁ ତାହା ତରଳି ଯିବ । ସେହି ଗଳିତ ଧାତୁ ସମଗ୍ର ଦର୍ଶକ ମଣ୍ଡଳୀର ମୁଣ୍ଡ ଉପରେ ବର୍ଷା ହୋଇଯିବ ।

ବାର୍ବିକେନ ଏ ସବୁ ଯୁକ୍ତିରେ ଆଦୌ କର୍ଣ୍ଣପାତ କଲେ ନାହିଁ । ସେ ନିଜ କାର୍ଯ୍ୟରେ ନିବିଷ୍ଟ ଚିତ୍ତରେ ଲାଗିରହିଲେ । ଏଥିରେ କୌଣସି ଫଳ ନ ହେବାରୁ ନିକୋଲ ଅନ୍ୟ ବାଟରେ ଆକ୍ରମଣ କଲେ । ସେ ପ୍ରଚାର କଲେ, ଏପରି ଗୋଟାଏ ବିଟାଳ ପରୀକ୍ଷା ପାଇଁ ଅନୁମତି ଦେବା ନିତାନ୍ତ ବିପଜ୍ଜନକ । ତାହେଲେ ପରୀକ୍ଷା କେନ୍ଦ୍ରର

ନିକଟବର୍ତ୍ତୀ ଗ୍ରାମ, ନଗର ସବୁ ଧ୍ୱଂସ ହୋଇଯିବ । ଗୋଲା ଯେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବ ନାହିଁ, ଏ କଥା ସୁନିଶ୍ଚିତ । ତା ନ ହେଲେ ତାହା ଫେରିଆସି ପୃଥିବୀ ଉପରେ ପଡ଼ିଯିବ । ଏତେ ବଡ଼ ବିଶାଳ ଗୋଲା ମାଧ୍ୟାକର୍ଷଣର ଅସୀମ ପ୍ରଭାବ ବଳରେ ଯେତେବେଳେ ପଡ଼ିବ, ତାହା ନିଶ୍ଚୟ ପୃଥିବୀର ଗୋଟାଏ ଅଂଶ ନଷ୍ଟ କରିଦେବ । ସୁତରାଂ ସ୍ୱାଧୀନ ଲୋକଙ୍କ ଜୀବନ ରକ୍ଷାପାଇଁ ସରକାର ଏପରି ଗୋଟାଏ ପରୀକ୍ଷା ବନ୍ଦ କରିଦେବା ଦରକାର । ଜଣେ ଲୋକର ଗୋଟାଏ ଖିଆଲ ରକ୍ଷାପାଇଁ ଏତେ ଲୋକଙ୍କ ଜୀବନ ନଷ୍ଟ କରିବା ଉଚିତ ନୁହେଁ ।

ନିକୋଲଙ୍କ ଏହି ହେତୁବାଦ କେହି କାନରେ ପୂରାଇଲେ ନାହିଁ । ସେ ଗୁଡ଼ାଏ ଗଳା ଗର୍ଜନ କରି ଖାଲି ଘଣ୍ଟିକା ଝଣ୍ଟିଆ କଲେ ସିନା, ତାଙ୍କ କଥାର କୌଣସି ମୂଲ୍ୟ ରହିଲା ନାହିଁ । ଏଥିରେ ପରାସ୍ତ ହୋଇ ସେ ତଳଲିଖିତ ବାଜି ସବୁ ପକାଇଲେ ଏବଂ ତା ପାଇଁ ଅନେକ ଟଙ୍କା ପଣ କଲେ ।

୧ । ଗନ୍‌କ୍ଲବର ଏ ପ୍ରସ୍ତାବ ପାଇଁ ଯେତେ ଟଙ୍କା ଦରକାର ତାହା ଆଦୌ ମିଳି ପାରିବ ନାହିଁ । ଏଥିପାଇଁ ବାଜି ଟ୩୦୦୦ ।

୨ । ୯୦୦ ଫୁଟର ଗୋଟାଏ ତୋପ ଅଜଡ଼ା ହୋଇ ପାରିବ ନାହିଁ । ଏଥିରେ ବିଫଳ ହେବା ନିଶ୍ଚିତ । ଏଥିପାଇଁ ବାଜି ଟ୨୦୦୦ ।

୩ । ତୋପ ବୋଝେଇ ହେବା ଅସମ୍ଭବ । ପିରୋକ୍ଜାଇଲ (ତୁଳାବାରୁଦ) ଗୋଲାର ସ୍ପର୍ଶ ପାଇଲା ମାତ୍ରକେ ମନକୁ ନିଆଁ ହୋଇଯିବ । ଏଥିପାଇଁ ବାଜି ଟ୯୦୦୦ ।

୪ । କାଁ ହେଲା ମାତ୍ରେ ତୋପ ଫାଟିଯିବ । ବାଜି ଟ୧୨୦୦୦୯ ।

୫ । ଏ ଗୋଲା ଛଅ ମାଇଲ୍ ସୁଦ୍ଧା ଯାଇ ପାରିବ ନାହିଁ । ଦଗା ହେବାର କେତେ ସେକେଣ୍ଡ ପରେ ଖସି ପଡ଼ିବ । ବାଜି ଟ୧୫୦୦୦୯ ।

କ୍ୟାପଟେନ ନିକୋଲ୍ ନିଜ ଜିଦ୍ ରକ୍ଷା ପାଇଁ ଏପରି ଗୋଟାଏ ବାଜି କରି ବସିଲେ, ଯାହାର ମୋଟ ପରିମାଣ ଟ୪୫୦୦୦୯ । ଯାହାହେଉ ଏ ବାଜି ପରେ ପରେ ଅକ୍ଟୋବର ତା ୧୯ରିଖ ଦିନ ସେ ଗୋଟାଏ ବନ୍ଦ ପୁଳିନ୍ଦା ପାଇଲେ, ଯାହା ଭିତରେ ଖୁବ୍ କମ ଅକ୍ଷରରେ ଲେଖାଥିଲା — "ବାଲ୍‌ଟିମୋର
ଅକ୍ଟୋବର ତା ୧୮ରିଖ ।
ଗୃହୀତ ହେଲା ।
"ବାର୍ବିକେନ୍"

---

—ଅଠ—

## ଫ୍ଲୋରିଡା ଓ ଟେକ୍ସାସ ମଧ୍ୟରେ ବିରୋଧ

ଏ ବିଶାଳ ପରୀକ୍ଷା ପାଇଁ କେଉଁ ସ୍ଥାନ ଉପଯୁକ୍ତ ହେବ, ତାହା ଏ ପର୍ଯ୍ୟନ୍ତ ନିଷ୍ପତ୍ତି ହୋଇ ନ ଥିଲା । କେମ୍ବ୍ରିଜ ମାନମନ୍ଦିରର ନିଷ୍ପତ୍ତି ଅନୁସାରେ ଆକାଶର ଜେନିଥ୍ ବା ଶୀର୍ଷସ୍ଥାନକୁ ମୁହଁ କରି ତୋପ ଛୁଟିବା ହେବ । ସେ ଶୀର୍ଷସ୍ଥାନ ୦ ଓ ୨୮ ଡିଗ୍ରୀ ମଧ୍ୟରେ ମିଳିବ । ତା ହେଲେ ପୃଥିବୀର କେଉଁ ଅଞ୍ଚଳରେ ଏ ସ୍ଥାନ ମିଳିବ, ତାହା ସ୍ଥିର ହେବା ଦରକାର । ଏଥିପାଇଁ ଅକ୍ଟୋବର ତା ୨୦ରିଖ ଦିନ ଗନ୍

କ୍ଲବର ସାଧାରଣ ଅଧିବେଶନ ହୋଇ ଏ ବିଷୟରେ ଆଲୋଚନା ହେଲା । ଆମେରିକା ଲୋକେ ଏତେ ବଡ଼ ଆୟୋଜନ କରିବେ, ଅଥଚ ତାର ପରୀକ୍ଷା ଅନ୍ୟ ଦେଶରେ ଯାଇ ହେବ, ଏକଥା ସେମାନେ ବରଦାସ୍ତ କରିବା ଅସମ୍ଭବ । ଏଣୁ ଦେଶପ୍ରୀତିରେ ଗ୍ରୁଳିତ ହୋଇ ସେମାନେ ଏ ବିଶାଳ ସମସ୍ୟାକୁ ଆମେରିକାର କୌଣସିଠାରେ ପରୀକ୍ଷା କରିବାକୁ କୃତସଂକଳ୍ପ ହେଲେ । ମାତ୍ର ସ୍ଥାନ ସମ୍ବନ୍ଧରେ ସେମାନେ କୌଣସି ନିଷ୍ପତ୍ତି କରି ପାରିଲେ ନାହିଁ । ସଭାପତି ବାର୍ବିକେନ ସମସ୍ତଙ୍କ ମତ ନିରପେକ୍ଷ ଭାବରେ ଶୁଣି ଶେଷରେ ମତ ଦେଲେ ଯେ,୦ ଓ ୨୮ ଡିଗ୍ରୀମଧ୍ୟରେ ମୂଳ ଆମେରିକା ପଡ଼ୁ ନ ଥିଲେ ମଧ୍ୟ ଟେକ୍‌ସା ଓ ଫ୍ଲୋରିଡ଼ା ପଡ଼ୁଛି । ଏ ଦୁଇଟି ଦ୍ୱୀପ ଆମେରିକାର ଅନ୍ତର୍ଗତ । ତେଣୁ ଏ ବିଷୟରେ ଆଉ ମତାନ୍ତର ନାହିଁ ।

ଏହା ଶୁଣି ମେମ୍ବରମାନେ ଖୁସି ହୋଇଗଲେ । ଆମେରିକାର ଯେ କୌଣସି ଅଞ୍ଚଳରେ ହେଲେ ସେମାନଙ୍କର ଆପତ୍ତି ନ ଥିଲା । ମାତ୍ର ଟେକ୍‌ସା ବା ଫ୍ଲୋରିଡା କେଉଁଠାରେ ଏଥିପାଇଁ ସ୍ଥାନ ନିରୂପଣ କରାଯିବ, ଏହା ନିଷ୍ପତ୍ତି ହୋଇ ପାରିଲା ନାହିଁ । ଏ ଖବର ସାଙ୍ଗେ ସାଙ୍ଗେ ଉଭୟ ଦ୍ୱୀପରେ ପ୍ରଚାରିତ ହୋଇଗଲା । ଉଭୟ ସ୍ଥାନର ପ୍ରତିନିଧି ଦଳ ଗନ୍ କ୍ଲବକୁ ଆସି ନିଜ ନିଜ ଦ୍ୱୀପରେ ଏ ବିଶାଳ ପରୀକ୍ଷା ପାଇଁ ସ୍ଥାନ କରାଯାଉ ବୋଲି ଦାବି କଲେ । ଏଥିପାଇଁ କେତେକେତେ ନାନା ଯୁକ୍ତିତର୍କ, ନାନା ଆନ୍ଦୋଳନ, ନାନା ପ୍ରଚାର ଗ୍ରୁଲିଲା । ଉଭୟ ପକ୍ଷ ଏପରି ପ୍ରଚାର କଲେ ଯେ, ତାହା କ୍ରମେ ବାଦ ବିସମ୍ବାଦ, ଉଛିବାଚ ଓ ରାଗାରାଗିରେ ପରିଣତ ହେଲା । ଆମେରିକାର ବିଖ୍ୟାତ ଖବର କାଗଜମାନେ ଦୁଇଦଳ ହୋଇ ଏକ

ଏକ ପକ୍ଷର ସୁପାରଶ କଲେ ଓ ଅପର ପକ୍ଷର ଦାବୀକୁ କାଟିଦେବା ଲାଗିଲେ । ଏହା ଶେଷରେ ଏପରି ଅବସ୍ଥାକୁ ଆସିଲା ଯେ ଟେକ୍ସାସ ଓ ଫ୍ଲୋରିଡା ଭିତରେ ଲଢ଼େଇ ଲାଗିଯିବ ବୋଲି ଆଶଙ୍କା ହେଲା । ଏ ସମୟରେ ସଭାପତି ଫ୍ଲୋରିଡା ସପକ୍ଷରେ ନିଷ୍ପତ୍ତି କରିବାକୁ ତାହା ପୂର୍ବଅଢ଼େ ପ୍ରସ୍ତୁତ ହୋଇଗଲା । ତେଣୁ ସବୁ ଗଣ୍ଡଗୋଳ ଦବିଗଲା । ସେ ମତ ଦେଲେ, "ଟେକ୍ସାସରେ ସହର ସଂଖ୍ୟା ବେଶି । ସେଠାରେ ପରୀକ୍ଷା ହେଲେ ସହରମାନଙ୍କ ଭିତରେ ପ୍ରତିଯୋଗିତା ନେଇ ଗଣ୍ଡଗୋଳ ଘଟିବ ଏବଂ ଆମ ଉଦ୍ୟମରେ ବ୍ୟାଘାତ ହେବ । ଫ୍ଲୋରିଡ଼ାରେ ଗୋଟିଏ ମାତ୍ର ସହର ଟାଂପା । ସେଠାରେ ପ୍ରତି-ଯୋଗିତାର କ୍ଷେତ୍ର ନାହିଁ । ତେଣୁ ଏ ପରୀକ୍ଷା କାର୍ଯ୍ୟ ସେଠାରେ ନିର୍ବିଘ୍ନରେ ଚାଲି ପାରିବ । ଏଣୁ ମୁଁ ଟାଂପା ସପକ୍ଷରେ ନିଷ୍ପତ୍ତି କରୁଛି ।"

ଏ ଘୋଷଣା ପରେ ଗଣ୍ଡଗୋଳ ଦବିଗଲା । ଫ୍ଲୋରିଡା ଲୋକଙ୍କ ଉଲ୍ଲାସର ସୀମା ରହିଲା ନାହିଁ । ମାତ୍ର ଟେକ୍ସାସବାଲା ନିରାଶ ହୃଦୟରେ ଫେରିଗଲେ ।

---

—ନଅ—

## ସାରା ଜଗତର ସହାନୁଭୂତି ଓ ଫ୍ଲୋରିଡ଼ା ଯାତ୍ରା

ଜ୍ୟୋତିଷିକ, ଯାନ୍ତ୍ରିକ ଓ ସ୍ଥାନ ନିର୍ଦ୍ଧେଶ ସମସ୍ୟାମାନ ଏହିପରି ଭାବରେ ନିଷ୍ପତ୍ତି ହୋଇଗଲା । ଏଣିକି ପଡ଼ିଲା ଅର୍ଥ ଚିନ୍ତା । ଏପରି ଗୋଟାଏ ବିରାଟ ଲକ୍ଷ୍ୟସାଧନ ପାଇଁ ପର୍ବତ ପ୍ରମାଣ ଅର୍ଥ

ଆବଶ୍ୟକ । ତାହା କୌଣସି ବ୍ୟକ୍ତି ବିଶେଷ, ଏପରି କି କୌଣସି ଦେଶ ବିଶେଷ ମଧ୍ୟ ତୁଲେଇ ପାରିବା କଠିନ । ସଭାପତି ବାର୍ବ-କେନ୍ଙ୍କ ମୁଣ୍ଡ ଏଥିପାଇଁ ଘୂରିଲା । ସେ ସ୍ଥିର କଲେ ଯେ, ଏ କାର୍ଯ୍ୟ ଆମେରିକା ଲୋକଙ୍କ ଯତ୍ନରେ ଆରମ୍ଭ ହେଉଥିଲେ ମଧ୍ୟ ଏହା ତାରି ନିଜସ୍ୱ ହୋଇ ନପାରେ । ଏଥିରେ ସାରା ପୃଥିବୀର ସ୍ୱାର୍ଥ ନିହିତ ଅଛି । କାରଣ ଚନ୍ଦ୍ରଲୋକର ଗୁପ୍ତ ଆବରଣ ଭେଦ କରିବା ନିଖିଳ ପୃଥିବୀର କାର୍ଯ୍ୟ । ତେଣୁ ସମସ୍ତେ ଏଥିପାଇଁ ଏକ ମନରେ ଲାଗିପଡ଼ି ଅର୍ଥ ଯୋଗାଇବା ଆବଶ୍ୟକ । ଏହି ଉଦ୍ଦେଶ୍ୟରେ ସେ ପୃଥିବୀର ସମସ୍ତ ଦେଶକୁ ନିବେଦନାକଲେ । ଏ ଟଙ୍କା ଧାର ବା ଭରିକି ସୁଧରେ ଉଠିପିବ ନାହିଁ । ଦାନ କରିବାକୁ ହେବ । କାରଣ ଏଥିରେ କାହାରି ବ୍ୟକ୍ତିଗତ ସ୍ୱାର୍ଥନାହିଁ କିମ୍ବା କେହି ଜଣେ ଏଥିରୁ ଲାଭ ଉଠାଇ ପାରିବ ନାହିଁ ।

ଏ ନିବେଦନ ଆମେରିକା ସୀମା ଅତିକ୍ରମ କରି ଆଟଲାଣ୍ଟିକ୍ ଓ ପ୍ରଶାନ୍ତ ମହାସାଗର ପାର ହୋଇଗଲେ ଏବଂ ଅନତିକାଳ ମଧ୍ୟରେ ପୃଥିବୀର ସବୁଆଡ଼େ ଚହଳ ପକାଇଦେଲା । ଇଉରୋପ, ଏସିଆ, ଆଫ୍ରିକା ଓ ଓସିଏନିଆର ସବୁଦେଶ ଏଥିପାଇଁ ଜାଗ୍ରତ ହୋଇ-ଉଠିଲେ । ସବୁ ଦେଶର ମାନମନ୍ଦିରମାନ ଏ ସମସ୍ୟାକୁ ବିସ୍ତର ଆଲୋଚନା କରି କେମ୍ବ୍ରିଜ ମାନମନ୍ଦିର ସଙ୍ଗେ ନିଜ ନିଜ ମତ ମିଳେଇଲେ ଏବଂ ଉଦ୍ଦେଶ୍ୟ ମହତ ଥିବାର ଅନୁଭବ କରି ଗନ୍‌କ୍ଲବକୁ ସେମାନଙ୍କ ଅଭିବାଦନ ଜଣାଇଲେ । ଏଥିପାଇଁ ପାରିଶ୍, ସେଣ୍ଟପିଟର୍ସବର୍ଗ, କେପ୍, ବର୍ଲିନ୍, ଅଲ୍‌ଟୋନା, ଷ୍ଟକ୍‌ହୋମ୍, ୱାରସା, ହାମ୍ବର୍ଗ, ବୁଦା, ବୋଲୋନା, ମାଲ୍‌ଟା, ଲିସବନ୍, ବନାରସ, ମାନ୍ଦ୍ରାଜ ଓ ପେକିନ୍ ବିଶେଷ ଆଗ୍ରହ ଦେଖାଇଲେ ।

ମାଦ ଗ୍ରୀନ୍‌ଭଇର୍ ଓ ତା ସଙ୍ଗେ ଗ୍ରେଟ୍‌ବ୍ରିଟେନ୍‌ର ଅଦ୍ଭୁତ ବାଇଶଟି ମାନମନ୍ଦିର ଏ ପ୍ରସ୍ତାବ ନିତାନ୍ତ ଅସମ୍ଭବ ବୋଲି ଘୋଷଣା କରି କାପ୍‌ଟେନ୍ ନିକୋଲ୍‌ଙ୍କ ମତ ସଙ୍ଗେ ଏକମତ ହେଲେ । ଅନ୍ୟଦେଶର ପ୍ରତିନିଧିମାନେ ଵାଂସାଵାଇନ୍‌କୁ ଯିବାକୁ ସ୍ଥିର କଲାବେଳେ ଗ୍ରୀନ୍‌ଭଇର୍ ଏ କଥାକୁ ଘୃଣାରେ ଉଡ଼ାଇଦେଲା । ଏହା ଇଂରେଜର ଜାତୀୟ ଈର୍ଷାଛଡ଼ା ଅଉ କଣ ହୋଇପାରେ ?

ବାର୍ବିକେନ୍‌ଙ୍କ ନିବେଦନ ସବୁ ଦେଶରେ ସବୁଭାଷାରେ ଅନୁବାଦିତ ହୋଇ ଏତେ ଶୀଘ୍ର ପ୍ରଚାରିତ ହୋଇଗଲା ଯେ ସାଧାରଣ-ଲୋକେ ସେ ଉତ୍ସାହରେ ମାତି ଉଠିଲେ । ଛୋଟଠାରୁ ବଡ଼ ପର୍ଯ୍ୟନ୍ତ ସବୁ ଲୋକେ ଖୋଲାହାତରେ ଏଥିପାଇଁ ଟଙ୍କା ଦେଲେ । ତାହା ସେହି ସେହି ଦେଶର ପ୍ରସିଦ୍ଧ ବ୍ୟାଙ୍କମାନଙ୍କରେ ଗନ୍ କ୍ଲବ ନାମରେ ଗଣି ଗଣି ଜମା ହୋଇଗଲା । ସବୁଠାରୁ ଯେଉଁ ସମ୍ବାଦମାନ ତାରରେ ଯାଇ ଗନ୍ କ୍ଲବରେ ପହଞ୍ଚିଲା, ସେଥିରୁ ଜଣାଗଲା, ସାତଦିନ ମଧ୍ୟରେ ବାରଲକ୍ଷ ଟଙ୍କା ଏଥିପାଇଁ ସଂଗୃହୀତ ହୋଇ-ଯାଇଛି । ତାପରେ ମଧ୍ୟ ତାରମାନ ଯାଇ ଅଦ୍ଭୁତ ଗଣି ଗଣି ଟଙ୍କା ଜମା ହେଉଛି ବୋଲି ଜଣାଇ ଦେଲା । ଏଥିରେ ଗନ୍ କ୍ଲବର ଉତ୍ସାହର ସୀମା ରହିଲାନାହିଁ ।

ସମଗ୍ର ଅମେରିକାରୁ ମଧ୍ୟ କମ ଟଙ୍କା ଚାନ୍ଦା ଉଠିଲା ନାହିଁ । ଲୋକଙ୍କ ଅସାଧାରଣ ଉତ୍ସାହର ଚିହ୍ନ ସ୍ୱରୂପ ଅମେରିକା ଏ ମହତ୍ କାର୍ଯ୍ୟପାଇଁ ଯାହା ଚାନ୍ଦା ଦେଲା, ତାର ସୀମା ଅନେକ ଉପରକୁ ଉଠିଗଲା । ଯେତେବେଳେ ବ୍ୟାଙ୍କ ନିର୍ଦ୍ଦିଷ୍ଟ ତାରିଖରେ ଚାନ୍ଦା-ଫର୍ଦ୍ଦକୁ ଗୋଟିଏ କରାଗଲା, ସେତେବେଳେ ଦେଖାଗଲା, ଅମେରିକାର

ସୁନ୍ଦା ଛଅ କୋଟି କୋଡ଼ିଏ ଲକ୍ଷ, ଅନ୍ୟାନ୍ୟ ଦେଶର ସୁନ୍ଦା ଛଅ-କୋଟି ତେୟାଳିଶ ଲକ୍ଷ, ଏପରି ମୋଟରେ ବାର କୋଟି ତେଷଠି ଲକ୍ଷ ଟଙ୍କା ଗନ୍ କ୍ଲବ୍ ହାତରେ ପଡ଼ିଲା ।

ଏତେ ବିପୁଳ ଅର୍ଥ ହାତକୁ ଆସିବାରୁ ଗନ୍ କ୍ଲବ୍‌ର ଉତ୍ସାହର ସୀମା ରହିଲନାହିଁ । ଅଜଡ଼ିବା, ରନ୍ଧ୍ର କରିବା, ରାଜମିସ୍ତ୍ରି କାମ, ଶ୍ରମିକ ମୁତୟନ, ଚୁଲି ଓ କାରଖାନା ନିର୍ମାଣ, ଯନ୍ତ୍ରପାତି, ବାରୁଦ, ଗୋଳ ପ୍ରଭୃତି ତିଆରି ଓ ଅନ୍ୟାନ୍ୟ ଆବଶ୍ୟକ କାର୍ଯ୍ୟରେ କେତେ ଯେ ଅର୍ଥ ବ୍ୟୟ ହେବ ତାର ସୀମା ନାହିଁ । ଏ ସମୁଦାୟ ଟଙ୍କା ଉହିଁରେ ଧୂଳିପରି ଉଡ଼ିଯିବ । ତେଣୁ ଏତେ ଟଙ୍କା ଦେଖି ବାର୍ବିକେନ୍ ବିସ୍ମିତ ବା ଉତ୍ସାହୀ ହେବାର ଦେଖାଗଲା ନାହିଁ । କେବଳ ସାରା ଜଗତର ସେ ଗୋଟାଏ ସହାନୁଭୂତି ପାଇଲେ, ଏହାହିଁ ତାଙ୍କର ବଡ଼ ଲାଭ ।

ସେ ସାଙ୍ଗେ ସାଙ୍ଗେ କାମରେ ଲାଗିଗଲେ । ଅକ୍ଟୋବର ତା ୨୦ ଦିନ ନିଉୟର୍କର ଗୋଲ୍ଡ଼ସ୍ପ୍ରିଂ ଫ୍ୟାକ୍‌ଟରି ସଙ୍ଗେ ତାଙ୍କର ଚୁକ୍ତିହେଲା ଯେ ତୋପ ଅଜଡ଼ିବାପାଇଁ ଯେତେ ଯେତେ ଉପକରଣ ଆବଶ୍ୟକ, ତାହା ସେ ଫ୍ଲୋରିଡ଼ାର ଟାଂପାଟାଉନ୍ ପାଖେ ଯୋଗାଇବେ । ଆଗାମୀ ବର୍ଷର ଅକ୍ଟୋବର ତା ୧୫ ପୂର୍ବରୁ ଏ କାମ ଶେଷ ହୋଇ ତୋପଟି ସଭାପତିଙ୍କ ଜିମାରେ ଦେବାକୁ ହେବ । ଏଥିରେ ତ୍ରୁଟି ହେଲେ ଫ୍ୟାକ୍‌ଟରି ଅଠର ବର୍ଷ ଏଗାର ଦିନପରେ ଚନ୍ଦ୍ର ଶୀର୍ଷ ବିନ୍ଦୁକୁ ଆସିବା ଯାଏ ଦୈନିକ ଟ୩୦୦୯ ହିସାବ କ୍ଷତିପୂରଣ ଦେବେ । ଏଥିପାଇଁ ଯାହା ଯାହା ଆବଶ୍ୟକ, ଫାକ୍‌ଟରି ତା ସମସ୍ତ କରିବେ ।

ଏହା ପରେ ଗୋଟାଏ ପ୍ରକାଣ୍ଡ ଟେଲିସ୍କୋପ (ଦୂରବୀକ୍ଷଣ) କିଣିବା ପାଇଁ ସର୍ବପ୍ରଥମ ଆବଶ୍ୟକ ଟଙ୍କା କେମ୍ବ୍ରିଜ୍ ମାନମନ୍ଦିରରେ ଦାଖଲ କରି ଆଲବାନୀର ଡ୍ରେଡ୍‌ଜଇଲ କମ୍ପାନୀ ସଙ୍ଗେ ଚୁକ୍ତି କଲେ । ତାହା ଶେଷ କରି ସେ ଜେ. ଟି. ମାଷ୍ଟନ୍, ମେଜର ଏଲ୍‌ଫିନ୍‌ଷ୍ଟୋନ୍ ଓ ଗୋଲ୍‌ଡ୍‌ଷ୍ପ୍ରିଂ ଫ୍ୟାକ୍‌ଟରୀର ମାନେଜରଙ୍କୁ ସଙ୍ଗରେ ଧରି ତୋପ ତିଆରି ସ୍ଥାନ ଠିକ୍ କରିବା ପାଇଁ ଫ୍ଲୋରିଡ଼ା ଯାତ୍ରା କଲେ ।

ସେମାନେ ଦୁଇଦିନ ଜଳପଥରେ ଗ୍ରିବଶହ ଅଣୀମାଇଲ ଅତିକ୍ରମ କରି ଅକ୍‌ଟୋବର ତା ୨୨ ଦିନ ଟାଂପା ଟାଉନ୍‌ରେ ପହଞ୍ଚିଲେ । ସେତେବେଳେ ବାର୍ବିକେନ୍‌ଙ୍କ ଖ୍ୟାତି ଦୁଲ୍ ଦୁଲ୍ କମ୍ପିଲା । ତାଙ୍କୁ ଅଭ୍ୟର୍ଥନା କରିବାକୁ ଟାଂପାର ତିନିହଜାର ଅଧିବାସୀ ବନ୍ଦରଠାରେ ଜମା ହୋଇଥିଲେ । ବାର୍ବିକେନ୍ ସେମାନଙ୍କ ସମ୍ମାନ ରକ୍ଷା କରିଥିବାରୁ ସେମାନେ ତାଙ୍କ ନାମରେ ବିପୁଳ ଜୟଧ୍ୱନି କରି ଗଗନ ଫଟାଇ ଦେଲେ । ଯାତ୍ରୀମାନେ ନଗରପଦରେ ଆସି ଗୋଟିଏ ହୋଟେଲ୍‌ରେ ରହିଲେ ।

ତହିଁ ଆରଦିନ ସକାଳେ ଦ୍ୱୀପଟି ଗ୍ରିଅଡ଼ ବୁଲି ଦେଖିବାକୁ ସେମାନେ ଗ୍ରିଗୋଟି ଘୋଡ଼ା ବରାଦ କରିଥିଲେ । ଗ୍ରିଗୋଟି ଘୋଡ଼ା ଆସିବା ସଙ୍ଗେ ସଙ୍ଗେ ଟାଂପାର ପଚିଶଜଣ ଯୁବକ ଅସ୍ତ୍ରଶସ୍ତ୍ର ଧରି ସେଠାରେ ହାଜର ହେଲେ । ବାର୍ବିକେନ୍ ଏହାର କାରଣ ପଚାରିବାରୁ ସେମାନେ କହିଲେ; "ମହାଶୟ ! ଏ ଦ୍ୱୀପରେ ଜଙ୍ଗଲ ଅଞ୍ଚଳରେ ବଣୁଆ ଲୋକେ ଅଛନ୍ତି । ସେମାନେ ଆପଣମାନଙ୍କୁ ଆକ୍ରମଣ କରିବେ । ତେଣୁ ଆପଣମାନଙ୍କ ଦେହରକ୍ଷା ପାଇଁ ଆମ୍ଭେମାନେ ଯିବୁ ।" ବାର୍ବିକେନ୍ ସେମାନଙ୍କୁ ଧନ୍ୟବାଦ ଦେଇ ବନ୍ଧୁମାନଙ୍କ ସହ ଘୋଡ଼ାରେ ବସି ଯାତ୍ରା କଲେ ।

ସମଗ୍ର ଫ୍ଲୋରିଡ଼ାର ରକବା ୭୦,୦୦୦ ବର୍ଗମାଇଲ । ତହିଁର ଅର୍ଦ୍ଧ ଅଞ୍ଚଳ ଶସ୍ୟକ୍ଷେତ୍ର, ନଦୀ ଓ ବସବାସରେ ପୂର୍ଣ୍ଣ । ଅନ୍ୟ ଅଞ୍ଚଳ କେବଳ ଜଙ୍ଗଲ, ମୁଣ୍ଡିଆ ଓ ପାହାଡ଼ିଆ ଭୂମିରେ ପୂର୍ଣ୍ଣ । ବାବକେନ୍ ଦଳବଳ ସହ ପ୍ରଥମ ଅଞ୍ଚଳରେ ବୁଲିଲେ । ତହିଁରେ ତାଙ୍କର ଲକ୍ଷ୍ୟଭୂମି ମିଳିଲା ନାହିଁ । କ୍ରମେ କ୍ରମେ ସେ ଅଞ୍ଚଳ ପାର ହୋଇ ସେମାନେ ପାହାଡ଼ିଆ ଅଞ୍ଚଳରେ ପହଞ୍ଚିଲେ । ସେତେବେଳକୁ ସୂର୍ଯ୍ୟ ମୁଣ୍ଡ ଉପରେ । ଖରାରେ ମୁଣ୍ଡ ଫାଟି ଯାଉଥିଲା । ତାହା ସେମାନେ ଭ୍ରୂକ୍ଷେପ ନ କରି ଅଗ୍ରସର ହେଲେ । କ୍ରମଉନ୍ନତ ପାହାଡ଼ିଆ ସ୍ଥାନମାନ ଦେଖି ସେମାନେ ଉଚ୍ଚସ୍ତର ଆଡ଼କୁ ଚାଲିଲେ । ଯାଉ ଯାଉ ଗୋଟାଏ ଜାଗାରେ ବାର୍ବିକେନ୍ ଓହ୍ଲାଇ ପଡ଼ି ସେ ସ୍ଥାନ ପରୀକ୍ଷା କଲେ । ତାହା ସେ ଅଞ୍ଚଳର ସବୁଠାରୁ ଉଚ୍ଚତମ ଜାଗା ଏବଂ ତୋପ ପାଇଁ ୯୦୦ ଫୁଟ ଗଭୀରର ଯେଉଁ କୂଅ ଖୋଳା ହେବ, ତା ପାଇଁ ଖୁବ୍ ଉପଯୁକ୍ତ । ଏ ସ୍ଥାନ ସଭାପତିଙ୍କର ଓ ଅନ୍ୟ ସାହେବମାନଙ୍କର ଖୁବ ମନୋନୀତ ହେଲା । ସେ ସ୍ଥାନର ଚାରିଆଡ଼େ ଅତି ବିସ୍ତୃତ ଖୋଲା ଜାଗା ରହିଥିଲା । ତହିଁରେ ବାରୁଦ ଘର, କାରଖାନାମାନ, ଚୂହ୍ଲାମାନ ଓ ଶ୍ରମିକମାନଙ୍କ ଘରମାନ ତିଆରି କରିବାକୁ ଅତି ବିସ୍ତୃତ କ୍ଷେତ୍ର ପଡ଼ି ରହିଥିଲା । ଏଥିରେ ସମସ୍ତଙ୍କ ମନ ଆନନ୍ଦରେ ଭରିଗଲା । ସେ ସ୍ଥାନର ନାମ ଷ୍ଟୋନହିଲ୍ ।

---

—ଦଶ—

## ନଅଶହ ପୂର୍ଣ୍ଣ କୂଅ

ଏହା ପରେ ସେମାନେ ଟାଂଗାଟାଉନ୍‌କୁ ଫେରି ଆସି କାର୍ଯ୍ୟ ବିଷୟରେ ମନଧ୍ୟାନ ଦେଲେ । ଗୋଲ୍‌ଡ଼୍‌ ଷ୍ଟ୍ରୀଂ ଫ୍ୟାକ୍‌ଟରୀର ମେନେଜର ମର୍ଚ୍ଚିଶନ୍ ଯଥେଷ୍ଟ ଶ୍ରମିକ, ଆବଶ୍ୟକ ଯନ୍ତ୍ରପାତି ଓ ଅନ୍ୟାନ୍ୟ ଉପକରଣ ଆଣିବା ପାଇଁ ତାଙ୍କ ହେଡ୍ ଅଫିସ୍ ଥିବା ନିଉଅର୍ଲିନ୍‌ସ୍ ସହରକୁ ଜାହାଜରେ ବସି ଚାଲିଗଲେ । ବାର୍ବିକେନ୍ ଓ ତାଙ୍କ ଦଳ ଆବଶ୍ୟକ ବନ୍ଦୋବସ୍ତ କରିବାକୁ ଟାଂପାଟାଉନ୍‌ରେ ରହିଲେ ।

ଯନ୍ତ୍ର ଚାଳକ, ଷ୍ଟୋର୍ ରକ୍ଷକ, ଲୁହାର, ଫେଙ୍ଗାଟୀ ପୋଡ଼ାଳୀ, ଖଣିଗାତ ଖୋଦକ, ଇଟା ତିଆରିବାଲା ଓ ରାଜମିସ୍ତ୍ରୀ ସମେତ ପନ୍ଦର ଶହ ଶ୍ରମିକ ଖୁବ୍ ଉଚ୍ଚହାର ମଜୁରିରେ ସଂଗୃହୀତ ହେଲେ । ସେମାନେ ନିଜ ନିଜ ପରିବାରବର୍ଗଙ୍କୁ ସଙ୍ଗରେ ଧରି ବାହାରିଲେ । ଏତେ ଶ୍ରମିକ ଓ ତାଙ୍କ ବାଲ୍‌ବଚ୍ଚାମାନେ, ଅନେକ ରକମର ଯନ୍ତ୍ର-ପାତି ଓ ଅନେକ ରସଦ ଜିନଷ ଜାହାଜରେ ବୋଝେଇ ହୋଇ ଅକ୍‌ଟୋବର ତା୨୨ରିଖ ସକାଳ ଦଶଟାବେଳେ ଟାଂପା ବନ୍ଦରରେ ପହଞ୍ଚିଲେ । ଏମାନଙ୍କ ଯୋଗେ ଟାଂପାର ଲୋକସଂଖ୍ୟା ଦୁଇଗୁଣ ବଢିଗଲା ଏବଂ ସହର ଗହଗହ ଧ୍ୱନିରେ କମ୍ପି ଉଠିଲା । ଏ ଶ୍ରମିକମାନେ ତ ଟାଂପାରେ ରହିବା ଲୋକ ନୁହନ୍ତି । ସେମାନେ ଅବିଳମ୍ବେ ଷ୍ଟୋନିହିଲ୍‌କୁ ଚାଲିଯିବାର କଥା । କିନ୍ତୁ ଦର୍ଶକମାନେ ପୃଥିବୀର ବିଭିନ୍ନ ଅଞ୍ଚଳରୁ ଦଳକୁ ଦଳ ଆସି ସହରକୁ ଲୋକାରଣ୍ୟ

କରି ଦେଲେ । ଏମାନଙ୍କ ଯୋଗେ ଟାଂପାର ଉନ୍ନତି ଏତେ ବଢିଗଲା ଯେ, ତାହା ସେମାନେ ପଚିଶ ବର୍ଷରେ ପାଇଥାନ୍ତେ କି ନା ସନ୍ଦେହ ।

ଜାହାଜରେ ବୋଝେଇ ହୋଇଥିବା ମାଲସବୁ ଦନା କେତେ ଧିର ବୁହା ହେଲା । ବାର୍ବିକେନ ଅବିଳମ୍ବେ ଟାଂପାଠାରୁ ଷ୍ଟୋନୀହିଲ ପର୍ଯ୍ୟନ୍ତ ପନ୍ଦର ମାଇଲ ଲମ୍ବର ରେଲ୍ ଲାଇନ ଆରମ୍ଭ କରି ଦେଲେ । ତାହା ଖୁବ୍ କମ ସମୟ ଭିତରେ ଶେଷ ହୋଇ ଷ୍ଟୋନୀହିଲ ପର୍ଯ୍ୟନ୍ତ ଗାଡ଼ିମାନ ଘନ ଘନ ଯାତାୟାତ କଲା ।

ଯେତେ ଶ୍ରମିକ ସେଠାକୁ ଆସିଥିଲେ, ବାର୍ବିକେନ ସେମାନଙ୍କର ଆତ୍ମା କହିଲେ ଚଳେ । ସେ ସେମାନଙ୍କ ମନରେ ଉତ୍ସାହ ଉନ୍ମାଦନା ଖେଳାଇ ଦେଉଥିଲେ ଏବଂ ସମସ୍ତଙ୍କୁ ଗୋଟାଏ ନବ ମନ୍ତ୍ରରେ ଉଦ୍‌ବୁଦ୍ଧ କରି ରଖିଥିଲେ । ଯେତେ ଲୋକ ଯୁଆଡ଼େ କାମ କରୁଥିଲେ ସମସ୍ତେ ଏକ ସମୟରେ ସର୍ବଦା ତାଙ୍କର ଉପସ୍ଥିତି ଅନୁଭବ କରୁଥିଲେ । ସେ ଯୁଆଡ଼େ ଯାଉଥିଲେ, ତାଙ୍କର ପ୍ରଧାନ ସେକ୍ରେଟେରୀ ମାଷ୍ଟନ ମଧ୍ୟ ଛାୟା ପରି ତାଙ୍କ ସଙ୍ଗେ ସେ ଆଡ଼େ ଘୂରୁଥିଲେ । ତାଙ୍କ ପକ୍ଷରେ ପ୍ରତିବନ୍ଧକ, ଅସୁବିଧା ବା ଅଭାବ ହୋଇ କିଛି ନ ଥିଲା । ସେ ଗୋଟାଏ ଅଦ୍ଭୁତ ଉଦ୍‌ଭାବନୀ ଶକ୍ତି ବଳରେ ସବୁ କଥା ମୁହୂର୍ତ୍ତକେ ଠିକ୍ କରି ଦେଉଥିଲେ । ସେ ଯେପରି ବିଖ୍ୟାତ ଖଣିଅଭିଜ୍ଞ, ସେପରି ରାଜମିସ୍ତ୍ରୀ, ସେପରି ଯାନ୍ତ୍ରିକ, ସେପରି ମଧ୍ୟ ପ୍ରସିଦ୍ଧ କମାଣ ନିର୍ମାତା । ସେ ସମସ୍ତ ଜଟିଳ ପ୍ରଶ୍ନର ଜବାବ ଦେଉଥିଲେ ଏବଂ ସମସ୍ତ ସନ୍ଦେହର ମୀମାଂସା କରି ଦେଉଥିଲେ । ସେ ଗନ୍‌କ୍ଲବ ଓ ଗୋଲ ଢାଳିବା ଫ୍ୟାକ୍‌ଟେରୀ ସଙ୍ଗେ ମୁହୂର୍ମୁହୂଃ ପତ୍ର ଆଦାନ ପ୍ରଦାନ କରୁଥିଲେ । ତେଣୁ ଜାହାଜ ତାଙ୍କ ଅର୍ଡରକୁ ଅପେକ୍ଷା କରି ପ୍ରତି-ମୁହୂର୍ତ୍ତରେ ଇଞ୍ଜିନ୍ ଚାଲୁ ରଖିଥିଲା ।

ସେ ନଭେମ୍ବର ପହିଲା ଦିନ ଧାଂପାକ୍ୟାମ୍ପ ଛାଡ଼ି ଷ୍ଟୋଣୀହିଲ୍ କ୍ୟାମ୍ପକୁ ସଦଳବଳେ ଯାତ୍ରା କଲେ । ସେଠାରେ ଷ୍ଟୋଣୀହିଲ୍ ସ୍ତବଧରେ ଶ୍ରମିକମାନଙ୍କର, ଇଞ୍ଜିନିଅରମାନଙ୍କର ଓ ଅନ୍ୟ ଅଫିସର-ମାନଙ୍କର ଯେଉଁ ଅସ୍ଥାୟୀ ଘରସବୁ ତିଆରି ହେଲି, ତାହା ଉତ୍ତମ ସୁସଜ୍ଜିତ, ଅଧୁନିକ ରୁଚିସମ୍ପନ୍ନ ଗୋଟିଏ ସହର ପରି ଦେଖାଗଲା । ସେଠାରେ ସମସ୍ତଙ୍କ ଜୀବନ ନିୟମାବଦ୍ଧ କରିଯାଇ ଗୋଟିଏ ଯନ୍ତ୍ରପରି ଚାଳିତ ହେବାକୁ ବ୍ୟବସ୍ଥା କରିଗଲା ।

ନଭେମ୍ବର ତା୪ ଦିନ କୂଅଖୋଳା ସୁରୁ ହେଲା । ବାର୍ବିକେନ ତାର ଶୁଭ ଦେଇ ସମସ୍ତ ଶ୍ରମିକ ଓ ଅନ୍ୟ ସହକର୍ମୀମାନଙ୍କୁ ଯେଉଁ ଭାଷଣ ଦେଇଥିଲେ, ତାହା ତଳେ ସଂକ୍ଷେପରେ କୁହାଗଲା ।

"ବନ୍ଧୁଗଣ ! ମୁଁ କାହିଁକି ତୁମ୍ଭମାନଙ୍କୁ ଏତେ ଦୂର ଫ୍ଲୋରିଡ଼ାକୁ ଟାଣି ଅଣିଛି, ତାହା ତୁମ୍ଭେମାନେ ଜାଣ । ଆମେ ଏଠାରେ ଗୋଟିଏ ତୋପ ଢାଳିବା ଯାହାର ବ୍ୟାସ ହେବ ନଅ ଫୁଟ, ମୋଟା ଛଅ ଫୁଟ ଏବଂ ଗୋଟିଏ ପଥରର ଘେର ସହ ସମୁଦାୟ ଉଣିଶୀ ଫୁଟ ଅଧେ ମୋଟା । ତେଣୁ ଆମ କୂଅଟି ଷାଠିଏ ଫୁଟ ଓସାର ଓ ନଅ ଶହ ଫୁଟ ଗଭୀର ହେବ । ଏ ବିଶାଳ କାର୍ଯ୍ୟ ମୋଟେ ନଅ ମାସ ଭିତରେ ଶେଷ ହେବ । ତେଣୁ ତୁମ୍ଭମାନଙ୍କୁ ୨୫ ଲକ୍ଷ, ୪୩ ହଜାର, ୪ ଶହ ଘନଫୁଟ ମାଟି ୨୫୫ ଦିନ ମଧ୍ୟରେ ଖୋଳିବାକୁ ପଡ଼ିବ । ଏ ହିସାବରେ ଦିନକୁ ଦଶ ହଜାର ଘନଫୁଟ ମାଟି ପଡ଼ିଲା । ଦେହ ବୁଲେଇବାକୁ ଜାଗାଥିଲେ ଏଇଟା ବିଶେଷ କଷ୍ଟକର ହୁଅନ୍ତା ନାହିଁ । କିନ୍ତୁ ତୁମ୍ଭଙ୍କୁ ଖୁବ୍ ସଂକୀର୍ଣ୍ଣ ଜାଗା ଭିତରେ କାମ କରିବାକୁ ପଡ଼ୁ-ଥିବାରୁ ଅବଶ୍ୟ କଷ୍ଟ ହେବ । ତଥାପି ଏ କାର୍ଯ୍ୟ ନିଷ୍ପନ୍ନ କରିବାକୁ

ହେବ । ଏଥିପାଇ ମୁଁ ତୁମ୍ଭ ସାହସ ଓ କୌଶଳ ଉପରେ ନିର୍ଭର କରୁଛି ।"

ଏହି ଭାଷଣରେ ଲୋକେ ଉତ୍ସାହରେ କାମରେ ଲାଗିଲେ । ସେହି ସମୟଠାରୁ ଦିବାରାତ୍ର ଅବିଶ୍ରାନ୍ତ କାମ ଲାଗିଲା । ଶ୍ରମିକମାନେ ପ୍ରତି ତିନି ଘଣ୍ଟାରେ ବଦଳ ହେଉଥିଲେ । ସାଙ୍ଗେ ସାଙ୍ଗେ ଖୋଳା ଲାଗିଥାଏ, ମାଟି କଢ଼ା ଚାଲିଥାଏ ଏବଂ ପଥର ଘେର ତିଆରି ହୋଇ ଯାଉଥାଏ । ତେଣୁ ଭୂସ୍ତୂପ ପଡ଼ିବା ବା ଅନ୍ୟ ଦୁର୍ଘଟଣା କିଛି ଘଟିବାର ସମ୍ଭାବନା ରହିଲା ନାହିଁ । କୂଅ ୨୦ ଫୁଟ ଗଭୀର ହେବା ସଙ୍ଗେ ସଙ୍ଗେ ଭାରଉତ୍ତୋଳନ ଯନ୍ତ୍ର 'କ୍ରେନ୍' ବସାହେଲା ଏବଂ ଯେତେ ମାଟି ଖୋଳା ହୋଇ ଯାଉଥିଲା, ତାହା ସାଙ୍ଗେ ସାଙ୍ଗେ କ୍ରେନ, ପଦାକୁ ବାହାର କରି ଆଣି ବହୁଦୂରରେ ଗଦେଇ ଦେଉଥିଲା । ଦିନରେ ସୂର୍ଯ୍ୟର ତୀବ୍ର ଆଲୋକ ଓ ରାତରେ ଅତି ଉଜ୍ଜ୍ୱଳ ବିଜୁଳି ଆଲୋକରେ ଯେଉଁ ଅସାଧାରଣ କାମ ଲାଗିଗଲା, ତାହା ବଣୁଆ ପଶୁ ଓ ବଣୁଆ ମନୁଷ୍ୟମାନଙ୍କର ଭୟ ଉତ୍ପାଦନ କଲା । ସେମାନେ ଅତି ଷ୍ଟୋନିହିଲ୍ ଟାଉନର ସୀମାକୁ ସୁଦ୍ଧା ଆସିବାକୁ ସାହସ କଲେ ନାହିଁ ।

ନଭେମ୍ବର ଶେଷକୁ କୂଅ ୧୧୨ ଫୁଟ ଖୋଳା ହୋଇଗଲା । ଡିସେମ୍ବର ଶେଷକୁ ତାର ଦ୍ୱିଗୁଣ ଓ ଜାନୁଆରୀ ଶେଷକୁ ତା ଉପରେ ଅଧିକ ୧୧୨ ଫୁଟ ଖୋଳା କାମ ହୋଇଗଲା । ମାସକୁ ମାସ ଯେତିକି କାମ ହେବାକୁ ନିର୍ଦ୍ଦିଷ୍ଟ ଥିଲା, ଠିକ ସେହି ନିୟମରେ ସେତିକି କାମ ହେଲା । ଫେବୃଆରୀ ଶେଷ ଆଡ଼କୁ ୪୪୮ ଫୁଟ ଖୋଳା ହେଲାପରେ ଗୋଟାଏ ଝର ହଠାତ୍ ବାହାରି ପଡ଼ିଲା । କାରିଗରମାନେ ପ୍ରବଳ ପମ୍ପ ସାହାଯ୍ୟରେ ପାଣିକୁ ଶୁଖାଇ ଦେଇ ନାନା କୌଶଳରେ ସେ

ବର ମୁହଁକୁ ବନ୍ଦ କରିଦେଲେ । ମାତ୍ର ସେ ଯାଗା ଓଦା ହୋଇଯିବା ଯୋଗେ ଅନେକ ମାଟି ଭୁଷୁଡ଼ି ପଡ଼ିଲା ଏବଂ ତଦ୍ଦ୍ୱାରା ୨୪ଜଣେ ଶ୍ରମିକ ମରିଗଲେ । ମାତ୍ର ସୁଖର କଥା, ପଥର ଢେର ଫାଟିଲା ନାହିଁ ବା ଭୁଷୁଡ଼ିଲା ନାହିଁ । ଇଞ୍ଜିନିଅରମାନେ ଅସାଧାରଣ କୌଶଳ ଓ ସବଳ ଯନ୍ତ୍ର ସାହାଯ୍ୟରେ ସେ ଓଦା ମାଟିକୁ ଉଠାଇ ଦେଇ ଜଳଟା ସଫାକରି ଦେଲେ । ପୁଣି କାମ ଲାଗିଗଲା । ଏହାପରେ ଆଉ କୌଣସି ଦୁର୍ଘଟଣା ନ ଘଟି କାମ ଧମାଧମ୍ ଚାଲିଲା ଏବଂ ଯୁନ୍ ତା ୧୦ରିଖ ଦିନ ସମୁଦାୟ ନଅଶହ ଫୁଟ କାମ ପଥର ଢେର ସହ ଶେଷ ହେଲା । କୂଅର ମୁହଁ ଭୂଇଁ ସଙ୍ଗେ ସମାନ ରହି ନିର୍ଦ୍ଦିଷ୍ଟ ସମୟର ୧୨୦ଦିନ ପୂର୍ବରୁ ଯେତେବେଳେ ସେ କାମ ସରିଗଲା, ସେଦିନ ସମସ୍ତଙ୍କ ମନରେ ଅତିଶୟ ଆନନ୍ଦ ଖେଳିଗଲା । ମି. ମର୍ଚ୍ଚିଶନଙ୍କ ଅସାଧାରଣ କର୍ମ ତତ୍ପରତା ଓ କୌଶଳ ବଳରେ ଏତେ ବଡ଼ କାମ ନିରାପଦରେ ସରିଯିବାରୁ ବାର୍ବିକେନ୍ ଓ ଗନ୍ କ୍ଲବର ମେମ୍ବରମାନେ ତାଙ୍କୁ ଅଭିନନ୍ଦିତ କଲେ ।

ଏ ଆଠମାସ କାଳ ବାର୍ବିକେନ୍ ଷ୍ଟୋନୀହିଲ ଛାଡ଼ି କୁଆଡ଼େ ଯାଇ ନ ଥିଲେ । ସେ କୂଅ ଖୋଳା କାର୍ଯ୍ୟକୁ ଗଭୀର ଅଭିନିବେଶ ସହକାରେ ଲକ୍ଷ୍ୟ କରୁଥିବା ସଙ୍ଗେ ସଙ୍ଗେ ଶ୍ରମିକମାନଙ୍କ ସ୍ୱାସ୍ଥ୍ୟ ଓ ସେମାନଙ୍କ ଆହାର ବିହାର ପାଇଁ ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ । ତେଣୁ କୌଣସି ମାରାତ୍ମକ ରୋଗ ସେଠାରେ ଦେଖା ଦେଇ ନଥିଲା କିମ୍ବା ତାହାର ସୁଖ ଶାନ୍ତିରେ ତିଳେ ମାତ୍ର ବାଧା ପଡ଼ି ନ ଥିଲା ।



—ଏଗାର—

## ଲୁହାଢ଼ଳା

କୂଅ ଖୋଳାକାମ ଆରମ୍ଭ ହେବା ସାଙ୍ଗେ ସାଙ୍ଗେ ଲୁହା ଅଜୁଟା ପାଇଁ ମଧ୍ୟ ଦ୍ରୁତବେଗରେ ବିପୁଳ ଆୟୋଜନ ଲାଗିଗଲା । କୂଅକୁ କେନ୍ଦ୍ର କରି ତା ଠାରୁ ଛଅଶହ ଗଜ ଦୂରରେ ତା ଗୁରିପଟେ ଗୋଟିଏ ବୃତ୍ତ ଅଙ୍କିତ ହେଲା । ତହିଁରେ ପ୍ରତ୍ୟେକ ଛଅଫୁଟ ଓସାରର ୧୨ଶହ ଚୁଲି ପରସ୍ପର ଡନ୍ଦାଗଜ ବ୍ୟବଧାନରେ ସ୍ଥାପିତ ହେଲା । ସମୁଦାୟ ଚୁଲିର ବୃତ୍ତ ଦୁଇମାଇଲ ଲମ୍ବ । ପ୍ରତ୍ୟେକ ଚୁଲି ଗୋଟାଏ ପ୍ରଣାଳୀରେ ଗଠିତ ଏବଂ ତହିଁରେ ଚତୁଷ୍କୋଣ ବିଶିଷ୍ଟ ଧୂଆଁ ନଳୀସବୁ ଖଞ୍ଜା ଯାଇଥିଲା ।

ଏ ସମସ୍ତ ଚୁଲିରେ ଯେଉଁ ଲୁହା ତରଳା ହେବାର କଥା, ତାହା ପ୍ରଥମେ ଗୋଲ୍ଡ଼ ସ୍ପ୍ରିଂ ଫ୍ୟାକ୍ଟରୀରେ ପରୀକ୍ଷିତ, ଶୋଧିତ ଓ ସଫାସୁତୁରା ହୋଇଥିଲା । ୧୩୬ ଲକ୍ଷ ପାଉଣ୍ଡ ଲୁହା ନିଉୟର୍କରୁ ଟାଂପା ଟାଉନକୁ ପଠାଇବା ସହଜ କଥା ନୁହେଁ । ଏଥିପାଇଁ ହଜାରେ ଟନ ଓଜନର ଅଠଷଠୀଟା ମାଲବାହୀ ଜାହାଜ ଆବଶ୍ୟକ ହେଲା । ଏ ସବୁ ଜାହାଜ ଏକ ସମୟରେ ମାର୍ଚ୍ଚ ତାଃ ୩ ଦିନ ନିଉୟର୍କରୁ ବାହାରି ତାଃ୧୦ରିଖ ଦିନ ଟାଂପା ବନ୍ଦରରେ ଲାଗିଲେ । ସେଠାରୁ ସବୁ ଲୁହା ଖଣ୍ଡମାନ ରେଲ୍‌ରେ ବୋଝେଇ ହୋଇ ଷ୍ଟୋନୀହିଲରେ ପହଞ୍ଚିବାକୁ ଜୁନ୍ ମାସ ହୋଇଗଲା ।

ବାରଶହ ଚୁଲି ଯେ ଷାଠିଏ ହଜାର ଟନ୍ ଲୁହାକୁ ଅଜୁଟିବାକୁ ଯଥେଷ୍ଟ, ଏହା କୁହାଯାଇ ନପାରେ । ପ୍ରତ୍ୟେକ ଚୁଲିରେ ଚଉଦ

ଲକ୍ଷ ପାଉଣ୍ଡ ହିସାବରେ ଲୁହା ଭର୍ତ୍ତି ହେଲା । ଏ ଅଜଷ୍ଠା କାମ ବଡ଼ ବିଚିତ୍ର । ନିଆଁ ଲାଗିବା ଯନ୍ତ୍ର ଓ ଧୂଆଁ ନଳ ସବୁ ଚୁଲିର ଦୁଇ ଦିଗରେ ଖଞ୍ଜା ଯାଇଥିଲା । ତାହା ତରଳ ହେବାର ଏପରି ବ୍ୟବସ୍ଥା ହେଲା ଯେ ତହିଁରେ ଭୂ ଭାଗର ଅନେକ ଅଂଶ ତାତିଯିବା ପରି ମନେ ହେଲା । ଚୁଲିରୁ ଭୂଇଁକୁ ଅଜଷ୍ଠା ଲୁହା ବୋହି ଆସିବା ପାଇଁ ଗୋଟାଏ ଲେଖାଏଁ ଲୁହାନଳ ଖଞ୍ଜା ଯାଇଥିଲା । ଭୂଇଁ ଉପରେ ଖଞ୍ଜା ଥିବା ଟାଙ୍କିରେ ତାହା ପଡ଼ି ସେଠାରୁ କୂଅ ପର୍ଯ୍ୟନ୍ତ ବୋହିଯିବା ପାଇଁ ସିମେଣ୍ଟର ନାଳ କରା ଯାଇଥିଲା ।

ବାର୍ବିକେନ୍ ଏ ମଧ୍ୟରେ ଗୋଟାଏ ବିଚିତ୍ର ଖୁମ୍ବ କୂଅ ଭିତରେ ନିର୍ମାଣ କରିଥିଲେ । ତାର ଲମ୍ବ ନଅଶହ ଫୁଟ ଓ ବ୍ୟାସ ନଅଫୁଟ । ତାହା ବାଲି ମାଟି ମିଶା କାଦୁଅରେ ତିଆରି ହୋଇଥିଲା ଏବଂ ତହିଁରେ ଘାସ ଓ କୁଟା ଗୁଡ଼ା ହୋଇଥିଲା । ତାହା କୂଅତଳୁ ଉପରି ଯାଏ ଉଠିଥିଲା ଏବଂ ତାର ଚାରି କଡ଼ରେ ଯେଉଁ ଛଅଫୁଟ ଶୂନ୍ୟ ସ୍ଥାନ ଥିଲା, ତହିଁରେ ଅଜଷ୍ଠା ଲୁହା ଭର୍ତ୍ତି ହେବାର କଥା । ସେହି ଅଜଷ୍ଠା ଲୁହା ଶେଷରେ ତୋପର କାନ୍ଥ ହେବ । ସେହି ଖୁମ୍ବର ଭାର-କେନ୍ଦ୍ର ଠିକ୍ ରଖିବା ପାଇଁ ତାର କଡ଼ମାନଙ୍କରେ ଲୁହାର ଛଡ଼ ସବୁ ଖଞ୍ଜା ଯାଇଥିଲା । ପ୍ରତି ଶହେ ଫୁଟରେ ଛଡ଼ ସବୁ ଚେକା ମାରିଯାଇ ଇଟା କାନ୍ଥସଙ୍ଗେ ଅଣ୍ଟା ଯାଇଥିଲା । ତରଳା ଲୁହା ସଙ୍ଗେ ତାହା ମିଶିଗଲେ କିଛି କ୍ଷତି ନାହିଁ । କାରଣ ତରଳ ଲୁହା ତାତରେ ତାହା ଆପଣା ଛାଏଁ ତରଳି ଯିବ ।

ଏ ସବୁ କାର୍ଯ୍ୟ ଜୁଲାଇ ତା୮ରିଖ ଦିନ ଶେଷ ହେଲା ଏବଂ ଅଜଷ୍ଠା କାର୍ଯ୍ୟ ତା୧୦ରିଖ ଦିନ ହେବାକୁ ସମୟ ଧାର୍ଯ୍ୟ କରାଗଲା । ଏ ସମୟରେ ସାଧାରଣ ଲୋକେ ଏହି ଗେରଦ ଉଦରକୁ ଯେପରି

ଅସି ନ ପାରିବେ, ତାର ବ୍ୟବସ୍ଥା ହେଲା । ଏହି ସମୟଠାରୁ ଗେରଦ ଭିତରେ ସାଧାରଣ ପ୍ରବେଶ ଏକବାରେ ବନ୍ଦକରି ଦିଆଗଲା । ଏଥିଭିତରେ ଯେତେ କାର୍ଯ୍ୟ ଏଣିକି ହେବ, ତାହା ସବୁ ବିପଦଜନକ । ତେଣୁ ବାହାର ଲୋକଙ୍କୁ ଭିତରେ ଭର୍ତ୍ତିକରି ନାନା ବିପଦ ବରଣ କରିବାକୁ ବାର୍ବିକେନ୍ ରାଜି ହେଲେ ନାହିଁ ।

ତା୧୦ ଦିନ ୧୨ଟାବେଳେ ଲୁହା ଅଜାଡ଼ା ହେବା ସ୍ଥିର ହୋଇ-ଥିବାରୁ ତାର ପୂର୍ବଦିନ ସନ୍ଧ୍ୟାରୁ ଲୁହାସବୁ ଚୁଲିମାନଙ୍କରେ ସଞ୍ଚା ହୋଇଗଲା । ପ୍ରତ୍ୟେକ ଚୁଲିରେ ନିଆଁ ଧରିବା ପାଇଁ ବିଜୁଳିର ତାର ଖଞ୍ଜା ଯାଇଥିଲା ଏବଂ ଗୋଟିଏ ସ୍ଥାନରେ ସମସ୍ତ ତାରର ସୁଇଚ ଥିଲା । ସୁଇଚ୍ ଟିପିବା ମାତ୍ରକେ ସବୁ ଚୁଲି ଏକ ସମୟରେ ତାତି ହେଲା । ଅଜାଡ଼ାବେଳେ ସବୁ ଚୁଲିରୁ ଏପରି ଶବ୍ଦ ଉଠିଲା ଯେ, ତାହା ବଜ୍ରର ଭୀଷଣ ରଡ଼ିଠାରୁ ବଳିଗଲା । ଏପରି ଭାବରେ ବାରଶହ ଚୁଲିରୁ ଯେତେବେଳେ ଏକାବେଳେ ଉଠିଲା, ତାହା ଚହଳିତ କମ୍ପାଇ ଦେଲା । ସମସ୍ତ ଭୂଖଣ୍ଡ କୋଡ଼ିଏ ମାଇଲ ଯାଏ ଥରି ଉଠିଲା । ଅଠଷଠୀ ହଜାର ଟନ୍ କୋଇଲାରୁ ଉଠୁଥିବା ଧୂଆଁ ଦିଗ୍‌ବିଦିଗ ସମସ୍ତ ଘୋଡ଼ାଇ ଘୁରିଅଡ଼ ଅନ୍ଧକାର କରିଦେଲା ।

ଗେରଦ ଭିତର ଉତ୍ତାପ ଏତେ ପରିମାଣରେ ବଢ଼ିଗଲା ଯେ, ଆଉ ତା ଭିତରେ ମନୁଷ୍ୟ ରହିବା ସମ୍ଭବ ହେଲା ନାହିଁ । ଏଥିପାଇଁ ବାର୍ବିକେନ୍ ଆଗରୁ ସତର୍କ ହୋଇ ସମସ୍ତଙ୍କୁ ଗେରଦ ଭିତରୁ ପଦାକୁ ବାହାର କରି ଦେଇଥିଲେ । ଯେଉଁମାନେ ଚୁଲିର ତଳ କବାଟି ଖୋଲିବେ, ସେମାନେ ସତର୍କ ହୋଇ ଯଥାସ୍ଥାନରେ ଅବସ୍ଥିତ ଥିଲେ ଏବଂ ଯେତେବେଳେ କଳ ବନ୍ଧୁକର ତୃତୀୟ ଅବାଜ ଶୁଣିବେ, ସାଙ୍ଗେ ସାଙ୍ଗେ ସେ କବାଟିର ମନ୍ଦକୁ ଖୋଲି ଦେବେ ବୋଲି

ପ୍ରସ୍ତୁତ ଥିଲେ । ସେ ସମୟକୁ ଅପେକ୍ଷା କରି ସେମାନଙ୍କ ଛାତି ଧଡ଼୍‌ଧଡ଼୍ ପଡ଼ୁଥିଲା ।

ଠିକ୍ ବାରଟା ବେଳକୁ କଳ ବନ୍ଧୁକ ତିନ୍‌ଟା ଅବାଜ କଲା ମାତ୍ରକେ ତଳ କବାଟୀର ଯନ୍ତ୍ରସବୁ କର୍ମୀମାନେ ଖୋଲି ଦେଲେ । ଅଜଟା ଲମ୍ବା ଚୁଲିମାନଙ୍କରୁ ଭୀଷଣ ଶବ୍ଦରେ ବାହାରି ଟାଙ୍କୀମାନଙ୍କରେ ପଶିଗଲା ଏବଂ ତହିଁରୁ ନାଳମାନଙ୍କରେ ସର୍ପାକୃତିରେ ଉବାହୁଯାଇ କୂଅରେ ପଶିଗଲା । ବାରଶହ ନଳାରେ ତରଳ ନିଆଁ ଗଳିଯିବା ବେଳର ଦୃଶ୍ୟ କି ଭୟାନକ, ତାହା ସହଜରେ ଅନୁମେୟ । କୂଅର ପାଦ ନିକଟକୁ ଯାଇ ବାରଶହ ନଳାର ତରଳ ନିଆଁ ସ୍ରୋତ ଯେତେ-ବେଳେ ଭୀଷଣ ଶବ୍ଦରେ ନଅ ଶହ ଫୁଟ ତଳକୁ ଡେଇଁ ପଡ଼ିଲା, ତାର ଯେ ଭୟାନକ ଶବ୍ଦ ହେଲା, ତାହା କଥାରେ କହି ହେବ ନାହିଁ। ସେହି ତରଳ ଧାତୁସ୍ରୋତ କୂଅର ନଅ ଶହ ଫୁଟ ଶୂନ୍ୟ ସ୍ଥାନରେ ଭର୍ତ୍ତି ହୋଇ ଯେତେବେଳେ ତାର ଶୀତଳତାକୁ ଘୋର ଜ୍ୱାଳାରେ ପରିଣତ କରିଦେଲା, ସେତେବେଳେ ଯେଉଁ ଭୀଷଣ ଧୂମପଟଳ ଚତୁର୍ଦ୍ଦିଗ ଆଚ୍ଛନ୍ନ କରି ଆକାଶକୁ ଉଠିଗଲା, ତାହା ତିନି ହଜାର ଫୁଟ ପର୍ଯ୍ୟନ୍ତ ଉଠିଯାଇ ସମୁଦାୟ ଆକାଶକୁ ରକ୍ତ ବର୍ଣ୍ଣର ବାଦଲରେ ଢାଙ୍କିଦେଲା । ଦୂରରୁ ଦେଖିଲେ ମନେହେଲା, ଯେପରି ଗୋଟାଏ ଆଗ୍ନେୟଗିରି ଭୀଷଣ ଅଗ୍ନି ଉଦ୍‌ବମନ କରି ଗଗନ ଭୁବନ ବ୍ୟାପିଯାଇଅଛି । ମାତ୍ର ଯଥାର୍ଥରେ ଏହା ଆଗ୍ନେୟଗିରି ନୁହେଁ, ପଞ୍ଚମହାଭୂତର ବୈଷମ୍ୟ ଲୀଳା ନୁହେଁ କିମ୍ବା ପ୍ରକୃତିର ଅନ୍ୟ କିଛି ତାଣ୍ଡବ ନୁହେଁ । ଏହା ମନୁଷ୍ୟକୃତ, ମନୁଷ୍ୟର ବିରାଟ କଳ୍ପନା-ପ୍ରସୂତ ଏବଂ ତାର ବିରାଟ ବାହାଦୁରୀ ।



—ବାର—

# ୯୦୦ ଫୁଟ ଗୋପ

ଅଉଟା ଧାତୁ ନିରାପଦରେ କୂଅ ଭିତରେ ପଶିଲା କି ନା ବୋଲି ଲୋକେ ଗୁରୁଅଢ଼େ ପରସ୍ପର ପଚାରି ହେଲେ । ଏହାର ସଫଳତା ବିଷୟରେ ନାନା ସନ୍ଦେହ ଜାତ ହେଉଥିଲା । ଏ ବିଷୟର ଯଥାର୍ଥତା ଅନୁଭବ କରିବା ପାଇଁ ଦୀର୍ଘ ସମୟ ଲାଗିଗଲା । ଏହା ସମ୍ପୂର୍ଣ୍ଣ ଥଣ୍ଡା ହେବା ପାଇଁ ପନ୍ଦର ଦିନ ଲାଗିଲା । ତଥାପି ପନ୍ଦର ଦିନ ପରେ ମଧ୍ୟ ସାମାନ୍ୟ ପରିମାଣରେ ବାଷ୍ପ ଉପରକୁ ଉଠୁଥିଲା ଏବଂ ଷ୍ଟୋମୋହିଲ୍ ତାହାର ଦୁଇ ଶହ ଗଜ ଦୂରରେ ମଧ୍ୟ ଭୂଇଁ ଏତେ ତାତିଥିଲା ଯେ ତହିଁରେ ପାଦ ଥୋଇ ହେଉ ନ ଥିଲା ।

ଗନ୍‌କ୍ଲବର ମେମ୍ବରମାନେ ଗେରଦ ଭିତରକୁ ଯାଇ ଠିକ୍ ଅଉଟା ହେଲା କି ନା ଓ ସବୁ ତରଳ ଧାତୁ ବହିଯାଇ କୂଅ ଭିତରେ ପଡ଼ି ପୂର୍ଣ୍ଣ ହୋଇଗଲା କି ନା, ତାହା ଦେଖିବାକୁ ଯେତେ ବ୍ୟାକୁଳ ହେଲେ ମଧ୍ୟ କୌଣସି ମତେ ତା ଭିତରକୁ ଯାଇ ପାରିଲେ ନାହିଁ । ସୁତରାଂ ସେମାନଙ୍କୁ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ପଡ଼ିଲା । ଦିନକୁ ଦିନ ପରୀକ୍ଷା କରି ଦେଖାଗଲା ଯେ ଭୂଭାଗ ଅସ୍ତେ ଅସ୍ତେ ଶୀତଳ ହେଉଅଛି । ଅଗଷ୍ଟ ୧୫ ବେଳକୁ ଦେଖାଗଲା, ବାଷ୍ପର ପରିମାଣ କମି ଯାଉଛି । ବିରାଟ ଧୂମ ପଟଳ କ୍ରମେ ସଙ୍କୁଚିତ ହୋଇ କୂଅ ଭିତରେ ଅଦୃଶ୍ୟ ହେଲାପରି ଜଣାଯାଉଛି ଏବଂ କ୍ରମେ କ୍ରମେ ପୃଥିବୀର କମ୍ପନ କମିଯାଉଛି । ଅଗଷ୍ଟ ତା ୨୨ ବେଳକୁ ବାର୍ବିକେନ ତାଙ୍କ ଦଳବଳ ସହ କୂଅର ନିକଟବର୍ତ୍ତୀ ହେଲେ । ବାହାରେ ଗୁରୁଅଢ଼ ଥଣ୍ଡା ହୋଇ ଯାଇଥିଲେ ମଧ୍ୟ କୂଅ ନିକଟରେ ପାଦ ଥୋଇ ହେଉ ନ ଥିଲା ।

ଏହା ସତ୍ତ୍ୱେ କାମ ଅବସ୍ଥ କରାଗଲା । ଉକ୍ତ ଲମ୍ବା ପରିଧି ମଧ୍ୟରୁ ମାଟିର ବଡ଼ବଡ଼ ଗୁଣ୍ଡିକୁ ବାହାର କରିବା ସହଜ କଥା ନୁହେଁ । ସେତେବେଳକୁ ତାହା ଭୀଷଣ ଉତ୍ତାପ ବଳରେ ପଥର ପାଲଟି ଯାଇ-ଥିଲା । ଶ୍ରମିକମାନେ କୋଡ଼ି, ଶାବଳ ଓ ଫାଉଡ଼ା ଧରି ସେ ପଥରକୁ ଭାଙ୍ଗିବାକୁ ଲାଗିଲେ । ବାର୍ବିକେନଙ୍କ ଧନଧନ ତନାଧନା, ମଜୁରିର ଚତୁର୍ଗୁଣ ପୁରସ୍କାର ବୃଦ୍ଧି ଓ ଉତ୍ସାହ ବଳରେ କାମ ଏତେ ଜୋରରେ ଚାଲିଲା ଯେ, ସେପ୍ଟେମ୍ବର ତା୩ରିଖ ବେଳକୁ ସମୁଦାୟ ଗୁଣ୍ଡି ସଫା ହୋଇଗଲା । ଗାଣ୍ଡୁଅରେ ମାଟି ଗଦା ହେବା ମାତ୍ରକେ କ୍ରେନ୍ ତାହା ଉପରକୁ ଉଠାଇ ଆଣୁଥିଲା ଏବଂ କ୍ରେନ୍ ବହୁ ଦୂରରେ ନେଇ ଫିଙ୍ଗି ଦେଉଥିଲା ।

ଏହା ସରିବା ସଙ୍ଗେ ସଙ୍ଗେ ମିସ୍ତ୍ରୀମାନେ ତୋପଗର୍ଭକୁ ଯନ୍ତ୍ର ସାହାଯ୍ୟରେ କାଟି 'ଗୁରିପାଖ ସମାନ ଓ ଚିକ୍କଣ କରିବାରେ ଲାଗିଲେ । କେତୋଟି ସପ୍ତାହ ପରେ ଏକାମ ମଧ୍ୟ ଶେଷ ହୋଇଗଲା । ସେପ୍ଟେମ୍ବର ତା୨୨ ତାରିଖ ବେଳକୁ ବଡ଼ ତୋପ ଗର୍ଭରେ ମସ୍ତକ ଉତ୍ତୋଳନ କରି ଚନ୍ଦ୍ରକୁ ତାଚ୍ଛଲ୍ୟ କରି ଠିଆ ହୋଇ ରହିଲା ।

ଉପରେ ଠିଆ ହୋଇ ୯୦୦ ଫୁଟଗଭୀରକୁ ଚାହିଁଲେ କାହାର ମୁଣ୍ଡ ଘୂରି ନ ଯିବ ? ମାଷ୍ଟନ୍ ସାହେବ ଉତ୍ସାହରେ ପାଗଳ ହୋଇ ତୋପ ଭିତରକୁ ଚାହିଁବା ମାତ୍ରକେ ତାଙ୍କ ମୁଣ୍ଡ ଏପରି ଘୂରିଲା ଯେ, କେରି ସାହେବ ତାଙ୍କ ହାତ ଧରି ପକାଇ ନ ଥିଲେ, ସେ ତୋପର ଅନନ୍ତ ଗର୍ଭରେ ପଡ଼ି ସମାଧି ଦେଇ ଥାଆନ୍ତେ ।

ଲମ୍ବା ନିମ୍ନପଦରେ ଅଧିଷ୍ଠା ହୋଇ ଗୁଣ୍ଡିରେ ଚଳା ହେଲା ଏବଂ ଶେଷରେ ୯୦୦ ଫୁଟ ଲମ୍ବର ତୋପ ମଧ୍ୟ ତିଆରି ସରିଲା । ଏ ସମ୍ବାଦ

ସଙ୍ଗେ ସଙ୍ଗେ ତାରରେ ଚାରିଅଡ଼େ ଜଣାଇ ଦିଆଗଲା । ଖବରକାଗଜମାନଙ୍କରେ ଚାରିଅଡ଼େ ପ୍ରଚାରିତ ହେଲା । ଏ ଖବରରେ କାପ୍ଟେନ ନିକୋଲଙ୍କ ମୁହଁ ଶେତା ପଡ଼ିଗଲା । ସେ ଅତି କାଳବିଳମ୍ବ ନ କରି ତାଙ୍କ ପ୍ରତିଶ୍ରୁତ ବାଜି ବାବଦ ଟଙ୍କା ବାର୍ବିକେନଙ୍କ ନିକଟକୁ ପଠାଇଦେଲେ । ବାର୍ବିକେନ ଏହି ବିରାଟ ପରିକଳ୍ପନା ପାଇଁ ଯଥେଷ୍ଟ ଧନ ସଂଗ୍ରହ କରି ପାରିବେନାହିଁ ବୋଲି କହି ନିକୋଲ ଟ୩୦୦୦୯ ବାଜି ରଖିଥିଲେ ଏବଂ ୯୦୦ ଫୁଟର ଏତେ ବଡ଼ ତୋପ ଅଜଟା ହୋଇ ପାରିବ ନାହିଁ ବୋଲି କହି ଟ୬୦୦୦୯ ବାଜି ରଖିଥିଲେ । ଏବେ ବାର୍ବିକେନ ଉଭୟ ବାଜିରୁ ସଫଳତାର ସହ ଉତ୍ତୀର୍ଣ୍ଣ ହୋଇଥିବାରୁ ସେ ଚାରିଅଡ଼ୁ ଯେତେ ଧନ୍ୟବାଦ ଓ ପ୍ରଶଂସା ପାଇଲେ, ତାହା ତାଙ୍କୁ ସେତେ ଉତ୍ସାହିତ କରିନଥିଲା, ନିକୋଲଙ୍କ ଏ ଟ୯୦୦୦୯ ତାଙ୍କୁ ଅଧିକ ଆନନ୍ଦରେ ବୁଡ଼ାଇଦେଲା ।

ସେପ୍ଟେମ୍ବର ତା ୨୩ ଦିନ ଗେରଦର ଦ୍ୱାର ଖୋଲା ହେଲା ଏବଂ ସର୍ବସାଧାରଣଙ୍କୁ ତା ଭିତରେ ପ୍ରବେଶ କରିବାକୁ ଅନୁମତି ଦିଆଗଲା । ଦର୍ଶକମାନେ ଏତେ ସଂଖ୍ୟାରେ ତା ଭିତରେ ପଶିଲେ ଯେ, ସେମାନଙ୍କ ଭିଡ଼ ସମ୍ଭାଳିବା ମୁସ୍କିଲ ହୋଇ ଉଠିଲା । ଟାଂପା ଟାଉନ ଏତେବେଳକୁ ଏତେ ପରିମାଣରେ ବଢ଼ିଗଲା ଯେ, ସେଠାରୁ ଷ୍ଟୋନୀହିଲ ପର୍ଯ୍ୟନ୍ତ ଏ ପନ୍ଦର ମାଇଲ ମଧ୍ୟରେ ଯେତେ ପଡ଼ିଆ, ଜଙ୍ଗଲ ସବୁଥିଲା, ସେ ସମସ୍ତ ଅଂଶ ଲୋକ ବସତିରେ ପୂର୍ଣ୍ଣ ହୋଇଗଲା । ବାର୍ବିକେନ ସେ ସହରରେ ଯେଉଁଦିନ ପ୍ରଥମେ ପଦାର୍ପଣ କରିଥିଲେ ସେଦିନ ତାର ଲୋକସଂଖ୍ୟା ଥିଲା ୩୦୦୦ । ସେପ୍ଟେମ୍ବର ତା ୨୩ ବେଳକୁ ତାହା ପନ୍ଦର ଲକ୍ଷରେ ପରିଣତ ହେଲା । କେତେ ବଡ଼ ଦାଣ୍ଡ, କେତେ ରାସ୍ତା, କେତେ ଗଳି

ଘୁରିଅଡ଼େ ଛଅରି ହେଲା । କେତେ ଧନୀ, କେତେ ମହାଜନ ସେଠାରେ ମୂଲ୍ୟବାନ ପ୍ରାସାଦସବୁ ନିର୍ମାଣ କରି ବସବାସ କଲେ । କେତେ ରକମର ବ୍ୟବସାୟ ବାଣିଜ୍ୟ ଖୋଲିଲା । ଟଙ୍କାର କେତେ ରକମର ଖେଳ ଯେ ଲାଗିଗଲା, ତାର ସୀମା ନାହିଁ । ଏ ବିରାଟ ସହରକୁ ଲୋକେ 'ମୁନ୍ ସିଟୀ' ( ଚନ୍ଦ୍ର ନଗର ) ବୋଲି ନାମଦେଲେ । ସ୍ଥାୟୀ ଭାବରେ ବସବାସ କରି ଯେଉଁମାନେ ରହିଲେ, ସେମାନଙ୍କ ଛଡ଼ା ଆମେରିକା ଓ ଇଉରୋପ ମହାଦେଶ ମଧ୍ୟରୁ ଅନେକ ସାମୟିକ ଦର୍ଶକ ଘନ ଘନ ଆସିବାକୁ ଲାଗିଲେ । ସେମାନଙ୍କ ଯୋଗେ ସହରର ଜନତା ଅସାଧାରଣ ରୂପେ ଫୁଲି ଉଠିଲା । ପୃଥିବୀର ବିଭିନ୍ନ ଅଂଶରୁ ଯାତ୍ରୀମାନଙ୍କୁ ବହନ କରି ଜାହାଜମାନ ଫ୍ଲୋରିଡ଼ା ଅଡ଼କୁ ଧାଡ଼ି ଦେଲେ । ସମସ୍ତେ ଟାଂପାରେ ବିଶ୍ରାମ କରି ଷ୍ଟୋନୀହିଲକୁ ତୀର୍ଥଯାତ୍ରା କଲାପରି ଯାଉଥାନ୍ତି ଏବଂ ତାର ଅଲୌକିକ କାର୍ଯ୍ୟକଳାପ ଦେଖି ଫେରି ଆସୁଥାନ୍ତି । ଗନ୍‌କ୍ଳବର ପ୍ରତ୍ୟେକ କାର୍ଯ୍ୟପ୍ରତି ସମସ୍ତଙ୍କ ମନଧ୍ୟାନ ସମାନ ପରିମାଣରେ ଥାଏ । ତାର ଗୋଟାଏ ଠକ୍ ଠକ୍ ଶବ୍ଦ ମଧ୍ୟ ସମସ୍ତଙ୍କ ହୃଦୟରେ କମ୍ପନ ଆଣୁଥାଏ

ଚୁଲ୍ଲୀମାନଙ୍କରେ ଲୁହା ବୋଝେଇ ହେବା ଆରମ୍ଭରୁ ଘେରଦ ସାଧାରଣଙ୍କ ପାଇଁ ବନ୍ଦ ହୋଇ ଯାଇଥିଲା । ଦର୍ଶକମାନେ କୌଣସିମତେ ତା ଭିତରକୁ ଯାଇପାରୁ ନଥିଲେ । ତା ଭିତରେ କି କାର୍ଯ୍ୟସବୁ ହେଉଥିଲା, ତାହା ଦେଖି କୌତୂହଳ ବୃଦ୍ଧି କରିବା ସୁଯୋଗ କେହି ପାଉ ନଥିଲେ । ଲୁହା ଚୁଲ୍ଲୀମାନଙ୍କରେ ଅଗ୍ନିକାଣ୍ଡ ହେଲା, ତଳା ହେଲା, ଭୀଷଣ କମ୍ପନ ହେଲା । ଏହା ସବୁ ଲୋକଙ୍କ ଆଗ୍ରହ ଖୁବ୍ ବଢ଼ାଇଲେ ମଧ୍ୟ କେହି କୌଣସି ପ୍ରକ୍ରିୟା ଦେଖି ପାରୁନଥିଲେ । ଏଥିପାଇଁ ଗନ୍‌କ୍ଳବ ପ୍ରତି ଲୋକଙ୍କ ବିରକ୍ତି ଓ

ଅସନ୍ତୋଷ ବଢ଼ି ଉଠିଲା । ଲୋକେ ଖୁବ୍ ଉତ୍ତେଜିତ ହୋଇ ଘୋର ଆନ୍ଦୋଳନ କଲେ । ମାତ୍ର ବାର୍ବିକେନ୍ କୌଣସି କଥାକୁ ଭ୍ରୂକ୍ଷେପ କରୁ ନଥିଲେ । କାରଣ ସେ ନିଶ୍ଚିତ ରୂପେ ଜାଣିଥିଲେ ଯେ ଏଥିରେ ବିପଦ ପଦେ ପଦେ । ତେଣୁ ସେମାନଙ୍କୁ ବହୁ ଦୂରରେ ରଖିବାକୁ ତାଙ୍କର ଇଚ୍ଛା । ତୋପର ସମସ୍ତ କାମ ଶେଷ ହୋଇ ଯେତେବେଳେ ତାହା ଠିକ୍ ହୋଇଗଲା, ଆଉ ସାଧାରଣଙ୍କଠାରୁ ତାହା ଗୁପ୍ତ ରଖିବା ଆବଶ୍ୟକ ପଡ଼ିଲା ନାହିଁ । ତେଣୁ ଫାଟକ ଖୋଲିଗଲା । ଜନତା ତା ଭିତରେ ସ୍ରୋତାକାରରେ ଯାଇ ପଶିଲେ । ସମସ୍ତଙ୍କର ଆଗ୍ରହ ହେଲା, କିପରି ୯୦୦ ଫୁଟ ଭିତରକୁ ଯାଇ ତୋପର ଅଭ୍ୟନ୍ତର ଦେଖିବେ ଏବଂ ଭୂଗର୍ଭର ଏତେ ନିମ୍ନତମ ସ୍ଥାନର ଅନୁଭୂତି ଉପଭୋଗ କରିବେ । ଏଥିପାଇଁ କେନ୍ଦ୍ରରେ ଗୋଟାଏ ବଡ଼ ଡଙ୍ଗୀ ଖଞ୍ଜାହେଲା ଏବଂ ତହିଁରେ ଛଅଜଣ ଯେପରି ବସି ପାରିବେ, ତାର ସୁବିଧା କରାଗଲା । ଏଥିପାଇଁ ଜଣକୁ ଟ୧୫୯ କର ଫିସ୍ ଧାର୍ଯ୍ୟ ହେଲା । ଲୋକେ ହଜାର ହଜାର ଟିକେଟ କାଟିଲେ । ଦୁଇ ମାସରେ ଗନ୍‌କ୍ଲବ୍ ଏ ବାବଦରେ ପାଞ୍ଚଲକ୍ଷ ଟଙ୍କା ଲାଭ କଲା ।

ଗନ୍‌କ୍ଲବର ମେମ୍ବରମାନେ ତା ଭିତରେ ପ୍ରଥମେ ପଶିବାର ସୁଯୋଗ ଲାଭକଲେ । ସେମାନଙ୍କ ମଧ୍ୟରୁ ଦଶ ଜଣ ପ୍ରଥମେ ଡଙ୍ଗୀରେ ବସି ଭିତରକୁ ଗଲେ । ନିମ୍ନତଳ ଗରମ ବୋଧ ହେଉଥିଲେ ମଧ୍ୟ ସେମାନେ ତହିଁରେ କୌଣସି ଅଶାନ୍ତି ପାଇ ନଥିଲେ । ସେମାନଙ୍କ ଉତ୍ସାହ-ଅସୀମ । ତଳେ ଗୋଟିଏ ମେଜ ଉପରେ ଅନେକ ରକମର ଖାନା ପିନା ଆଗରୁ ଥୁଆହୋଇଥିଲା । ସେମାନେ ବିପୁଳ ଆନନ୍ଦରେ ପୃଥିବୀର ୯୦୦ ଫୁଟ ଗର୍ଭ ଭିତରେ ଖାନା ଖାଇ ଯେ ଆନନ୍ଦ ଉପଭୋଗ କଲେ, ତାହା ବଚନାତୀତ । ଏହା ବାର୍ବିକେନ୍‌ଙ୍କ ବିରାଟ

ଭଜନାର ପରାକାଷ୍ଠା ଥିବାରୁ ସମସ୍ତେ ଏକସଙ୍ଗରେ ତାଙ୍କୁ ଆଲିଙ୍ଗନ କରି ପ୍ରଶଂସାର ସ୍ରୋତ ତାଙ୍କ ଉପରେ ଢାଳିଦେଲେ । ସଭାପତି ମଧ୍ୟ ଉତ୍ତରରେ ସେମାନଙ୍କପ୍ରତି ଅଶେଷ କୃତଜ୍ଞତା ଦେଖାଇ ତାଙ୍କ ସାହାଯ୍ୟ ବଳରେ ସେ ଏ ଦୁରୁହ କାର୍ଯ୍ୟରୁ ଉତ୍ତୀର୍ଣ୍ଣ ହେଲେ ବୋଲି ଜଣାଇଲେ । ବୋଲିବା ବାହୁଲ୍ୟ, ସେ ଜିରାଟ ଅଭ୍ୟନ୍ତର ବିଜୁଳି ଆଲୋକରେ ଝଲମଲ ହେଉଥିଲା ଏବଂ ଅମ୍ଳଜାନ ବାମ୍ପ ଉପରୁ ଜଳକୁ ଯନ୍ତ୍ର ବଳରେ ମୁହୁର୍ମୁହୁ ପ୍ରବାହିତ ହେଉଥିଲା ।

---

—ତେର—

## ହଠାତ୍ ଏକ ଟେଲିଗ୍ରାମ୍

ଗନ୍‌କ୍ଲବ ଯେଉଁ ବିଶାଳ କାର୍ଯ୍ୟଭାର ହାତରେ ନେଇଥିଲା, ତାହା ଅପାତତଃ ସରିଗଲା । ଗୋଲା ଚନ୍ଦ୍ରଲୋକକୁ ଅଭିଯାନ କରିବା-ପାଇଁ ଅଉ ଦୁଇ ମାସ ମାତ୍ର ବାକି । ଏ ଦୀର୍ଘକାଳ ଅପେକ୍ଷା କରିବାକୁ ଲୋକଙ୍କ ଧୈର୍ଯ୍ୟ ରହିଲା ନାହିଁ । ଲୋକେ ସବୁବେଳେ କୌଣସି ସାମାନ୍ୟ ଘଟଣା ପାଇଁ ମଧ୍ୟ କ୍ଷୋଭିତ ହୋଇ, ଅଡ଼ୁକୁ ଚାହିଁ ରହିଲେ । କ୍ରମେ ହତାଶା ବଢ଼ିଲା । ବିପୁଳ ଉତ୍ତେଜନାପରେ ଗୋଟାଏ ଅବସାଦ ଭାବ ଗ୍ରାସିଆଡ଼େ ଖେଳିଗଲା ।

ଏତିକିବେଳେ ସେପ୍‌ଟେମ୍ବର ତା ୩୦ ରିଖ ଅପରାହ୍ଣ ୩ଟା ବେଳେ ବାର୍ବିକେନ୍‌ଙ୍କ ହାତରେ ଗୋଟାଏ ଟେଲିଗ୍ରାମ୍ ଆସି ପଡ଼ିଲା । ସେ ତାହା ପଢ଼ୁ ପଢ଼ୁ ତାଙ୍କ ଅଲୌକିକ ଧୈର୍ଯ୍ୟ ସତ୍ତ୍ୱେ ତାଙ୍କ ଓଠ

ଝୁଣିଗଲା, ଆଖି ବୁଜି ହୋଇଗଲା ଏବଂ କାଗଜଟା ଥର ଥର ହୋଇ ହାତରୁ ଖସି ପଡ଼ିଲା । ତହିଁରେ ଲେଖାଥିଲା :—

"ଫ୍ରାନ୍ସ, ପାରିଶ୍

"ସେପ୍‌ଟେମ୍ବର ତା ୩, ସକାଳ ୪ଟା ।

"ବାର୍ବିକେନ୍, ଟାଂପା ଟାଉନ, ଫ୍ଲୋରିଡ଼ା, ଯୁକ୍ତରାଷ୍ଟ୍ର ।

"ଗୋଲାକୁ ଗୋଲ ନ କରି ଲମ୍ବ ଓ ଗୋଲିଆ କର ।

ମୁଁ ତା ଭିତରେ ଯିବି । ଅଟଲାଣ୍ଟା ଜାହାଜରେ ପହଞ୍ଚିବି ।

"ମାଇକେଲ୍ ଅର୍ଡ୍ଡାନ୍ ।"

ଏ ବିସ୍ମୟକର ସମ୍ବାଦ ଯଦି ଟେଲିଗ୍ରାମରେ ନ ଆସି ଖାଲି ଖଣ୍ଡିଏ ଚିଠିଦ୍ୱାରେ ବନ୍ଦ ହୋଇ ଆସିଥାନ୍ତା, ବାର୍ବିକେନ୍ ଏତେ ବିଚଳିତ ହୋଇ ନଥାନ୍ତେ । ଟେଲିଗ୍ରାମ୍‌ରେ ଆସିବା ଦ୍ୱାରା ଫ୍ରେଞ୍ଚ୍, ଆଇରିଶ୍, ନିଉଫାଉଣ୍ଡ୍‌ଲାଣ୍ଡ ଓ ଆମେରିକାର ଟେଲିଗ୍ରାଫ୍ କ୍ଲର୍କମାନେ ଫ୍ରେଞ୍ଚ୍ ଲୋକର ଏ ଉପହାସଟା ଜାଣି ପାରିଲେ । ତେଣୁ ବାର୍ବିକେନ୍‌ଙ୍କ ଛାତିରେ ଗୋଟାଏ ବଡ଼ ଆଘାତ ଲାଗିଲା । ଫରାସୀ ଲୋକଙ୍କର ଉପହାସଟା ଗୋଟାଏ ସ୍ୱଭାବସିଦ୍ଧ ଦୁର୍ଗୁଣ । ସେମାନେ ଯେ କୌଣସି କାର୍ଯ୍ୟପାଇଁ ଆଗ ଗୋଟାଏ ଉପହାସ କରି ବସନ୍ତି । ନୋହିଲେ ପୃଥିବୀରେ ଏପରି ପାଗଳ କିଏ ଅଛି, ଯେ ଏପରି ଗୋଟାଏ ଦୁଃସାହସିକ ଅଭିଯାନ ପାଇଁ ଆଗଭର ହେବ ?

ଟେଲିଗ୍ରାମ୍‌ଟା ଏପରି ଗୋଟାଏ ବ୍ରତ୍ତାଦେଇ ଆସିବା ଦ୍ୱାରା ଖବରଟା ଚାରିଆଡେ ବ୍ୟାପ୍ତ ହୋଇଗଲା । ଯୁକ୍ତରାଷ୍ଟ୍ର ଓ ଆମେରିକାର ଅନ୍ୟ ରାଷ୍ଟ୍ରମାନଙ୍କ ମଧ୍ୟରେ ଏ ଖବର ନାନା ରଙ୍ଗରେ ଖୁବ୍

ଜୋରରେ ପ୍ରସ୍ତୁତ ହେଲା । ତେଣୁ ବାର୍ବିକେନ୍ ଅଳ୍ପ ବିଶେଷ କାଳ ବିଳମ୍ବ ନ କରି ଛାଂପା ଟାଉନରେ ଥିବା ତାଙ୍କ ସହକର୍ମୀମାନଙ୍କୁ ନେଇ ଗୋଟିଏ ବୈଠକ କଲେ ଏବଂ ଟେଲିଗ୍ରାମଟି ସମସ୍ତଙ୍କୁ ଦେଖାଇଲେ । ସମସ୍ତେ ବହୁ ଆଲୋଚନାପରେ ମନେ କଲେ, ଏଇଟା ଗୋଟାଏ ଫଜିସୀ ଥଟ୍ଟା । ବୋଧହୁଏ ମାଇକେଲ୍ ଅର୍ଡ଼ାନ ନାମରେ କୌଣସି ଲୋକ ପ୍ରକୃତରେ ନାହିଁ । ମାତ୍ର ବାର୍ବିକେନ ଏ ବିଷୟରେ କୌଣସି ମତ ବ୍ୟକ୍ତ କଲେ ନାହିଁ । ସେ ସବୁବେଳେ ଗମ୍ଭୀର ଭାବଧରି ଘଟଣା ପରଂପରାକୁ ଅପେକ୍ଷା କରିବାକୁ ଲାଗିଲେ ।

ଲୋକେ କିନ୍ତୁ ଏ ପ୍ରସ୍ତାବରେ ଧୀରସ୍ଥିର ରହିପାରିଲେ ନାହିଁ । ସେମାନେ ବାର୍ବିକେନଙ୍କ ବଙ୍ଗଳା ନିକଟକୁ ଅସି ତାଙ୍କ ମତ ଜାଣିବାକୁ ଦୃଢ଼ଭାବରେ ଦାବୀ କଲେ । ବାର୍ବିକେନ୍ ଜନତା ନିକଟକୁ ଯାଇ ସେମାନଙ୍କୁ ବୁଝାଇ ଦେଲେ ଯେ, ଏ ବିଷୟରେ ତାଙ୍କୁ ଅଧିକ କିଛି ଜଣାନାହିଁ । ତେବେ ଧୀର ସ୍ଥିର ଭାବରେ ଅବସ୍ଥାକୁ ଲକ୍ଷ୍ୟ କରିବାକୁ ହେବ । ସମୟ କ୍ରମେ ସବୁ ଜଣା ପଡ଼ିଯିବ ।

ତା ପରେ ସେ ଟେଲିଗ୍ରାଫ୍ ଅଫିସକୁ ଯାଇ ନିମ୍ନଲିଖିତ ଟେଲିଗ୍ରାମ୍ ଲିଭର୍‌ପୁଲ୍‌କୁ ପଠାଇଲେ । "ଆଟଲାଣ୍ଟା କି ରକମର ଜାହାଜ ? କେବେ ଇଉରୋପ ଛାଡ଼ୁଛି ? ମାଇକେଲ ଅର୍ଡ଼ାନ୍ ନାମରେ ଜଣେ ଲୋକ ତହିଁରେ ଆସୁଛି କି ?" ଦୁଇ ଘଣ୍ଟା ପରେ ଏହାର ଜବାବ ଆସିଲା, "ଆଟଲାଣ୍ଟା ନାମକ ଯାତ୍ରୀବାହୀ ଜାହାଜ ଅକ୍ଟୋବର ତା ୨ ରିଖ ଦିନ ଲିଭରପୁଲ୍‌ଠାରୁ ଟାଂପା ଅଭିମୁଖେ ଯାତ୍ରା କରିଛି । ତାର ଯାତ୍ରୀ ତାଲିକାରେ ମାଇକେଲ୍ ଅର୍ଡ଼ାନ୍ ନାମରେ ଜଣେ ଫରାସୀ ଲୋକର ନାମ ଅଛି ।"

ଏହି ଟେଲିଗ୍ରାମ୍ ପାଇ ବାର୍ବିକେନଙ୍କ ଆଖି ଜଳି ଉଠିଲା । ସେ ହାତ ମୁଠା କରି ଭୁଟ୍ ଭୁଟ୍ ହୋଇ କହିଲେ, "ଏ କଥା କେବେ ସତ ! ଏପରି ଗୋଟାଏ ଫରାସୀ ଲୋକ ଯଥାର୍ଥରେ ଅଛି । ପନ୍ଦର ଦିନ ଭିତରେ ଏଠାରେ ଆସି ପହଞ୍ଚିବ । ଗୋଟାଏ ପାଗଳ ସେ । ମୁଁ ତା କଥା ଶୁଣିବି ନାହିଁ ।" ଏ କଥା ସେ ଭାବିଲେ ମଧ୍ୟ ବ୍ରେଡ଼୍-ଉଇଲ୍ କମ୍ପାନୀକୁ ସେହି ସନ୍ଧ୍ୟାରେ ତାରରେ ଜଣାଇ ଦେଲେ— "ନୂଆ ଆଦେଶ ପାଇବାଯାଏ ଗୋଲା ଅଭଟା କାମ ସ୍ଥଗିତ ରଖନ୍ତୁ ।"

ଏ ସବୁ କଥା ମାଇକେଲ୍ ଅର୍ଡାନ୍‌କୁ କେନ୍ଦ୍ର କରି ଘଟିବାକୁ ଲାଗିଲା । ସମଗ୍ର ଆମେରିକା ଘଟଣାର ଏପରି ଆକସ୍ମିକ ବିପର୍ଯ୍ୟୟରେ ବିଚଳିତ ହୋଇ ଉଠିଲା । ବ୍ୟବସାୟ ବାଣିଜ୍ୟ, ପାଠପଢ଼ା, କଚେରୀ କାମ ଆଦି ସବୁ କ୍ଷେତ୍ରରେ ଏହାର ତୁମୁଳ ଆଲୋଚନା ଓ ଯୁକ୍ତିତର୍କ ଚାଲିଲା । ଲୋକେ ଆଟଲାଣ୍ଟା ଜାହାଜରେ ଅର୍ଡାନଙ୍କୁ ଦେଖିବା ପାଇଁ ଶହ ଶହ ସଂଖ୍ୟାରେ ଟାଂପା ଅଡ଼କୁ ଧାଇଁଲେ । ଏହାଦ୍ୱାରା ଟାଂପାର ଲୋକସଂଖ୍ୟା ଚାରିଗୁଣ ବଢ଼ିଗଲା । ଲୋକେ ବସା ଘର ବା ହୋଟେଲ୍ ଅଭାବରେ ବାହାରେ ତମ୍ବୁମାନ ପକାଇ ରହିଲେ ।

ଅକ୍ଟୋବର ତା ୨୦ ରିଖ ସକାଳ ୯ଟା ବେଳେ ବାହାମା ପ୍ରଣାଳୀର ସୀମା ରେଖାରେ ଘନ ଧୂମ ପଟଳ ଦେଖାଗଲା । ତାର ଦୁଇ ଘଣ୍ଟା ପରେ ଗୋଟାଏ ବିରାଟ ଜାହାଜ ସମସ୍ତଙ୍କ ଦୃଷ୍ଟିରେଖା-ଭିତରକୁ ଆସିଲା । ଟାଂପାର ଲୋକେ ଜାଣିଲେ, ତାହାହିଁ ଆଟଲାଣ୍ଟା । ଠିକ୍ ୦ଟା ବେଳେ ଏ ଜାହାଜ କୂଳକୁ ଆସି ନଙ୍ଗର କଲା । ତାର ନଙ୍ଗର ଭୂଇଁ ସ୍ପର୍ଶ କରିଛି କି ନାହିଁ, ହଠାତ୍ ପାଞ୍ଚଶହ ପର୍ଯ୍ୟନ୍ତ ଉତ୍ସାହୀ ଲୋକେ ଉର୍ଦ୍ଧ୍ୱ ହୋଇ ଜାହାଜ ପାଖରେ ଯାଇ ପହଞ୍ଚିଲେ ।

ସମସ୍ତଙ୍କ ଆଗେ ବାର୍ବ୍‌କେନ୍ ପଟଛନ ଉପରକୁ ଡେଇଁ ପଡ଼ି ମାଇକେଲ ଅର୍ଡ଼ାନ ନାମଧର ଉଚ୍ଚସ୍ୱରରେ ଡାକିଲେ । ଜଣେ ଦୀର୍ଘକାୟ ଶ୍ୱେତାଙ୍ଗ ତାଙ୍କ ନିକଟକୁ ଆସି "ହ୍ୱାଇର" ବୋଲି ଜଣାଇଲେ । ଏ ସମୟରେ ସହସ୍ରାଧିକ ଲୋକ ପଟଛନ ଉପରକୁ ଉଠିଯାଇ ମାଇକେଲ ନାମରେ ଗୋଟାଏ ଆନନ୍ଦ ସୂଚକ ଚିତ୍କାର କଲେ ଏବଂ ତାଙ୍କୁ ଘେରିଯାଇ ତାଙ୍କ କର ମର୍ଦ୍ଦନ କରିବାକୁ ଲାଗିଲେ । ଏତେ କର ମର୍ଦ୍ଦନରେ ତାଙ୍କ ଝିପ ପୀଡ଼ା ହୋଇଗଲା । ତେଣୁ ସେ ଜନତା ଭିତରୁ ହଟି ଯାଇ ନିଜ ବଖରା ଭିତରେ ପଶିଗଲେ । ସେ ପଶିବା ସଙ୍ଗେ ସଙ୍ଗେ ବାର୍ବ୍‌କେନ୍ ମଧ୍ୟ ତାଙ୍କ ସଙ୍ଗେ ପଶିଲେ ।

ନିରୋଳା ହୋଇଯିବାରୁ ମାଇକେଲ୍ ପଚାରିଲେ, "ଆପଣ କଣ ସଭାପତି ବାର୍ବ୍‌କେନ୍ ?"

ସଭାପତି, "ହଁ ।"

ବାର୍ବ୍‌କେନ୍ ତାଙ୍କର ଯେପରି ଜଣେ ବଂଶ ବର୍ଷୀୟ ବନ୍ଧୁ, ଏହି ଭାବରେ ସେ ତାଙ୍କୁ ଆଲିଙ୍ଗନ ଓ ଘନ ଘନ କର ମର୍ଦ୍ଦନ କରି ପ୍ରଶ୍ନ କରିଗଲେ—

"ବାଃ ବାଃ, ନମସ୍କାର, ବାର୍ବ୍‌କେନ, ନମସ୍କାର । ସବୁ ଭଲ ତ ? ଘରେ ପିଲାଏ ଭଲ ? ଆଜିସବୁ ଅଚ୍ଛା ? ଷ୍ଟୋନହିଲ ଖବର କଣ ?"

ସଭାପତି ଏ ସବୁର କିଛି ଉତ୍ତର ନ ଦେଇ ପଚାରିଲେ, "ଆପଣଙ୍କ ଯିବା କଥା ଠିକ୍ ?"

"ସମ୍ପୂର୍ଣ୍ଣ ଠିକ୍ ।"

"କୌଣସି କଥା ବାଧା ଦେବ ନାହିଁ ତ ?"

"ନା, ମୁଁ ଯେପରି ଭାବରେ ଜଣାଇଥିଲି, ଆପଣ ଗୋଲାର ଆକାର ସେପରି କରିଛନ୍ତି ?"

"ମୁଁ ଆପଣଙ୍କ ଅପେକ୍ଷାରେ ଅଛି । ତେବେ ଆପଣ ଠିକ୍ ଭାବିଛନ୍ତି ଏପରି ନିଷ୍ପତ୍ତି କରିଛନ୍ତି ?"

"ନିଶ୍ଚୟ । ମୋର ଆଉ କି ସମୟ ନଷ୍ଟ କରିବାକୁ ଅଛି ? ଚନ୍ଦ୍ରକୁ ଅଭିଯାନ ପାଇଁ ଏହା ଗୋଟାଏ ଶୁଭ ମୁହୂର୍ତ୍ତ । ଏଥିରେ ମୋର ଲାଭ । ମୁଁ ଖୁବ୍ ଭାବିଚିନ୍ତି ଏପରି ନିଷ୍ପତ୍ତି କରିଛି ।"

"ତେବେ ଏଥିପାଇଁ ଆପଣଙ୍କ ପ୍ରସ୍ତାବ କଅଣ ? ଏ କାର୍ଯ୍ୟ କରିବାର ଉପାୟ କଣ ?"

"ଉପାୟ ଖୁବ୍ ଚମତ୍କାର । ମୁଁ ଗୋଟିଏ କଥା କହୁଛି । ମୋର ଯାହା କହିବାର କଥା, ମୁଁ ତାହା ଥରେ ମାତ୍ର କହିବି । ଏଥିପାଇଁ ମୋର ପ୍ରସ୍ତାବ, ଆପଣଙ୍କ କ୍ଲବର ମେମ୍ବରମାନେ, ଆପଣଙ୍କ ବନ୍ଧୁମାନେ ଓ ନଗରବାସୀମାନେ ସମସ୍ତେ କାଲି ଗୋଟାଏ ଜାଗାରେ ଏକତ୍ର ହୁଅନ୍ତୁ । ମୁଁ ସେଠାରେ ମୋର ପ୍ରସ୍ତାବ ଜଣାଇବି । ସେମାନେ ଯାହା ପଚାରିବେ, ତାର ଜବାବ ଦେବି । ଏପରି ହୋଇ ପାରିବ ?"

"ନିଶ୍ଚୟ ହୋଇ ପାରିବ ।" ଏହା କହି ବାର୍ବିକେନ ଧଡ଼ାକୁ ଆସି ଲୋକଙ୍କୁ ଏ ଖବର ଜଣାଇ ଦେଲେ ଏବଂ ତାହାଙ୍କ ଛାଡ଼ି ଚାଲି ଯିବାକୁ ଅନୁରୋଧ କଲେ । ସମସ୍ତେ ଏପରି ଗୋଟାଏ ଅପ୍ରତ୍ୟାଶିତ ସୁଯୋଗକୁ ସ୍ୱାଗତ କରି ଉତ୍ସାହର ସହିତ ତାହାଙ୍କ ଛାଡ଼ିଚାଲିଗଲେ ।

—୦୪୦—

## ବିରାଟ ସଭା

ସକାଳ ହେଉ ହେଉ ଲୋକେ ଅସମ୍ଭାଳ ଆବେଗରେ ଘର-ମାନଙ୍କରୁ ପଦାକୁ ବାହାରି ପଡ଼ିଲେ ଏବଂ ଅର୍ଡ଼ାନଙ୍କ ଭାଷଣ ଶୁଣିବାକୁ ଏଣେତେଣେ ଧାଇଁ ବୁଲିଲେ । ଏତେବେଳଯାଏ ସ୍ଥାନ ଓ ସମୟ ଧାର୍ଯ୍ୟ ହୋଇ ନ ଥିଲା । ତେଣୁ ଲୋକେ ସହର ମଧ୍ୟରେ ଏଣେ ତେଣେ ଧାଁ ଧୌଡ଼ କରି କେଉଁଠାରେ ସଭା ହେବ ବୋଲି ଜାଣିବାକୁ ବ୍ୟାକୁଳ ହେଲେ । ଏ ସମୟରେ ସଭାପତି ସାଧାରଣଙ୍କୁ ଜଣାଇ ଦେଲେ ଯେ ଅପରାହ୍ନ ୩ଟା ସମୟରେ ନବନିର୍ମିତ ଟାଉନ୍‌ହଲ୍‌ରେ ମାଇକେଲ୍ ଅର୍ଡ଼ାନ୍ ତାଙ୍କ ଭାଷଣ ଦେବେ । ଏ ସମ୍ବାଦରେ ଲୋକେ ଟିକିଏ ଧୀରସ୍ଥିର ହୋଇଗଲେ ଏବଂ ନିଜ ନିଜ ଖାନାପିନା ଶୀଘ୍ର ଶେଷ କରିବାକୁ ବାହାରି ଗଲେ ।

ସଭାପତି ୧୨ଟା ବେଳେ ଟାଉନ୍‌ହଲ୍‌କୁ ଯାଇ ଦେଖିଲେ, ଅସଂଖ୍ୟ ଜନତା ତା ଭିତରେ ରୁଦ୍ଧ ହୋଇ ଯାଇଛନ୍ତି ଏବଂ ଅଗଣିତ ନରମୁଣ୍ଡ ବାହାରେ ରହି ଭିତରକୁ ଯିବାକୁ ଠେସା ଠେସି କରୁଛନ୍ତି । ଏ ବିରାଟ ଜନତାକୁ ସନ୍ତୁଷ୍ଟ କରିବାକୁ ହେଲେ ଗୋଟାଏ ଖୋଲା ଜାଗାରେ ସଭା ହେବା ଦର୍କାର । ତେଣୁ ସେ ଟାଉନ୍‌ହଲ୍ ପ୍ରସ୍ତାବ ତ୍ୟାଗ କରି ନଗର ବାହାରେ ଗୋଟାଏ ବିରାଟ ପଡ଼ିଆ ଠିକ୍ କଲେ । ତାହାଉପରୁ ପ୍ରକାଣ୍ଡ ପାଲମାନ ଅଣାଇ ସମଗ୍ର ପଡ଼ିଆରେ ଟାଙ୍ଗି ଦେଲେ । ତତ୍ପରେ ଶ୍ରୋତାଙ୍କ ବହୁ ପରିମାଣରେ କମିଗଲା । ଏଠାରେ ସଭା ହେବା ଖବର ଘୁରିଆଡ଼େ ସ୍ପଷ୍ଟ ହୋଇ-ଯିବାରୁ ଲୋକେ ସେଠାକୁ ଧାଇଁଲେ ।

ସେ ପ୍ରକାଣ୍ଡ ସାମିଆନା ତଳେ ଯେତେ ଲୋକ ଜମିଲେ, ସେମାନଙ୍କ ସଂଖ୍ୟା ତିନି ଲକ୍ଷରୁ କମ୍ ହେବ ନାହିଁ । ସମସ୍ତେ ଅସୀମ ଆଗ୍ରହରେ ଅର୍ଡ୍ଡାନଙ୍କୁ ଚାହିଁ ରହିଲେ । ଠିକ୍ ୩ଟା ବେଳେ ମାଇକେଲ୍ ଅର୍ଡ୍ଡାନ୍ ଗନ୍ କ୍ଲବର ମେମ୍ବରମାନଙ୍କ ସହ ସଭା ମଞ୍ଚରେ ଆସି ପହଞ୍ଚିଲେ । ତାଙ୍କୁ ଦେଖି ଜନତା ବିପୁଳ ଆଗ୍ରହରେ ଅଭିବାଦନ କଲା । ବାର୍ବିକେନ ଓ ଅର୍ଡ୍ଡାନଙ୍କ ନାମରେ ଜୟଧ୍ୱନି ହେଲା । ଅର୍ଡ୍ଡାନ୍ ସମସ୍ତଙ୍କ ଜୟଧ୍ୱନିର ଉତ୍ତରରେ ହସି ହସି ନମସ୍କାର କରି ଯେତେବେଳେ ଠିଆ ହେଲେ, ଲୋକେ ଅଦ୍ଭୁତ ଆନନ୍ଦସୂଚକ ଧ୍ୱନି କଲେ । ଏକ ତୃତୀୟାଂଶ ଲୋକ ତାଙ୍କୁ ଦେଖିପାରିଲେ ଓ ତାଙ୍କ କଥା ଶୁଣିପାରିଲେ, ଆଉ ଅଧେ ତାଙ୍କୁ କେବଳ ଦେଖିପାରିଲେ, ମାତ୍ର କଥା ଶୁଣି ପାରିଲେ ନାହିଁ । ଶେଷ ଅଂଶର ଲୋକେ ତାଙ୍କୁ ଦେଖିପାରିଲେ ନାହିଁ ବା ତାଙ୍କ କଥା ଶୁଣି ପାରିଲେ ନାହିଁ ।

ଅର୍ଡ୍ଡାନ୍ କହିଲେ, "ବନ୍ଧୁଗଣ ! ଏ ବିଷମ ଗରମରେ ମୁଁ ଆପଣମାନଙ୍କୁ ମୋ ପ୍ରସ୍ତାବର କେତେକ କଥା କହିବାକୁ ଚାହାଉଛି । ମୋର ବକ୍ତୃତା ଦେବା ଅଭ୍ୟାସ ନାହିଁ ବା ମୁଁ ସେପରି ଗୋଟାଏ ପଣ୍ଡିତ ନୁହେଁ । କିନ୍ତୁ ମୋର ପ୍ରିୟ ବନ୍ଧୁ ବାର୍ବିକେନ୍ ମୋତେ କହିଲେ ଯେ, ମୁଁ ମୋ ଲକ୍ଷ୍ୟ ବିଷୟରେ କେତେକ କଥା ଆପଣମାନଙ୍କୁ କହିଲେ, ଆପଣମାନେ ସନ୍ତୁଷ୍ଟ ହେବେ । ତେଣୁ ମୁଁ ଯାହା ତାହା କରି ଦିପଦ କହିବାକୁ ଠିଆ ହୋଇଛି । ମୋର କୌଣସି ଭୁଲ୍ ଭାଲ୍ ହେଲେ ଧରିବେ ନାହିଁ ।"

ଏହି ଅଭିମାନଶୂନ୍ୟ କେତେକ ପଦ ଲୋକଙ୍କ ମନକୁ ଖୁବ୍ ଲାଗିଲା । ସମସ୍ତେ ଅର୍ଡ୍ଡାନଙ୍କୁ ଭୂରି ପ୍ରଶଂସା କରି କହିବାକୁ ଉତ୍ସାହିତ

କଲେ । ଅର୍ଜାନ୍ ନୀରବ ହେବାକୁ ସମସ୍ତଙ୍କୁ ସଙ୍କେତ କରି ପୁଣି କହିଲେ:—

"ବନ୍ଧୁ ଗଣ ! ଉତ୍ସାହ ଉନ୍ମାଦନାରେ ଭାସିଯାନ୍ତୁ ନାହିଁ । ମୋ କଥା ଧୀରସ୍ଥିର ଭାବରେ ଶୁଣନ୍ତୁ । ପ୍ରଥମେ ମନେରଖନ୍ତୁ, ଆପଣମାନେ ମୋଭଳି ଗୋଟାଏ ଅଜ୍ଞାନୀ ଲୋକ ସଙ୍ଗେ କଥା ହେଉଛନ୍ତି । ମୋର ଏହି ଜ୍ଞାନହୀନତା କାର୍ଯ୍ୟକ୍ଷେତ୍ରର ଯାବତ ଅସୁବିଧାକୁ ଅବହେଳା କରୁଛି । ସେହି ଦୃଷ୍ଟିରୁ ମୁଁ ଗୋଟାଏ ଗୋଳା ସାହାଯ୍ୟରେ ଚନ୍ଦ୍ରଲୋକ ପର୍ଯ୍ୟନ୍ତ ଯିବାକୁ ସହଜ, ସରଳ ଓ ସ୍ୱାଭାବିକ ବୋଲି ମନେ କରୁଛି । ମନୁଷ୍ୟ ପ୍ରଥମେ ଗୁରୁଣ୍ଡିଲା, ତାପରେ ଚାଲିଲା । ତାପରେ ଶଗଡ଼, ଗାଡ଼ି ଓ ଶେଷରେ ରେଲରେ ବସି ମଧ୍ୟ ଧାଇଁଲା । ମୋ ମତରେ ଗୋଳା ସେହିପରି ଭବିଷ୍ୟତର ଗୋଟିଏ ଯାନ । ଏ ଗ୍ରହ ଉପଗ୍ରହମାନେ କଣ ଈଶ୍ୱରଙ୍କ ନିକ୍ଷିପ୍ତ ଗୋଟାଏ ଗୋଟାଏ ଗୋଳା ନୁହନ୍ତି କି ? ଆପଣମାନେ କହିବେ, ଆମ ଗୋଳାର ଗତି ଅତି ଭୀଷଣ ତା ନୁହେଁ । ଏଗ୍ରହମାନେ ଅତି ଭୀଷଣତର ବେଗରେ ଧାଉଁଛନ୍ତି । ଆମର ଏ ପୃଥିବୀ ଆମ ସମସ୍ତଙ୍କୁ ଧରି ଗୋଳା ଗତିର ତିନିଗୁଣ ଅଧିକ ବେଗରେ ମହାଶୂନ୍ୟ ମଧ୍ୟରେ ଧାଇଁଛି । ମୋର ସାମାନ୍ୟ ଉଦାହରଣରୁ ଆପଣମାନେ ସବୁ ବୁଝି ପାରିବେ । ନେପଚ୍ୟୁନ୍‌ର ଗତି ଘଣ୍ଟାରେ ପନ୍ଦର ହଜାର ମାଇଲ, ଇଉରେନସ୍‌ର ଏକୋଇଶ ହଜାର ମାଇଲ, ଶନିର ୨୭,୫୭୪ ମାଇଲ, ବୃହସ୍ପତିର ୩୭,୩୭୫ ମାଇଲ, ମଙ୍ଗଳର ୭୭,୦୩୩ ମାଇଲ, ପୃଥିବୀର ୮୨,୫୦୦ ମାଇଲ, ଶୁକ୍ରର ୯୭,୫୭୦ ମାଇଲ ଓ ବୁଧର ୧,୫୨,୫୭୦ ମାଇଲ । କେତେକ ଧୂମକେତୁ ତାଙ୍କ କକ୍ଷରେ ୪୨ ହଜାର ମାଇଲ ବେଗରେ ଗତି କରନ୍ତି । କିନ୍ତୁ

ଆମ ଗତିର ବେଗ ମୋଟେ ୨୯,୭୦୦ ମାଇଲ । ଏହା ସମୟ କ୍ରମେ ବୃଦ୍ଧି ପାଇବ ଏବଂ ଅଟମିକ ଓ ବିଦ୍ୟୁତ ଆମ ଗତିକୁ ନିୟନ୍ତ୍ରିତ କରିବ ।"

ସମସ୍ତେ କରତାଳି ଦେଇ ଏହା ଅନୁମୋଦନ କଲେ । ତାପରେ ଅର୍ଜ୍ଜୋନ୍ କହିଲେ, "ବନ୍ଧୁଗଣ ! ସଂକୀର୍ଣ୍ଣମନା ଲୋକେ ମନେ କରନ୍ତି, ଆମ୍ଭେମାନେ ଖାଲି ଏହି ପୃଥିବୀରେ ଆବଦ୍ଧ, ଆଉ କୁଆଡ଼େ ଯିବା ଆମ ସୀମାର ବହିର୍ଭୁତ । ଗ୍ରହଲୋକକୁ ଯିବା ଆମର ଅଧିକାର ନାହିଁ । ତାହା କେବେ ନୁହେଁ । ଆମେ ଆଜି ଚନ୍ଦ୍ରଲୋକକୁ ଯାଉଛୁଁ । କାଲି ଅନ୍ୟଗ୍ରହମାନଙ୍କୁ ଯିବୁଁ । ଲିଭରପୁଲରୁ ନିଉୟର୍କ ପର୍ଯ୍ୟନ୍ତ ଯେପରି ସହଜରେ, ସରଳ ଭାବରେ, ଦ୍ରୁତବେଗରେ ଓ ନିଶ୍ଚିନ୍ତ ଭାବରେ ଯିବା ଆସିବା କରି ପାରୁଛୁଁ, ସେପରି ନକ୍ଷତ୍ରମାନଙ୍କୁ ମଧ୍ୟ ଯାଇ ଆସି ପାରିବୁଁ । ଦୂରତା ଗୋଟାଏ ସାଧାରଣ କଥା । ତାହା ଶେଷରେ ଶୂନ୍‌ରେ ଆସି ପହଞ୍ଚିବ ।"

ଲୋକେ ଏଥିରେ ଏକମତ ଥିବାର ତାଙ୍କ ଭାବଗତିରୁ ଜଣାଗଲା ନାହିଁ । ତେଣୁ ଅର୍ଜ୍ଜୋନ୍ ହସି ହସି କହିଲେ:—

"ଆପଣମାନେ ମୋ କଥାର ଉଦ୍ଦେଶ୍ୟ ଧରି ପାରି ନାହାନ୍ତି । ମୁଁ ବୁଝାଇ ଦେଉଛି । ଆପଣମାନେ ଜାଣନ୍ତି, ଗୋଟାଏ ଏକ୍‌ସପ୍ରେସ ଗାଡ଼ି ଚନ୍ଦ୍ରଲୋକରେ ପହଞ୍ଚିବାକୁ କେତେ ସମୟ ଲାଗିପାରେ ? ତିନିଶହ ଦିନରୁ ଅଧିକ ନୁହେଁ । ମୋଟେ ୨, ୨୯, ୨୩୦ ମାଇଲ, ଏଇତ ? ଏହା ତ ପୃଥିବୀ ପରିଧିର ନଅ ଗୁଣ ସୁଦ୍ଧା ନୁହେଁ । କେତେକ ନାବିକ ସେମାନଙ୍କ ଜୀବିତ କାଳରେ ଏତେଦୂର ଭ୍ରମଣ କରିନଥିବେ । ମୁଁ ଗଲେ ରାସ୍ତାରେ ମୋଟେ ୯୮ ଘଣ୍ଟା ଲାଗିବ ।

ଆପଣ ଭାବୁଛନ୍ତି, ଏହା ଗୋଟାଏ ଦୀର୍ଘତମ ପଥ ଏବଂ ଏପରି ଗୋଟାଏ ଦୁଃସାହସିକ କାର୍ଯ୍ୟ କରିବା ପୂର୍ବରୁ ବହୁତ ଭାବିବା ଦରକାର । କିନ୍ତୁ ମୁଁ ଆଜି ଯଦି ନେପଚ୍ୟୁନ୍‌କୁ ଯାଉଥାନ୍ତି, ତେବେ ଆପଣମାନେ ମୋତେ କଅଣ କହନ୍ତେ ? ସୂର୍ଯ୍ୟଠାରୁ ନେପ୍‌ଚ୍ୟୁନ୍‌ର ଦୂରତା ତିନିଶହ ଚଉତିରିଶ କୋଟି ଦଶ ଲକ୍ଷ ମାଇଲ୍ । ଅନ୍ୟାନ୍ୟ ତାରାମାନଙ୍କ ଦୂରତା ତୁଳନାରେ ଏହା କିଛି ନୁହେଁ । ଯେଉଁ ବିଶ୍ୱ ସୂର୍ଯ୍ୟଠାରୁ ଆରମ୍ଭ ହୋଇ ନେପ୍‌ଚ୍ୟୁନ୍‌ରେ ସରିଛି, ମୁଁ ସେ ସମ୍ବନ୍ଧରେ କଣ ମନେ କରୁଛି, ଶୁଣିବେ ? ମୋ ମତରେ ଏହି ସୌର ଜଗତ ଗୋଟାଏ ସମାନ ଗୁଣବିଶିଷ୍ଟ ଜଡ଼ ପିଣ୍ଡ ଏବଂ ଏହାର ଅନ୍ତର୍ଗତ ପ୍ରତ୍ୟେକ ଗ୍ରହ ଉପଗ୍ରହ ପରସ୍ପରର ନିକଟବର୍ତ୍ତୀ ଓ ଏକ ପରିବାରଭୁକ୍ତ । ଦୂରତା ଗୋଟାଏ ମାହାଲିଆ ଦେଇ । ଦୂରତା କିଛି ନୁହେଁ ।”

ଲୋକେ ଏ କଥା ଶୁଣି ଖୁବ୍ ଖୁସି ହେଲେ ଓ ଖୁବ୍ କରତାଳି ଦେଲେ । “ଠିକ୍ କଥା ଠିକ୍ କଥା” ବୋଲି ଘୁରିଅଜୁ ଚିତ୍କାର ଉଠିଲା । ଅର୍ଡ଼ାନ୍ ପୁଣି କହିଲେ,

“ମୋ କଳ୍ପନା ମୁଁ ପ୍ରାୟ ପ୍ରକାଶ କରି ଦେଲି । ଯଦି ଆପଣମାନେ ଏହା ବୁଝିପାରି ନଥିବେ, ତେବେ ତାହା ମୋ ଭାଷା-ଜ୍ଞାନର ଦୋଷ, ଅଜ୍ଞତା ଓ ବୁଝାଇବା ବିଷୟରେ ଅପଟୁତା । ସାହାହେଉ ମୁଁ ପୁଣି କହୁଛି, ପୃଥିବୀଠାରୁ ଚନ୍ଦ୍ର ଯେ ଦୂରତା ତାହା କିଛି ନୁହେଁ । ଏଥିପାଇଁ ମୁଣ୍ଡ ଘୁରାଇବା ଅନାବଶ୍ୟକ । ଏପରି ଅବସ୍ଥା ନିକଟରେ ଆସିପାରେ, ଯହିଁରେ ଗୋଲାର ଗୋଟାଏ ଟ୍ରେନ୍ ଚନ୍ଦ୍ର ଯାଏ ଯିବା ଆସିବା କରିବ ଏବଂ ଲୋକେ ସହଜରେ ଓ ନିର୍ଭୟରେ ତହିଁରେ ଯାଇ ଚନ୍ଦ୍ର ସଙ୍ଗେ ସମ୍ପର୍କ ରଖି ପାରିବେ ।”

ଅର୍ଡ଼ାନ୍ଙ୍କ କଥାରେ ଚାରିଆଡ଼ୁ ଆନନ୍ଦଧ୍ୱନି ଉଠିଲା ଏବଂ ତାଙ୍କ କଥା ମନଦେଇ ଶୁଣିବାକୁ ସମସ୍ତେ ପାଠିକଲେ । ଅର୍ଡାନ୍ ମଧ୍ୟ ଏହି ବିରାଟ କଳ୍ପନାର କବି ବାର୍ବେନଙ୍କ ନାମରେ ଜୟଧ୍ୱନି କଲେ । ଲୋକଙ୍କ ଆଡ଼ୁ ତାର ବିପୁଳ ପ୍ରତିଧ୍ୱନି ଉଠିଲା । ତା ପରେ ତାଙ୍କୁ ସେ ଯେଉଁ ପ୍ରଶ୍ନ କରିବାକୁ ଚାହାନ୍ତି ତାହା କରନ୍ତୁ ବୋଲି ଅର୍ଡାନ୍ ସମସ୍ତଙ୍କୁ ଅନୁରୋଧ କଲେ ।

ସଭାପତି ବାର୍ବେନ୍ଙ୍କ ବିରାଟ କଳ୍ପନା ସଙ୍ଗେ ଖାପ ଖାଉଥିବାଭଳି କଥା ଅର୍ଡ଼ାନ୍ କହିବାରୁ ତାଙ୍କ ମନ ତହିଁରେ ମାତି ଯାଇଥିଲା । ସେ ଅର୍ଡ଼ାନଙ୍କୁ ମନେ ମନେ ଖୁବ୍ ପ୍ରଶଂସା କରୁଥିଲେ । ଗୋଟିଏ ବିଶେଷ କଥା ତାଙ୍କୁ ପଚାରିବାକୁ ଇଚ୍ଛାକରି ସେ କହିଲେ, "ଚନ୍ଦ୍ରରେ କୌଣସି ଜୀବ ଜନ୍ତୁ ଅଛନ୍ତି କି ନା ? ଏ ବିଷୟରେ ଆପଣଙ୍କର ମତ କଅଣ ?"

ଅର୍ଡ଼ାନ୍ ସ୍ମିତ ହାସ୍ୟ କରି କହିଲେ, "ବହୁମାନ୍ୟ ସଭାପତି ! ତାହା ଗୋଟିଏ ଅମୀମାଂସିତ ସମସ୍ୟା ହୋଇ ଏ ପର୍ଯ୍ୟନ୍ତ ରହିଅଛି । ମାତ୍ର ମୋର ବ୍ୟକ୍ତିଗତ ମତ ଯେ, ଚନ୍ଦ୍ରରେ ଜୀବଜନ୍ତୁ ଅଛନ୍ତି । ପ୍ଲୁଟାର୍କ, ସୁଇଡେନ୍ ବର୍ଗ୍, ବର୍ଣ୍ଣାଡ଼ିନ୍ ପ୍ରମୁଖ ସୁଧୀବୃନ୍ଦ ମଧ୍ୟ ଏ ବିଷୟରେ ଏକମତ । ପ୍ରାକୃତିକ ଦର୍ଶନ ଦୃଷ୍ଟିରୁ ଦେଖିଲେ, ବୋଧହୁଏ କୌଣସି ଅଣୁଟିଏ ମଧ୍ୟ ଏ ବିଶ୍ୱରେ ବୃଥା ସୃଷ୍ଟି ହୋଇନାହିଁ । ଚନ୍ଦ୍ରପରି ଗୋଟିଏ ବିରାଟ ଅଣୁ ବୃଥା ସୃଷ୍ଟି ହେବ କିପରି ? ବନ୍ଧୁ ବାର୍ବେନ୍ ! ମୁଁ ଦୃଢ଼ ଭାବରେ କହିପାରେଁ, ପ୍ରତ୍ୟେକ ଗ୍ରହ ଉପଗ୍ରହରେ ଜୀବ ଜନ୍ତୁ ନିଶ୍ଚୟ ଅଛନ୍ତି । ଯେଉଁଥିରେ ନଥିବେ, ସେଠାରେ ଦିନେ ନିଶ୍ଚୟ ଜାତ ହେବେ ।"

ସମସ୍ତଙ୍କ ମନକୁ ଏ କଥା ଖୁବ୍ ପାଇଲା । ବାର୍ବ୍ଟେନ୍ କହିଲେ, "ଏହା ଛଡ଼ା ଅଉ ଅଧିକ ତାର୍କିକ ଭାବରେ ଏ କଥାର ବ୍ୟାଖ୍ୟା କରିଯାଇ ପାରେନା । ତେବେ ଏତିକ ପ୍ରଶ୍ନ ହୋଇପାରେ, 'ଗ୍ରହମାନେ ଜୀବ ଜନ୍ତୁଙ୍କ ବାସଯୋଗ୍ୟ କି ନା ?' ଏହାର ଉତ୍ତର ହଁ ଛଡ଼ା ନାହିଁ ହୋଇ ନପାରେ ।"

ଅର୍ଡ୍ଡାନ୍ ଏ କଥାରେ ପୂର୍ଣ୍ଣ ଏକମତ ହେଲେ । ଜଣେ ସଭ୍ୟ ଉଠି କହିଲେ, "ତଥାପି ଏ ସମ୍ବନ୍ଧରେ ବହୁତ ବାଦପ୍ରତିବାଦ ଶୁଣାଯାଏ । ଅଭଗଳ ଗ୍ରହରେ ଜୀବଜନ୍ତୁ ଥିବା ବା ତାହା ବାସ ଯୋଗ୍ୟ ହୋଇଥିବା ବିରୁଦ୍ଧରେ ଅନେକେ ମତ ଦିଅନ୍ତି । ଯେଉଁ ଗ୍ରହ ସୂର୍ଯ୍ୟର ଖୁବ୍ ନିକଟରେ ଅବସ୍ଥିତ, ତାହା ପୋଡ଼ି ଯାଇଥିବା ଯୋଗୁଁ ବାସଯୋଗ୍ୟ ନୁହେ । ପୁଣି ଯେ ଖୁବ୍ ଦୂରରେ, ତାହା ଅତିରିକ୍ତ ଥଣ୍ଡାରେ ଜଡ଼ୀଭୂତ । ତେଣୁ ତାହାମଧ୍ୟ ବାସଯୋଗ୍ୟ ନୁହେଁ ।"

ଅର୍ଡ୍ଡାନ୍ କହିଲେ, "ମହାଶୟଙ୍କ କଥା ଠିକ୍ ହୋଇପାରେ । ମାତ୍ର ଏହା ବିରୁଦ୍ଧରେ ମଧ୍ୟ ଅନେକ କଥା କୁହା ଯାଇପାରେ । ମୁଁ ଜଣେ ଡାକ୍ତର ହୋଇଥିଲେ କହନ୍ତି, ସୂର୍ଯ୍ୟର ନିକଟବର୍ତ୍ତୀ ଗ୍ରହରେ ଯଦି କମ ଉତ୍ତାପ ଖେଳେଇ ଦିଆଯାଏ ଏବଂ ଦୂରବର୍ତ୍ତୀ ଗ୍ରହରେ ଅଧିକ ଉତ୍ତାପର ପ୍ରବାହ କରିଯାଏ, ତେବେ ଶୈତ୍ୟ ଓ ଉତ୍ତାପର ସମତା ରଖାଯାଇ ପାରିବ ଏବଂ ଆମ ଭଳି ଜୀବଜନ୍ତୁ ତହିଁରେ ସହଜରେ ରହିପାରିବେ । ପ୍ରକୃତିତତ୍ତ୍ୱବାଦୀମାନେ କହନ୍ତି, ପ୍ରକୃତି ଆମ ଭଳି ଜୀବଜନ୍ତୁମାନଙ୍କୁ ନାନା ଭାବରେ ପରସ୍ପର-ବିରୋଧୀ ବିଷୁବୃତ୍ତର ଅବସ୍ଥାମାନଙ୍କରେ ବାସ ଦେଇଅଛି ।

ଦେଖନ୍ତୁ, ମାଛ ଜଳରେ ନିଶ୍ୱାସ ଗ୍ରହଣ କରେ । ମାତ୍ର ଆମ ଜଳ ଜୀବମାନେ ତହିଁରେ ମରନ୍ତି । ଜୀବଯୃତବମାନଙ୍କର ଯେ ଅଭିଜ୍ଞ ପରିସ୍ଥିତ, ତାହା ବୁଝିବା କଠିନ । କେତେକ ଜଳଜୀବ ସମୁଦ୍ରର ନିମ୍ନତମ ସ୍ତରରେ ବସବାସ କରନ୍ତି । ତାଙ୍କ ଉପରର ପଚାଶ ଷାଠିଏ ଜଳସ୍ତରର ଭାର ମଧ୍ୟ ତାଙ୍କୁ ଚାପି ପାରେ ନାହିଁ । କେତେକ ଅଣବିକ ଜୀବ ଉଷ୍ଣଜଳ ସ୍ରୋତରେ ଓ ମେରୁ ସାଗରର ବରଫ ପ୍ରାନ୍ତର ମଧ୍ୟରେ ବାସ କରନ୍ତି । ଆମେ ଏସବୁ କଳ୍ପନା କରି ପାରୁନାହୁଁ । କିନ୍ତୁ ଏହାତ ପୁଣି ସତ୍ୟ ? ରସାୟନିକମାନଙ୍କ ମତରେ, ପୃଥିବୀର ବହୁ କୋଟି ମାଇଲ ଦୂରରେ ନଭୋମଣ୍ଡଳ ଭିତରେ ଅଙ୍ଗାରକାମ୍ଳ ବାଷ୍ପର ସ୍ତର ସବୁ ଦେଖାଯାଇଛି । ତହିଁରୁ ସିଦ୍ଧାନ୍ତ ହେଉଛି ଯେ ତାହା ସବୁ କୌଣସି ସୂକ୍ଷ୍ମ ଜୀବମାନଙ୍କଠାରୁ ଉଦ୍‌ଭବ ହୋଇଅଛି । ସୁତରାଂ ନିକଟବର୍ତ୍ତୀ କୌଣସି ଗ୍ରହମାନଙ୍କରେ ଅଗ ଭଲ ଜୀବଜନ୍ତୁମାନେ ଥିବା ଖୁବ୍ ସମ୍ଭବ । ତେବେ ମୁଁ ତ କୌଣସି ରକମର ପଣ୍ଡିତ ନୁହେଁ । ତେଣୁ ନିଜ ଅଖିରେ ଚନ୍ଦ୍ର-ମଣ୍ଡଳର ଅଧିବାସୀମାନଙ୍କୁ ଦେଖିବାକୁ ବାହାରିଛି ।”

ଏ କଥା ପରେ ଆଉ କୌଣସି ବାଦ ପ୍ରତିବାଦ ଶୁଣାଗଲା ନାହିଁ । ଖୁବ ଅଡ଼େ ଆନନ୍ଦ ଚିତ୍କାର ଉଠିଲା । ଏ ସମୟରେ ଅର୍ଡ଼ାନ୍ କହିଲେ, “ବନ୍ଧୁଗଣ ! ଏ ପୃଥିବୀରେ ଆମ୍ଭେମାନେ ଯେଉଁ ଋତୁ ପରିବର୍ତ୍ତନ ଓ ଜଳବାୟୁ ଉପଭୋଗ କରୁଥାଉଁ, ତାହା ଏତେ ପରସ୍ପରବିରୋଧୀ ଯେ ଅମ୍ଭମାନଙ୍କ ପକ୍ଷରେ ତାହା ଆଦୌ ସହ୍ୟ ହୁଏ ନାହିଁ । କେଉଁଠାରେ ଗରମର ଶେଷ ସୀମା ଯେ ସ୍ଥଳ ଭାଗ ପୋଡ଼ି ଜଳି ଗଲାଭଳି ଲାଗୁଛି, ପୁଣି କେଉଁଠାରେ ଥଣ୍ଡାର ଶେଷ ସୀମା ଯେ ତହିଁରେ ରକ୍ତ ମଧ୍ୟ ଜମାଟ ବାନ୍ଧି ଯାଉଛି । ସେପରି

ଉତ୍ତାପର ମଧ୍ୟ ସ୍ଥିରତା ନାହିଁ । କେଉଁଠାରେ ଚିରଦିନ ଥଣ୍ଡା, କେଉଁଠାରେ ଚିରଦିନ ବର୍ଷା । କେଉଁ ଜୀବ ଏପରି ପ୍ରକୃତିକୁ ସୁଖ ପାଇବ ? ବୃହସ୍ପତିରେ ଏ ଅବସ୍ଥା ସମ୍ପୂର୍ଣ୍ଣ ଓଲଟା । ସେଠାରେ ଜଳବାୟୁର ସାମ୍ୟ, ଉତ୍ତାପର ସାମ୍ୟ । ତେଣୁ ଦୁଃଖ ସୁଖର ସାମ୍ୟାବସ୍ଥା ମଧ୍ୟ ଚିର ବିରାଜମାନ । ସେ ଗ୍ରହରେ ସ୍ଥାୟୀ ଅଧିବାସୀ ନ ହେଲେ ମଧ୍ୟ ସାମୟିକ ଅଧିବାସୀ ହେବାପାଇଁ ପ୍ରାଣ ବ୍ୟାକୁଳ ହେବା ସ୍ୱାଭାବିକ। ଆମ ପଣ୍ଡିତମାନେ ସେ ଗ୍ରହ ସଙ୍ଗେ ସାକ୍ଷାତ୍ ସମ୍ପର୍କ ସ୍ଥାପନ କରି ପାରିଲେ ଆମ୍ଭମାନଙ୍କର ଅଶେଷ ମଙ୍ଗଳ ହେବ ।”

ଜଣେ ଭଦ୍ରଲୋକ କହିଲେ “ଚାଲନ୍ତୁ ତେବେ ଆମ୍ଭମାନଙ୍କ ଚେଷ୍ଟା ମିଳାଇ ଗୋଟାଏ ଯନ୍ତ୍ର ଆବିଷ୍କାର କରିବା, ଯହିଁରେ ପୃଥିବୀର ପରିଧିରେ ଗୋଟାଏ ପରିବର୍ତ୍ତନ ହୋଇପାରିବ । ତା ଫଳରେ ସବୁ ସାମ୍ୟାବସ୍ଥା ଆସିବ ଏବଂ ବୃହସ୍ପତି ସଙ୍ଗେ ଘନିଷ୍ଠ ସମ୍ପର୍କ ରହି ପାରିବ ।”

ଏ କଥାରେ ସମସ୍ତଙ୍କ ମୁଣ୍ଡ ଘୂରିଗଲା । ସମସ୍ତେ ନୀରବ ହୋଇ ଏହା ଚିନ୍ତା କଲେ । ଗନ୍‌କ୍ଲବର ସାଧାରଣ ସେକ୍ରେଟାରୀ ମିଃ ମାଷ୍ଟନ୍‌ଙ୍କ ଉପରୋକ୍ତ ପ୍ରସ୍ତାବ ସମସ୍ତଙ୍କ ମୁଣ୍ଡରେ ପାଦରୁ ମିନିଟ୍ ପର୍ଯ୍ୟନ୍ତ ଗୋଟାଏ ନୀରବ ଚିନ୍ତାଧାରା ଖେଳାଇ ଦେଲା ।

ଏ ସମୟରେ ନୀରବତା ଭଙ୍ଗକରି ଗୋଟାଏ ସ୍ୱର ଜୋରରେ ଶୁଭିଲା, “ବକ୍ତା କଳ୍ପନା ରାଜ୍ୟରେ ବହୁତ ଘୂରୁଛନ୍ତି । ସେ ଦୟାକରି ତାଙ୍କ ଲକ୍ଷ୍ୟ ଆଡ଼କୁ ଫେରି ଆସନ୍ତୁ । ଅତେହତୁକୀ କଳ୍ପନା ଉପରେ ବେଶି ଜୋର ଦିଅନ୍ତୁ ନାହିଁ । ନିଜ ଅଭିଯାନ ବିଷୟରେ ଆଲୋଚନା କରନ୍ତୁ ।”

ଏ ଅନାହୂତ ଲୋକ ପ୍ରତି ସମସ୍ତଙ୍କ ଦୃଷ୍ଟି ଧାଇଁଲା । ସେ ପତଳା, କିନ୍ତୁ ଚେହେରାରେ ବଙ୍କତା ପୂର୍ଣ ରହିଛି । ଦୃଷ୍ଟି ଭାବ-ବ୍ୟଞ୍ଜକ ନୁହେଁ, କିନ୍ତୁ ପ୍ରତିଦ୍ୱନ୍ଦୀକୁ ଅଯୁତ୍ତ୍ୱାଧୀନରେ ରଖିବାପାଇଁ ଖୁବ ସମର୍ଥ । ମୁହଁରେ ସୁନ୍ଦର ଦାଢ଼ୀ । ସେ ଏପରି କହିବା ପରେ ମଧ୍ୟ କୌଣସି ଉତ୍ତର ନ ଅସିବାରୁ ପୁଣି ସେ କହିଲେ, "ଆମେ ଏଠାରେ ଚନ୍ଦ୍ର ବିଷୟରେ ଆଲୋଚନା କରୁଛୁଁ । ପୃଥିବୀ କିମ୍ବା ବୃହସ୍ପତି ସମ୍ବନ୍ଧରେ ନୁହେଁ ।"

ଅର୍ଡାନ୍—"ମହାଶୟ ! ତା ଠିକ । ଆଲୋଚନା ପ୍ରଭାବରେ ଅମ୍ଭେମାନେ ବହୁଦୂର ଚାଲି ଯାଇଛୁଁ । ଆମେ ଏଥର ଚନ୍ଦ୍ରକୁ ଫେରି ଅସିବୁଁ ।"

ଅନାହୂତ ବ୍ୟକ୍ତି—"ଆପଣ କହୁଛନ୍ତି, ଆମ ଉପଗ୍ରହରେ ଜୀବଙ୍କଳୁ ଅଛନ୍ତି । ତା ଯଦି ଥିବେ, ତେବେ ସେମାନେ ନିଶ୍ୱାସ ନେଇ ନ ଥିବେ । କାରଣ ଆପଣଙ୍କ ଭଲ ପାଇଁ ମୁଁ ଜଣାଇ ଦେଉଛି ଯେ ଚନ୍ଦ୍ରରେ ଅଣୁ ପରମାଣୁର ବାୟୁ ସୁଦ୍ଧା ନାହିଁ ।"

ଏ କଥା ଶୁଣି ଅର୍ଡାନଙ୍କ ମୁଣ୍ଡ ଘେରିଲା । ସେ ବୁଝି ପାରିଲେ ଯେ ପ୍ରକୃତ ପ୍ରସ୍ତାବ ଉପରେ ଏ ଲୋକ ଅକାଟ୍ୟ ଯୁକ୍ତି କରିବ । ତେଣୁ ସେ ତାଙ୍କ ପ୍ରତି ସ୍ଥିର ଦୃଷ୍ଟି ନିକ୍ଷେପ କରି କହିଲେ, "ଅହା ! ଚନ୍ଦ୍ରରେ ବାୟୁ ମୋଟେ ନାହିଁ ? ଏକା କିଏ କହିଲା ?"

ଅନାହୂତ ବ୍ୟକ୍ତି—"ବିଶେଷଜ୍ଞ ମାନେ ।"

ଅର୍ଡାନ—"ସତେ ?"

ଅନାହୂତ ବ୍ୟକ୍ତି—"ନିଶ୍ଚୟ ସତ୍ୟ ।"

ଅର୍ଡାନ—"ମହାଶୟ ! ଯେଉଁ ବିଶେଷଜ୍ଞମାନେ ଏକଥା ଜାଣନ୍ତି, ମୋର ସେମାନଙ୍କ ପ୍ରତି ଗଭୀର ସମ୍ମାନ । ଯେଉଁମାନେ ନ ଜାଣନ୍ତି ସେମାନଙ୍କ ପ୍ରତି ଖୁବ୍ ଘୃଣା ।"

ଅନାହୂତ ବ୍ୟକ୍ତି—"ଏପରି କୌଣସି ବିଶେଷଜ୍ଞଙ୍କୁ ଅପଣ ଜାଣନ୍ତି, ଯେ ଏ କଥା ମୋଟେ ଜାଣନ୍ତି ନାହିଁ ?"

ଅର୍ଡାନ—"ହଁ, ଫ୍ରାଂନ୍ସରେ ଜଣେ ବିଶେଷଜ୍ଞ ଅଛନ୍ତି, ସେ କହନ୍ତି, ଗଣିତ ଶାସ୍ତ୍ର ମତରେ ପକ୍ଷୀମାନେ ଉଡ଼ି ପାରନ୍ତି ନାହିଁ; ମାଛ ପାଣିରେ ରହିବାକୁ ସୃଷ୍ଟି ହୋଇନାହିଁ ।"

ଅନାହୂତ ବ୍ୟକ୍ତି—"ମହାଶୟ ! ସେ ଦୁହିଙ୍କ ପ୍ରଶ୍ନ ଏଠାରେ ଉଠୁନାହିଁ । ମୋ ପ୍ରସ୍ତାବ ସପକ୍ଷରେ ମୁଁ କେତେକ ନାମ କହିବି, ଯେଉଁମାନଙ୍କୁ ଅପଣ ଅପଦସ୍ଥ କରି ପାରିବେ ନାହିଁ ।"

ଅର୍ଡାନ୍—"ତା ହେଲେ ମୋ ଭଳି ଜଣେ ଅଜ୍ଞ ବ୍ୟକ୍ତିକୁ ଅପଣ ମହା ହରବରରେ ପକାଇବେ ।"

ଅନାହୂତ ବ୍ୟକ୍ତି—"ତା ହେଲେ ଏପରି ଅବସ୍ଥାରେ ଅପଣ ଏହି ଦୁରୁହ ବୈଜ୍ଞାନିକ ପ୍ରସଙ୍ଗରେ ହାତ ଦେଉଛନ୍ତି କାହିଁକି ?"

ଅର୍ଡ଼ାନ—"ଯେ କୌଣସି ବିପଦ ଅଶଙ୍କା କରେ ନାହିଁ, ସେ ଏକା ସାହସୀ । ମୁଁ କିଛି ଜାଣେ ନା, ଏହା ସତ୍ୟ । ମୋର ଏ ଦୃଢ଼ ଦୁର୍ବଳତା ମୋର ଶକ୍ତି ଜାତ କରିଛି ।"

ଅନାହୂତ ବ୍ୟକ୍ତି ରୁଢ଼ ସ୍ୱରରେ କହିଲେ, "ଅପଣଙ୍କ ଦୁର୍ବଳତାର ଗତି ପାଗଳାମୀ ପର୍ଯ୍ୟନ୍ତ, ଶକ୍ତି ପର୍ଯ୍ୟନ୍ତ ନୁହେଁ ।"

ଅର୍ଡାନ "ମୋ ଦୁର୍ବଳତା ଯେବେ ମତେ ଚନ୍ଦ୍ର ପର୍ଯ୍ୟନ୍ତ ନେଇଯାଏ, ତେବେ ମନ୍ଦ ନୁହେଁ ।"

ବାର୍ବିକେନ୍ ଓ ତାଙ୍କ ବନ୍ଧୁମାନେ ସେ ବ୍ୟକ୍ତିର ଏପରି କଥାରେ ଚମକି ପଡ଼ିଲେ । ସେ ଲୋକ ସେମାନଙ୍କ ପ୍ରସ୍ତାବ ବିରୁଦ୍ଧରେ ଯିବ ବୋଲି ସେମାନଙ୍କର ସନ୍ଦେହ ହେଲା । ତାଙ୍କ ଭିତରୁ କେହି ସେ ଲୋକକୁ ଜାଣି ପାରି ନ ଥିଲେ । ଲୋକ ସାଧାରଣ ମଧ୍ୟ ଏତେ ବଡ଼ ଆୟୋଜନ ଉପରେ ଏହା ଗୋଟାଏ ବଜ୍ରପାତ ବୋଲି ମନେ କଲେ ।

ଅନାହୂତ ବ୍ୟକ୍ତି କହିଲେ, "ଚନ୍ଦ୍ରରେ ବାୟୁ ମଣ୍ଡଳ ନାହିଁ, ଏକଥା ଅବିସମ୍ବାଦିତ ସତ୍ୟ । ମୁଁ କହିପାରେଁ, ଯଦି କେତେବି ବାୟୁ ମଣ୍ଡଳ ଥିଲା, ତାହା ଅଜି ନାହିଁ । ପୃଥିବୀ ଦ୍ୱାରା ଶୋଷି ହୋଇ ଯାଇଛି । ମୁଁ ଏ ବିଷୟରେ ଅପଣଙ୍କର ପ୍ରତିରୋଧ କରିବି ।"

ଅର୍ଡାନ୍—"ଯେତେ ପ୍ରତିରୋଧ କରିବେ, କରନ୍ତୁ ।"

ଅନାହୂତ ବ୍ୟକ୍ତି—"ଅପଣ ଜାଣନ୍ତି ଯେ ସୂର୍ଯ୍ୟାଲୋକ ବାୟୁ ମଧ୍ୟ ଦେଇ ପ୍ରବାହିତ ହେଲାବେଳେ ବରାବର ବଙ୍କା ହୋଇଯାଏ । କେବେହେଁ ସିଧା ସଳଖ ପଡ଼ି ପାରେ ନାହିଁ । ଯେଉଁ ତାରାମାନଙ୍କୁ ଚନ୍ଦ୍ର ଭୋଗ କରେ ବୋଲି କୁହାଯାଏ; ସେମାନଙ୍କ ଅଲୋକ ଚନ୍ଦ୍ର ମଣ୍ଡଳର ବହିଃ ରେଖା ଉପର ଦେଇ ଗତି କଲା ବେଳେ ଆଦୌ କମ୍ପିତ ବା ବିଚଳିତ ହେଲା ପରି ଦେଖାଯାଏ ନାହିଁ । ଏଥିରୁ ଜଣାଯାଏ ଯେ, ଚନ୍ଦ୍ରରେ ଆଦୌ ବାୟୁ ମଣ୍ଡଳ ନାହିଁ ।"

ଅର୍ଡାନ୍—"ଏଇଟା ଅପଣଙ୍କର ବଡ଼ ଯୁକ୍ତି । ବିଶେଷଜ୍ଞମାନେ ମଧ୍ୟ ଏ ବିଷୟରେ ଜବାବ ଦେଇ ପାରିବେ ନାହିଁ । କିନ୍ତୁ ମୁଁ କହି ପାରେଁ, ଏ ଯୁକ୍ତିର କୌଣସି ମୂଲ୍ୟନାହିଁ । କାରଣ ଏଥିରୁ ଜଣା ଯାଉଛି, ଚନ୍ଦ୍ରର କୋଣବିଶିଷ୍ଟ ବ୍ୟାସ ଧାର୍ଯ୍ୟ ଅଛି । ମାତ୍ର ତାହା

ନୁହେଁ । ତେବେ ସେ କଥା ଛାଡ଼ନ୍ତୁ । ଆପଣ ତ ସ୍ୱୀକାର କରିବେ, ଚନ୍ଦ୍ର ଦେହରେ ଅଗ୍ନେୟଗିରି ଅଛି ?”

ଅନାହୂତ ବ୍ୟକ୍ତି—“ନିର୍ବାପିତ ଅଗ୍ନେୟ ଗିରି ଅଛି ବୋଲି ମୁଁ ସ୍ୱୀକାର କରି ପାରେଁ । ମାତ୍ର ଉଦ୍‌ଗୀରଣକାରୀ ଅଗ୍ନେୟ ଗିରି ଅଛି ବୋଲି ମୁଁ ମାନିବ ନାହିଁ ।”

ଅର୍ଜ୍ଜୁନ୍—“ଯୁକ୍ତି ଛଳରେ ସ୍ୱୀକାର କରାଯାଉ ଯେ ଉଦ୍‌ଗୀରକ ଅଗ୍ନେୟ ଗିରି ଅଛି ।”

ଅନାହୂତ ବ୍ୟକ୍ତି—“ତା ହେଲେ ତହିଁରେ ଜ୍ୱଳନ ଯୋଗ୍ୟ ପଦାର୍ଥ ଅଛି ଏବଂ ଅମ୍ଳଜାନ ବାଷ୍ପ ସାହାଯ୍ୟରେ ଜଳୁଛି ।”

ଅର୍ଜ୍ଜୁନ୍—“ସେ କଥା ଛାଡ଼ି ଦିଅନ୍ତୁ । ସାକ୍ଷାତ ପର୍ଯ୍ୟବେକ୍ଷଣ ଦ୍ୱାରା ଯେଉଁ ମତ ବ୍ୟକ୍ତ ହୋଇଛି, ମୁଁ ତାହା କହୁଛି । ଜ୍ୟୋତିଷିକ ଲିଭିଲ୍ ଓ ହାଲେ ୧୭୧୫ ମଇ ତା ୩ ରେ ଚନ୍ଦ୍ର ଦେହରେ ବିସ୍ଫୁରକର ବଜ୍ରପାତ ହେଉଥିବାର ଲକ୍ଷ୍ୟ କରିଥିଲେ । ତହିଁରୁ ଦ୍ରୁତ ଗତିବିଶିଷ୍ଟ ଯେଉଁ ଆଲୋକ ଘନ ଘନ ବାହାରୁଥିଲା, ତାହା ଯଥେଷ୍ଟ ସୂଚନା ଦେଉଥିଲା ଯେ, ସେଠାରେ ଗୋଟାଏ ଭୀଷଣ ଝଡ଼ ହେଉଅଛି । ତାହା ବାୟୁମଣ୍ଡଳର ଯଥେଷ୍ଟ ପ୍ରମାଣ ।

ଅନାହୂତ ବ୍ୟକ୍ତି—“ମୁଁ ତାହା ଜାଣେ । ସେମାନେ ପୃଥିବୀର ବାୟୁମଣ୍ଡଳ ମଧ୍ୟରେ ଜାତ ହୋଇଥିବା ଉଲ୍‌କା ବା ଅନ୍ୟ ବାୟୁବ୍ୟ ଆଲୋକକୁ ଦେଖି ଚନ୍ଦ୍ର ଦେହରେ ଝଡ଼ର କଳ୍ପନା କରିଥିଲେ ।

ଅର୍ଜ୍ଜୁନ୍—“ସେ କଥା ଛାଡ଼ନ୍ତୁ । ୧୭୮୭ ରେ ହାରସେଲ୍ ଚନ୍ଦ୍ର ଦେହରେ କେତେକ ଉଜ୍ଜ୍ୱଳ ଆଲୋକ ବିନ୍ଦୁ ପର୍ଯ୍ୟବେକ୍ଷଣ କରିଥିଲେ ।”

ଅନାହୂତ ବ୍ୟକ୍ତି—"ମୁଁ ତାହା ଜାଣେ । ଭକ୍ତ ଅଲୋକର ଉତ୍ପତ୍ତି ବିଷୟରେ ସେ କୌଣସି ବ୍ୟାଖ୍ୟା କରି ପାରିନଥିଲେ । ତେଣୁ ଚନ୍ଦ୍ରରେ ବାୟୁମଣ୍ଡଳ ଥିବାର ସେ ମତ ଦେଇ ନାହାନ୍ତି ।"

ଅର୍ଜୀନ୍ ଏହା ଶୁଣି ତାଙ୍କୁ ଅଭିବାଦନ କରି କହିଲେ, "ସୁନ୍ଦର କଥା ଆପଣ କହିଲେ । ମୁଁ ଦେଖୁଛି, ଆପଣ ଚନ୍ଦ୍ର ବିଷୟରେ ଅନେକ କଥା ଜାଣନ୍ତି ।"

ଅନାହୂତ ବ୍ୟକ୍ତି—"ହଁ, ମହାଶୟ ! ଏହାଛଡ଼ା ମୁଁ କହିପାରେଁ, କୌଶଳୀ ପର୍ଯ୍ୟବେକ୍ଷକ ଏଟ୍, ବିଅର ଓ ମେଡ଼ଲର୍ ସ୍ୱୀକାର କରିଛନ୍ତି ଯେ ଚନ୍ଦ୍ରମଣ୍ଡଳରେ ବାୟୁ ଆଦୌ ନାହିଁ ।"

ଅର୍ଜୀନ୍—"ଛାଡ଼ନ୍ତୁ ସେ କଥା । ଆଉ ଗୋଟିଏ ଅତି ଗୁରୁତର କଥା ମୁଁ କହିବି । ଏମ୍ ଲସେଡ଼ାଟ୍ ନାମରେ ଜଣେ କୌଶଳୀ ଫରାସୀ ଜ୍ୟୋତିର୍ବିଦ ୧୮୬୦ ଯୁଲାଇ ତା୧୮ ରେ ଘଟିଥିବା ଚନ୍ଦ୍ରଗ୍ରହଣ ପର୍ଯ୍ୟବେକ୍ଷଣ କରି ପ୍ରମାଣ କରିଥିଲେ ଯେ, ସୂର୍ଯ୍ୟାଲୋକ ଗୋଲକାର ଓ ଛିନ୍ନଭିନ୍ନ । ଏଥିରୁ ଜଣାଯାଉଛି, ସୂର୍ଯ୍ୟାଲୋକ ଚନ୍ଦ୍ରର ବାୟୁମଣ୍ଡଳ ଭିତରେ ଗତି କରିବାବେଳେ ଏପରି ବୈଷମ୍ୟ ଘଟିଥିଲା । ଏହାକୁ ଆଉ କିପରି ଅଧିକ ଭଲ ବ୍ୟାଖ୍ୟା କରାଯାଇପାରେ ?"

ଅନାହୂତ ବ୍ୟକ୍ତି—"ଏହା ଜଣ ପ୍ରମାଣ ସିଦ୍ଧ ?"

ଅର୍ଜୀନ୍—"ନିଶ୍ଚୟ ।"

ଏଥିରେ ବିଚଳିତ ଜନତାର ମତ ପୁଣି ଅର୍ଜୀନଙ୍କ ଆଡ଼କୁ ଢଳି ପଡ଼ିଲା । ତାଙ୍କ ପ୍ରତିଦ୍ୱନ୍ଦୀ ନୀରବ ହୋଇଗଲେ । ଅର୍ଜୀନ୍

ଦାମ୍ଭିକତାର ଚିହ୍ନ ନ ଦେଖାଇ ପୁଣି କହିଲେ, "ତେଣୁ, ପ୍ରିୟ ମହାଶୟ ! ଚନ୍ଦ୍ରରେ ବାୟୁ ନାହିଁ ବୋଲି ଦୃଢ଼ଭାବରେ କୁହାଯାଇ ପାରୁନାହିଁ । ଅବଶ୍ୟ ଏ ବାୟୁ ବୋଧହୁଏ ଘନ ନୁହେ । କିନ୍ତୁ ବିଜ୍ଞାନ ନିଃସନ୍ଦେହରେ ସ୍ୱୀକାର କରୁଛି ଯେ ବାୟୁ ଅଛି ।

ଅନାହୂତ ବ୍ୟକ୍ତି—"ତେବେ ପାହାଡ଼ ଉପରେ ବାୟୁ ନାହିଁ ।"

ଅର୍ଡ୍ଡାନ୍—"ତେବେ ଉପତ୍ୟକା ମଧ୍ୟରେ ଅଛି । ତାହାର ଗଭୀରତା କେତେଶହ ଫୁଟ ।"

ଅନାହୂତ ବ୍ୟକ୍ତି—"ତା ହେଲେ ଆପଣଙ୍କୁ ବିଶେଷ ସାବଧାନ ହେବାକୁ ପଡ଼ିବ । କାରଣ କୌଣସି କୌଣସି ଜାଗାରେ ବାୟୁ ମୋଟେ ନ ମିଳିପାରେ ।"

ଅର୍ଡ୍ଡାନ୍—"ଯାହା ମିଳିବ, ତାହା ଜଣେ ଲୋକ ପକ୍ଷରେ ଯଥେଷ୍ଟ । ମୁଁ ସେଠାକୁ ଥରେ ଗଲେ ପବନର ବ୍ୟବହାର ଏବମିତ କରିଦେବି । କୌଣସି ବିଶେଷ ବିଶେଷ ଘଟଣାରେ ନିଶ୍ୱାସ ନେବି ।"

ଏକଥା ଶୁଣି ସମଗ୍ର ଜନତା ହସିଉଠିଲା । ଅର୍ଡ୍ଡାନ୍ ଗର୍ବିତ-ଭାବରେ ଚାରିଆଡ଼କୁ ଚାହିଁ ତାପରେ କହିଲେ, "ତା ହେଲେ ବାୟୁ ଯେତେବେଳେ ସ୍ୱୀକୃତ ହେଲା, ଜଳ ସେଠାରେ ଥିବାର ଅବଶ୍ୟ ସ୍ୱୀକୃତ ହେବ । ଆଉ ଗୋଟାଏ ପର୍ଯ୍ୟବେକ୍ଷଣର କଥା ମୁଁ କହୁଛି । ଆମେ ଚନ୍ଦ୍ରର ଗୋଟାଏ ଅଂଶ ମାତ୍ର ଦେଖୁଛୁ । ସେଠାରେ ଯଦିବା ସାମାନ୍ୟ ବାୟୁ ଅଛି, ଅନ୍ୟ ଅଂଶରେ ଅବଶ୍ୟ ବେଶି ଥିବ ।"

ଅନାହୂତ—"କିପରି ?"

ଅର୍ଡ୍ଡାନ୍—"ପୃଥିବୀର ଆକର୍ଷଣ ଫଳରେ ଚନ୍ଦ୍ରର ଆକୃତି ଡିମ୍ବାକାର । ତାର ଶ୍ରେଷ୍ଠ ଅଂଶଟି ମାତ୍ର ଆମେ ଦେଖୁଛୁଁ । ତାହେଲେ ହ୍ୟସେନଙ୍କ ଗଣନାନୁସାରେ ତାର ଭାର କେନ୍ଦ୍ର ଅନ୍ୟ ତରଫରେ ଅଛି । ତେଣୁ ମୀମାଂସା ଏପରି ହୋଇଅଛି ଯେ, ସମସ୍ତ ବାୟୁ ଓ ଜଳ ସୃଷ୍ଟିର ଆରମ୍ଭରୁ ସେହି ଆଡ଼କୁ ଆକୃଷ୍ଟ ହୋଇ ଯାଇଛି ।"

ଅନାହୂତ—"ଖାଲି କଳ୍ପନା ।"

ଅର୍ଡ୍ଡାନ୍—"ନା, ଯାନ୍ତ୍ରିକ ନିୟମଭିତ୍ତିରେ ଏ କଳ୍ପନା ସ୍ଥାପିତ । ଏହାକୁ ଖଣ୍ଡନ କରିବା ମୋ ପକ୍ଷରେ କଠିନ । ମୁଁ ଏ ସଭାର ସମସ୍ତ ବ୍ୟକ୍ତିଙ୍କୁ ନିବେଦନ କରୁଛି, ଆମ ପୃଥିବୀରେ ଯେପରି ଜୀବ ଜନ୍ତୁଙ୍କ ଅବସ୍ଥା, ଚନ୍ଦ୍ରରେ ସେପରି ଅଛି କି ନାହିଁ ସେମାନେ କହନ୍ତୁ ।"

ଅର୍ଡ୍ଡାନଙ୍କ ପ୍ରସ୍ତାବରେ ସମସ୍ତେ ଏକମତ ଥିବାର ସ୍ତୁତିଅଙ୍କ ଗହ ଗହ ଧ୍ୱନିରେ ଶୁଣାଗଲା । ଅନାହୂତ ବ୍ୟକ୍ତି କିଛି କହିବାକୁ ବାହାରିବାରୁ ତାଙ୍କୁ କେହି କୁହାଇଦେଲେ ନାହିଁ । ତାଙ୍କ ବିରୁଦ୍ଧରେ ଚିତ୍କାର ଓ ବିଦ୍ରୂପଦର୍ଶକ ସ୍ତୁତିଅଙ୍କୁ ଉଠିଲା । କେତେକ ଲୋକ କହିଲେ, "ବହୁତ ହେଲା, ବହୁତ ହେଲା ।" ଆଉ କେତେକ କହିଲେ, 'ସେଇଟାକୁ ବାହାର କରିଦିଅ ।' ମାତ୍ର ସେ ବ୍ୟକ୍ତି ଆଦୌ ବିଚଳିତ ହେଲେ ନାହିଁ । ସେ ନିଜ ଆସନରେ ଦୃଢ଼ ଭାବରେ ବସି ରହିଲେ ଏବଂ ଝଡ଼ଟା ବୋହିଯିବା ପର୍ଯ୍ୟନ୍ତ ଅପେକ୍ଷା କଲେ । ମାତ୍ର ଲୋକେ ତାଙ୍କ ବିରୁଦ୍ଧରେ ଭୀଷଣ ରୂପେ ଚଢ଼ଉଠିଲେ । ମାଇକେଲ୍ ଅର୍ଡ୍ଡାନ୍ ଯଦି ଠିଆ ହୋଇ ସମସ୍ତଙ୍କୁ ଶାନ୍ତ ହେବାକୁ ଅନୁରୋଧ କରି ନଥାନ୍ତେ ଏବଂ ଲୋକେ ତାହା ମାନି ଦବି ଯାଇ ନଥାନ୍ତେ, ତେବେ ଅବସ୍ଥା ସାଂଘାତିକ ହୋଇ ପଡ଼ିଥାନ୍ତା ।

ଅର୍ଜ୍ଜୁନ୍—"ଅପଣ ଅଜ ଧ ପଦ କରୁ କହିବେ କି ?

ଅନାହୁତ—" ଧପଦ କଣ, ଶହେ ପଦ କହିବ, ସହସ୍ରେ ପଦ କହିବ, ନୋହିଲେ ଗୋଟାଏ ମାତ୍ର ପଦ କହିବ । ଅପଣ ନିଜ ଉଦ୍ୟମକୁ ସଫଳ କରିବାକୁ ହେଲେ ଅପଣ ଅବଶ୍ୟ—"

ଅର୍ଜ୍ଜୁନ୍—"ଅପଣ ତାହା କପର କହୁଛନ୍ତି ? ଗୋଟିଏ ଗୋଳିଆ ନଳାକାର ଗୋଲା ମୋ ପାଇଁ ତିଆର କରିଦେବାକୁ ମୁଁ ପରା ମୋ ବନ୍ଧୁ ବାର୍ବିକେନ୍‌ଙ୍କୁ ଅନୁରୋଧ କରିଛି ? ତାହେଲେ ମୁଁ ଗୁଳ୍ଲିରୀ ଭଳି ଧୂର ଦୂର ନଯାଇ ଜାପଦରେ ଯାଇ ପାରିବ ।"

ଅନାହୁତ—"କିନ୍ତୁ, ହତଭାଗା ! ଗୋଲା ଛାଡ଼ିବା ବେଳେତ ତୁମେ ଠିକ୍ ଠିକ୍ ହୋଇ ଉଡ଼ିଯିବ ।"

ଅର୍ଜ୍ଜୁନ—"ଅପଣ ପ୍ରକୃତ ଅସୁବିଧା କଥା କହୁଛନ୍ତି । କିନ୍ତୁ ମୁଁ ଜାଣେ, ଏ ଅସୁବିଧାକୁ ଦୂର କରି ତାକୁ ଜାପଦ କରିବାପାଇଁ ଅମେରିକା ବୈଜ୍ଞାନିକମାନଙ୍କର ଯଥେଷ୍ଟ ବୁଦ୍ଧି ଅଛି ।"

ଅନାହୁତ—"ଗୋଲା ବାୟୁ ଭିତରେ ଭୀଷଣ ବେଗରେ ଗତି କଲାବେଳେ ତାହା ଭୀଷଣ ଭାବରେ ଉତ୍ତପ୍ତ ହୋଇ ଉଠିବ ।"

ଅର୍ଜ୍ଜୁନ୍—"ଗୋଲାର ପାର୍ଶ୍ବସବୁ ଖୁବ ମୋଟା । ମୁଁ ସାମାନ୍ୟ କେତେ ମିନିଟ ମଧ୍ୟରେ ବାୟୁମଣ୍ଡଳ ପାର ହୋଇ ଯିବ ।"

ଅନାହୁତ—"ଖାଦ୍ୟ ଅଉ ଜଳ ?"

ଅର୍ଜ୍ଜୁନ୍—"ମୁଁ ସେ କଥା ଭାବିଛି । ମୁଁ ବର୍ଷକ ପାଇଁ ସବୁ ଜିନିଷ ନେବି । ରାସ୍ତାରେ ମୋଟେ ମୋଟେ ଚାରିଦିନ ଲାଗିବ ।"

ଅନାହୂତ—"ରାସ୍ତାରେ ଗଲାବେଳେ ନିଶ୍ୱାସ ପାଇଁ ବାୟୁ ?"

ଅର୍ଜ୍ଜୁନ୍—"ମୁଁ ରସାୟନିକ ଉପାୟରେ କେତେକ ବାୟୁ ନେବି ।"

ଅନାହୂତ—"ଚନ୍ଦ୍ରଲୋକରେ ପହଞ୍ଚିପାରିଲେ ସେଠାରେ ଗୋଟାଏ ଭୀଷଣ ପତନ ହେବ ।"

ଅର୍ଜ୍ଜୁନ୍—"ପୃଥିବୀର ପତନର ବେଗଠାରୁ ସେଠାରେ ଏକ ଷଷ୍ଠାଂଶ ହେବ । କାରଣ ଚନ୍ଦ୍ରର ଆକର୍ଷଣ ଅପେକ୍ଷା ପୃଥିବୀର ଆକର୍ଷଣ ଛଅଗୁଣ ବେଶୀ ।"

ଅନାହୂତ—"ତାହା ମଧ୍ୟ ଆପଣଙ୍କୁ ଗୋଟାଏ କାଚପାତ୍ର ଭଳି ଖଣ୍ଡ ଖଣ୍ଡ କରି ଦେଇପାରେ ।"

ଅର୍ଜ୍ଜୁନ୍—"ମୁଁ ସଦ୍ୟ ମୋ ପାଖରେ କେତୋଟା ହାଉଇ ରଖିବି ଏବଂ ଯଥା ସମୟରେ ଛାଡ଼ି ଦେବି, ତାହେଲେ ମୋ ପତନର ବେଗ ବହୁତ କମିଯିବ ।"

ଅନାହୂତ—"କିନ୍ତୁ ଶେଷରେ ଧରନ୍ତୁ ସବୁ ଅସୁବିଧା ଦୂର ହୋଇଗଲା, ସବୁ ପ୍ରତିବନ୍ଧକ ନାନା ଉପାୟରେ ନାନା କୌଶଳରେ ଛୁଟିଗଲା ଏବଂ ଆପଣ ନିରାପଦରେ ଚନ୍ଦ୍ରରେ ପହଞ୍ଚିଲେ, ତେବେ ଫେରିବେ କିପରି ?"

ଅର୍ଜ୍ଜୁନ୍—"ମୁଁ ଫେରିବି ନାହିଁ ।"

**ବିରାଟ** ଜନତା ନୀରବ ହୋଇ ଏ ସମସ୍ତ କଥା ଶୁଣୁଥିଲା । ଅର୍ଜ୍ଜୁନଙ୍କ ଶେଷ କଥାଟା ସମସ୍ତଙ୍କ ମନକୁ ଖୁବ୍ ଲାଗିଲା । ସେମାନେ ଏପରି ଗୋଟାଏ ଉତ୍ତର ପାଇବେ ବୋଲି ଆଶା କରି ନଥିଲେ ।

ଘୋର ନାସ୍ତିକ୍ୟବାଦର ଚିନ୍ତାଧାରା ଏକ ଭାଳ ଘୋଟି ଯିବାରୁ ଅନାହୂତ ବ୍ୟକ୍ତି ମନେକଲେ ତାଙ୍କର ଜୟ ହୋଇଛି । ସେ ଦ୍ୱିଗୁଣ ଉତ୍ସାହରେ କହିଲେ, "ଆପଣ ନିଜକୁ ହତ୍ୟା କରିବେ, ଏହା ସୁନିଶ୍ଚିତ । ଆପଣଙ୍କର ଏ ମୃତ୍ୟୁ ଗୋଟାଏ ପାଗଳର ମୃତ୍ୟୁ ସଙ୍ଗେ ସମାନ ହେବ । ତାହା ବିଜ୍ଞାନର କୌଣସି କାମରେ ଆସିବ ନାହିଁ ।"

ଅର୍ଜ୍ଜୁନ୍—"ଯେପରି କହୁଛନ୍ତି, କହନ୍ତୁ । ଆପଣଙ୍କ କଥା ବଡ଼ ସୁଖକର ବୋଧ ହେଉଛି ।"

ଅନାହୂତ—"ଯଥେଷ୍ଟ ହେଲା । ମୁଁ ଏପରି ଗୋଟାଏ ବାତୁଳ ଆଲୋଚନାରେ କାହିଁକି ଯେ ଯୋଗ ଦେଉଛି, ମୁଁ ବୁଝିପାରୁ ନାହିଁ । ଆପଣଙ୍କ ବାତୁଳ ପ୍ରସ୍ତାବରେ ଆପଣ ଯେତେଦୂର ଯିବେ ଯାଆନ୍ତୁ । ଏଇଟା କିନ୍ତୁ ଆପଣଙ୍କର ଭୁଲ ନୁହେଁ ।"

ଅର୍ଜ୍ଜୁନ୍—"ଚିଡ଼ିଗଲେ ଯେ ।"

ଅନାହୂତ—"ନା, ଆଉ ଜଣେ ଆପଣଙ୍କ କାର୍ଯ୍ୟପାଇଁ ଦାୟୀ ହେବେ ।"

ଅର୍ଜ୍ଜୁନ୍—"ସେ କିଏ ?"

ଅନାହୂତ—"ଯେଉଁ ବୋକା ଏପରି ଗୋଟାଏ ଅସମ୍ଭବ ଅଥଚ ହାସ୍ୟାସ୍ପଦ ପ୍ରସ୍ତାବରେ ହାତ ଦେଇଛି ।"

ଏ ଆକ୍ରମଣ ବଡ଼ ସାଂଘାତିକ । ଏ ଅନାହୂତ ବ୍ୟକ୍ତି ତାଙ୍କ ଯୁକ୍ତି ଆରମ୍ଭ କଲାବେଳୁ ବାର୍ବର୍କେନ୍ କ୍ରୋଧ ଓ ଅଧୈର୍ଯ୍ୟକୁ ଭୀଷଣ ଭାବରେ ଦମନ କରି ବସିଥିଲେ । ମାତ୍ର ବର୍ତ୍ତମାନ ଏପରି ଅଭଦ୍ର

ଭାବରେ ସମ୍ବୋଧିତ ହେବାରୁ ତାଙ୍କ ଧୈର୍ଯ୍ୟ ସମସ୍ତ ସୀମା ଟପିଗଲା । ସେ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ଆଡ଼କୁ ଧାଇଁ ଆସୁ ଆସୁ ତାଙ୍କ ବନ୍ଧୁମାନେ ତାଙ୍କୁ ଅଟକାଇ ଦେଲେ । ସମଗ୍ର ଜନତା ବିକ୍ଷୋଭିତ ହୋଇ-ଉଠିଲା । ସମସ୍ତେ ହାତ ମୁଠା କରି ଆଗନ୍ତୁକଙ୍କୁ ଭୁଷି ମାରିବାକୁ ହାତ ଉଠାଇଲେ । ଭୀଷଣ ଗଣ୍ଡଗୋଳ ଲାଗିଗଲା । ମାତ୍ର ବାର୍ବିକେନ୍ ଓ ଆଗନ୍ତୁକ ପରସ୍ପରକୁ ଚାହିଁ ଖାଲି ଅଗ୍ନିବୃଷ୍ଟି କରିବାକୁ ଲାଗିଲେ । ଅର୍ଡ଼ାନ୍ ଏ ଗୋଳମାଳ ଭିତରୁ ସୁବିଧାରେ ଖସିଯାଇ ହୋଟେଲ ଆଡ଼କୁ ପଳାଇଗଲେ ଏବଂ ସେଠାରେ ଗୋଟାଏ ଘର ବନ୍ଦ କରି-ଦେଇ ଶୋଇପଡ଼ିଲେ । ଲକ୍ଷାଧିକ ଲୋକ ସେ ହୋଟେଲରେ ଜମାହୋଇ ତାଙ୍କ ନାମରେ ଜୟଧ୍ୱନି କଲେ ।

ଇତିମଧ୍ୟରେ ବାର୍ବିକେନ୍ ବନ୍ଧୁମାନଙ୍କ କବଳରୁ ମୁକ୍ତହୋଇ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ନିକଟକୁ ସିଧା ଚାଲିଗଲେ ଓ ତାଙ୍କୁ ଗୋଟାଏ ନିର୍ଜନ ସ୍ଥାନରେ ଡାକିଲେ । ଆଗନ୍ତୁକ ତାଙ୍କ ସଙ୍ଗରେ ଗଲେ । ଉଭୟେ ଗୋଟାଏ ଜାଗାରେ ନିରୋଳା ହୋଇ ଯିବାରୁ ବାର୍ବିକେନ୍ ପଚାରିଲେ, "ତୁମ୍ଭ ନାମ ?"

"କ୍ୟାପ୍‌ଟେନ୍ ନିକୋଲ୍ ।"

"ମୁଁ ସେୟା ଭାବିଥିଲି । ଏପର୍ଯ୍ୟନ୍ତ ଭାଗ୍ୟ ଆମକୁ ଏକାଠେଇ କରି ନଥିଲା ।"

"ମୁଁ ନିଜେ ଆସି ଏକାଠେଇ ହୋଇଛି ।"

"ତୁମ୍ଭେ ମୋତେ ଅପମାନ ଦେଇଛ ?"

"ହଁ, ସାଧାରଣଙ୍କ ଆଗରେ ।"

"ଏ ଅପମାନ ପାଇଁ ତୁମ୍ଭକୁ ଦାମ୍ ଦେବାକୁ ପଡ଼ିବ ।"

"ଉତ୍ତମ, ଏହି ମୁହୂର୍ତ୍ତରେ ।"

"ନା, ମୁଁ ଚାହେଁ, ଆମ ଭିତରେ ପ୍ରତ୍ୟେକ କଥା ଗୁପ୍ତ ରହିବ । ଟାଂପାଠାରୁ ତିନି ମାଇଲ ଦୂରରେ ଗୋଟାଏ ଜଙ୍ଗଲ ଅଛି । ଜାଣ ?"

"ହଁ ।"

'କାଲି ସକାଳ ପାଞ୍ଚଟାବେଳେ ତୁମ୍ଭେ ସେ ଜଙ୍ଗଲର ଗୋଟାଏ ତରଫରେ ପଶି ପାରିବ ?"

"ହଁ, ଯଦି ତୁମ୍ଭେ ସେହି ସମୟରେ ଅନ୍ୟ ତରଫରୁ ପ୍ରବେଶ କରିବ ।"

"ତୁମ୍ଭେ ତୁମ୍ଭ ରିଭଲଭର୍ ନବାକୁ ଭୁଲିବ ନାହିଁ ।"

"ତୁମ୍ଭେ ବୋଧହୁଏ ତାହା ଭୁଲିଯିବ ନାହିଁ ।"

ଏହାପରେ ଉଭୟେ ନିଜ ନିଜ ଗନ୍ତବ୍ୟ ପଥରେ ଚାଲିଲେ ବାର୍ବିଚେନ୍ ନିଜ ଅବାସକୁ ଅସି ଅଜି ବିଶ୍ରାମ ନେଲେ ନାହିଁ । ଟଗୋଲ୍ଲର ଧକ୍କା ଉପରେ ନିବାରିତ ହେବ ଏବଂ ଅର୍ଜାନ୍‌ଙ୍କ କଠିନ ପ୍ରସ୍ତାବ ସବୁ ଉପରେ କାର୍ଯ୍ୟକାରୀ ହେବ, ତାହା ଗଭୀର ଭାବରେ ଚିନ୍ତା କରିବାକୁ ଲାଗିଲେ ।

---

—ପନ୍ଦର—

## ଫରାସୀ ଲୋକର କରାମତ

ସଭାପତି ଓ କ୍ୟାପଟେନ୍‌ଙ୍କ ଭିତରେ ଦ୍ୱନ୍ଦ୍ୱ ଯୁଦ୍ଧର ଆଲୋଚନା ଚାଲିଥିଲା ବେଳେ ଆର୍ଡାନ୍ ଅବସରରେ ଆସି ଶୋଇ ପଡ଼ିଥିଲେ । ସେ ନାନାଦି କଳ୍ପନା କରୁ କରୁ କେତେବେଳେ ତାଙ୍କୁ ନିଦ ଆସିଗଲା, ସେ ବୁଝି ପାରିଲେ ନାହିଁ । ହଠାତ୍ ଗୋଟାଏ ଭୟାନକ ଦମ୍ ଶବ୍ଦରେ ତାଙ୍କର ନିଦ ଭାଙ୍ଗିଗଲା । ସେ ଉଠିପଡ଼ି ଶୁଣିଲେ ଦ୍ୱାରରେ ଭୀଷଣ ଧକ୍କା ହେଉଛି ଏବଂ ଶୀଘ୍ର ଦରୋଜା ଖୋଲିବାକୁ କିଏ ଡାକ ଛାଡ଼ୁଛି । ଏ ଅପ୍ରତ୍ୟାଶିତ ପ୍ରତିବନ୍ଧକରେ ତାଙ୍କ ମନରେ ଯେଉଁ ଘୋର ଅଶାନ୍ତି ଜାତ ହେଲା, ଦରୋଜା ଖୋଲି ଦେଲା ମାତ୍ରକେ ତାହା କୁଆଡ଼େ ଉଭେଇ ଗଲା । ଗନ୍‌କ୍ଲବର ସାଧାରଣ ସେକ୍ରେଟାରୀ ମିଃ ମାଷ୍ଟନ ବଡ଼ ଆବେଗରେ ତାଙ୍କୁ କହିଲେ, "କାଲି ସଭାରେ ଆମ ସଭାପତି ଘୋର ଅପମାନିତ ହୋଇ ତାଙ୍କ ପ୍ରତିଦ୍ୱନ୍ଦ୍ୱୀକୁ ଦ୍ୱନ୍ଦ୍ୱ ଯୁଦ୍ଧପାଇଁ ସଙ୍ଗେ ସଙ୍ଗେ ଆହ୍ୱାନ କରିଛନ୍ତି । ସେ ଅନ୍ୟ କେହି ନୁହେଁ, କ୍ୟାପ୍‌ଟେନ୍ ନିକୋଲ୍ । ଉଭୟେ ନିକଟବର୍ତ୍ତୀ ଜଙ୍ଗଲରେ ପଶି ଲଢେଇ କରିବାକୁ ବର୍ତ୍ତମାନ ଯାଉଛନ୍ତି । ମୁଁ ଏ କଥା ନିଜେ ବାର୍ବିକେନ୍‌ଙ୍କଠାରୁ ଶୁଣିଛି । ଏ ଯୁଦ୍ଧରେ ଯଦି ବାର୍ବିକେନ୍ ମରନ୍ତି, ତେବେ ସବୁ କଳ୍ପନା ଜଳ୍ପନା ପଣ୍ଡ ହୋଇ ଯିବ । ବର୍ତ୍ତମାନ ବାର୍ବିକେନ୍‌ଙ୍କ ମନରେ ପୂର୍ଣ୍ଣ ଅଧିକାର ବିସ୍ତାର କରି ଏ ବ୍ୟାପାରରୁ ତାଙ୍କୁ ନିବୃତ୍ତ କରି ପାରିବ ଜଣେ ମାତ୍ର ବ୍ୟକ୍ତି, ମାଇକେଲ୍ ଆର୍ଡାନ୍ ।"

ଆର୍ଡାନ୍ ଏହା ଶୁଣୁ ଶୁଣୁ ଆଉ କୌଣସି ଦ୍ୱିରୁକ୍ତି ନ କରି ସଙ୍ଗେ ସଙ୍ଗେ ପୋଷାକ ପିନ୍ଧିଦେଲେ । ପ୍ରାୟ ଦୁଇ ମିନିଟ୍ ଭିତରେ

ସେ ପ୍ରସ୍ତୁତ ହୋଇ ପଡ଼ିବା ପରେ ଉଭୟେ କ୍ଷିପ୍ର ଗତିରେ ଚାଲିଲେ। ଖୁବ୍ କମ ସମୟ ଭିତରେ ସେମାନେ ଟାଂପାର ଶେଷ ସୀମା ପାର ହୋଇ ପଦାକୁ ବାହାରି ପଡ଼ିଲେ ।

ଏପରି ଶୀଘ୍ର ଗତିରେ ଯାଉ ଯାଉ ମାଷ୍ଟର୍ସ ତାଙ୍କୁ ବାର୍ବିକେନ୍ ଓ ନିକୋଲ୍ଙ୍କ ଭିତରେ ଘଟିଥିବା ଘୋର ପ୍ରତିଦ୍ୱନ୍ଦ୍ୱିତାର ମୌଳିକ ବିବରଣୀ ସବୁ ଜଣାଇ ଦେଲେ । କିପରି ଉଭୟେ ଲୁହାର ପ୍ଲେଟ୍ ଓ ଗୋଲା ତିଆରିରେ ଅସୀମ ପ୍ରତିଯୋଗିତା ଭିତରେ ଗତି କରିଥିଲେ ଏବଂ ତା ଫଳରେ ଉଭୟେ ପରସ୍ପରର ଘୋର ଶତ୍ରୁ ହୋଇ ପଡିଲେ, କିପରି ଉଭୟଙ୍କ ବନ୍ଧୁମାନଙ୍କ ସନ୍ନିରେ ଉଭୟେ ପରସ୍ପରଠାରୁ ବହୁ ଦୂରରେ ରହୁଥିଲେ ଏବଂ ବର୍ତ୍ତମାନ ସନ୍ଧ୍ୟାର ଗୋଟାଏ ବିଷୟକୁ ଅବଲମ୍ବନ କରି ନିକୋଲ୍ଙ୍କର ରାଗ କିପରି ବଢ଼ିଲା, ତାହା ସମସ୍ତ ବୁଝାଇ ଦେଲେ ।

ଦ୍ୱନ୍ଦ୍ୱ ଯୁଦ୍ଧଟା ଆମେରିକାରେ ଅତି ଭୀଷଣ । ଏଥିରେ ଉଭୟେ ଜଙ୍ଗଲରେ ଲଢ଼େଇ କରିବାକୁ ଯାଆନ୍ତି ଏବଂ ଉଭୟେ ପରସ୍ପରକୁ ଶିକାର ମନେ କରି ଖୋଜନ୍ତି । ହାବୁଡ଼େ ପଡିଲେ ସାଙ୍ଗେ ସାଙ୍ଗେ ଲକ୍ଷ୍ୟ ଦିଅନ୍ତି । ଏ କାର୍ଯ୍ୟରେ ସାମାନ୍ୟ ଭୁଲ୍ ଦ୍ୱିଧା ବା ଭୁଲ୍ ପଦକ୍ଷେପ ହେଲେ ମୃତ୍ୟୁ ଅନିବାର୍ଯ୍ୟ । ଏ ଯୁଦ୍ଧରେ ଯାଂକୀମାନେ ନିଜ ନିଜର କୁକୁର ସାଙ୍ଗରେ ନିଅନ୍ତି । ଜନ୍ତୁ ଶିକାର ଓ ମନୁଷ୍ୟ ଶିକାର ସାଙ୍ଗେ ସାଙ୍ଗେ ଚାଲେ ।

ଉଭୟେ ଖୁବ ଦ୍ରୁତ ବେଗରେ ଚାଲିଲେ । ଚାରିଆଡ଼େ କାକର ପଡ଼ୁଥିଲା । ତାହିଁରେ ଅଣ୍ଟା ଯାଏ ପୋଷାକ ଓଦା କରି, କେତେ ବାଡ଼ ଡେଇଁ ସେମାନେ ଖୁବ ସିଧାରାସ୍ତା ଧରି ଚାଲିଲେ ।

ସାଢ଼େ ପାଞ୍ଚଟା ପୂର୍ବରୁ ସେମାନେ ଜଙ୍ଗଲ ସୀମାରେ ପହଞ୍ଚିପାରିଲେ ନାହିଁ । ସେମାନେ ଜଙ୍ଗଲ ସୀମାରେ ଜଣେ କାଠୁରିଆକୁ ଦେଖି ପଚାରିଲେ, "ଜଣେ ଶିକାରୀ ଜଙ୍ଗଲ ଭିତରେ ପଶିବାର ଦେଖିଛ ?"

"ହଁ, ଜଣେ ଶିକାରୀ କୁ ଦେଖିଛୁ ।"

"କେତେବେଳେ ?"

"ପ୍ରାୟ ଘଣ୍ଟାଏ ତଳେ ।"

"କିଛି ଅବାଜ ଶୁଣିଛ ?"

"ନା ।"

ଏହା ଶୁଣି ଜଭଯ୍ୟେ ଜଙ୍ଗଲ ଭିତରକୁ ଚାଲିଲେ । ଜଙ୍ଗଲ ଖୁବ ଘଞ୍ଚ । ଅତି ଉଚ୍ଚ ଶାଳ, ଫାଶୀ, ତେନ୍ତୁଳିଠାରୁ ଖୁବ ସାନ ବୁଦା ପର୍ଯ୍ୟନ୍ତ ବେଙ୍ଗାଏ ବହଳ ଭାବରେ ବଢିଥିଲେ । ଘାସଗୁଡ଼ିକ ମଣିଷ ମୁଣ୍ଡଉପରଠାରୁ ଅଦ୍ଭୁର ଅଧିକ ଦୁଇତିନିଫୁଟ ବଢିଯାଇଥିଲା । ସାନ୍ଦ୍ର ଲତା ଜହାଡ଼ି ମଧ୍ୟରେ ଖୁବ୍ ନିକଟର ଜିନିଷ ମଧ୍ୟ ଦେଖା-ପଡୁନଥିଲା । ସେଥିରେ ପୁଣି ଲଟାମାନ ଅଡ଼େଇ ଅଡ଼େଇ ତା ଭିତରେ ବାଟ କରି ଯିବା କି କଷ୍ଟକର, ତାହା କୁହାଯାଇ ନପାରେ । ବନ୍ଧୁକ ଧରି ତା ଭିତରେ ଘଣ୍ଟାଏ ପର୍ଯ୍ୟନ୍ତ ଚାଲି ଚାଲି ଗୋଟାଏ ଜାଗାରେ ଯାଇ ଠିଆ ହେଲେ । ସେ ପର୍ଯ୍ୟନ୍ତ ତାଙ୍କ କାନରେ କୌଣସି ଅବାଜ ପଡ଼ିଲା ନାହିଁ । ସେମାନେ ମନେ କଲେ, ସେତେବେଳକୁ ବୋଧ ହୁଏ ଏସବୁ ସରିଯାଇଛି, କାଠୁରିଆଟା ପବନ ଯୋଗେ ଶବ୍ଦ ଶୁଣିପାରି ନାହିଁ ।

ଜଭଯ୍ୟେ ଟିକିଏ ଠିଆ ହୋଇ ହତାଶଭାବରେ ପୁଣି ଚାଲିଲେ । କେତେବେଳେ ବାର୍ବିକେନ୍ଙ୍କ ନାମ ଧରି, କେତେବେଳେ ନିକୋଲଙ୍କ

ନାମଧରି ତାଙ୍କ ଉପରେ ତାଙ୍କ ଛାଡ଼ିଲେ । ମାତ୍ର କିଛି ଫଳହେଲା ନାହିଁ । କେବଳ ଆମୋଦପ୍ରିୟ ବିହଙ୍ଗମାନେ ମନୁଷ୍ୟର ଶବ୍ଦରେ ସନ୍ତ୍ରସ୍ତ ହୋଇ ଲତାମାନଙ୍କରେ ଲୁଚିଗଲେ ଏବଂ ମୃଗମାନେ ଭୟ-ବ୍ୟାକୁଳ ପ୍ରାଣରେ ଏଣେତେଣେ ପଳାଇଗଲେ । ଏ ଦୁହେଁ ଅଳ୍ପ ଖଣ୍ଡେ ବାଟ ସେଠୁପରି ଗୁଳି ତାଙ୍କ ଉପରେ ତାଙ୍କ ଛାଡ଼ିଲେ । ମାତ୍ର କୌଣସି ଅଡ଼ୁ କିଛି ଜବାବ୍ ପାଇଲେ ନାହିଁ । ଏମାନଙ୍କ ମନରେ ନିରାଶଭାବ ମାଡ଼ିଆସିଲା । ଅଳ୍ପ ଅଧିକ ଅଗ୍ରସର ହେବାକୁ ଅର୍ଜୁନଙ୍କର ଇଚ୍ଛା ହେଲା ନାହିଁ । ସେ ସେକଥା କହୁଥିଲା-ବେଳକୁ ମାଷ୍ଟିନ୍ ତାଙ୍କୁ ଚୁପ୍ ହେବାକୁ ସଂକେତ କରି କହିଲେ, "କୁଦା ଆରପଟେ ଜଣେ ମଣିଷ ଥିଲାପରି ବୋଧହେଉଛି । ସେ ହଲ୍ ଚଲ୍ ହେଉନାହିଁ । ତା ହାତରେ ରାଇଫଲ୍ ଥିଲାପରି ଦିଶୁନାହିଁ । ସେ କଣ କରୁଛି ?"

"ତୁମେ ତାକୁ ଚିହ୍ନି ପାରୁଛ ?"

"ହଁ ।"

"ସେ କିଏ ?"

"କାପ୍ଟେନ୍ ନିକୋଲ ।"

"ସେ କଣ କରୁଛନ୍ତି ?"

ସେ ଦୁହେଁ ଅଳ୍ପ ପରଶ ପାହୁଣ୍ଡ ଅଗ୍ରସର ହୋଇ ଦେଖିଲେ, ଦୁଇଟା ବଡ଼ ଗଛରେ ଗୋଟାଏ ବଡ଼ ଜାଲ ଟେକା ହୋଇଛି । ଗୋଟିଏ ଚଢ଼େଇ ତହିଁରେ ପଡ଼ି ଛଟପଟ ହେଉଛି । ଗୋଟାଏ ଭୀଷଣ ମାଙ୍କଡ଼ଶା ସେ ଜାଲକୁ ପାଖ ଗଛ ଡାଳରେ ବସିଛି । ସେ ଚଢ଼େଇ କୁ ଗ୍ରାସ କରିବାକୁ ଅଗ୍ରସର ହେଉଥିଲା । ମାତ୍ର ନିକୋଲ

ତାକୁ ବାଧା ଦେବାରୁ ସେ ତାଙ୍କ ଭୟରେ ଆଉ ଚଢ଼େଇ ପାଖକୁ ଆସିପାରିଲା ନାହିଁ । ନିକୋଲ୍ ଅତ୍ୟନ୍ତ ଅସ୍ତେ ଜାଲରୁ ପକ୍ଷୀଟିକ ଧରି ଟିକଏ ଅଉଁଶିଲେ ଏବଂ ସଙ୍ଗେ ସଙ୍ଗେ ଉଡ଼େଇ ଦେଲେ । ଚଢ଼େଇ ଆନନ୍ଦରେ କଳଧ୍ୱନି କରି ବୃକ୍ଷଗହଳ ଭିତରେ କୁଆଡ଼େ ଉଡ଼ି ଗୁଲିଗଲା । ସେ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ନିକୋଲ ତାକୁ ଗ୍ରହିଁ ରହିଲେ । ସେ ତାଙ୍କ ବିପଦ ସମ୍ବନ୍ଧରେ ଆଦୌ କିଛି ଭାବୁ ଥିବାର ଜଣା ଯାଉନଥିଲା । ବରଂ ବିପନ୍ନ ଚଢ଼େଇଟିକି ମୁକ୍ତି ଦେଇ ସେ ଯେଉଁ ଆନନ୍ଦ ଉପଭୋଗ କରୁଥିଲେ, ତାହା ତାଙ୍କ ମୁହଁରେ ପ୍ରକଟି-ପଡୁଥିଲା । ଏ ସମୟରେ ସେ ହଠାତ୍ ଶୁଣିପାରିଲେ—

"ତୁମ୍ଭେ ଯେତିକି ସାହସୀ, ସେତିକି ଦୟାଳୁ ମଧ୍ୟ ।"

"ଅର୍ଡ଼ାନ୍ ! ଆପଣ କୁଆଡ଼େ ?"

"ନିକୋଲ ! ତୁମ୍ଭଙ୍କୁ ଅଭିବାଦନ କରିବାକୁ ଏବଂ ବାର୍ବିକେନ୍ ତୁମ୍ଭ ହାତରେ ବା ତୁମ୍ଭେ ବାର୍ବିକେନ୍‌ଙ୍କ ହାତରେ ଖୁନ ହେବା ପୂର୍ବରୁ ଉଭୟଙ୍କୁ ରକ୍ଷା କରିବାକୁ ।"

"ବାର୍ବିକେନ୍ ? ମୁଁ ତାକୁ ଦୁଇ ଘଣ୍ଟା ହେଲା ଖୋଜୁଛି । ପାଉ ନାହିଁ, ସେ କୁଆଡ଼େ ଲୁଚିଛି ?"

"ନିକୋଲ ! ଏଇଟା ଭଦ୍ରତା ହେଲାନାହିଁ । ବିପକ୍ଷକୁ ସମ୍ମାନ କରିବା ଉଚିତ୍ । ଅସ୍ଥିର ହୁଅ ନାହିଁ । ଯଦି ସେ ବଞ୍ଚିଥାନ୍ତି, ଆମେ ତାଙ୍କୁ ନିଶ୍ଚୟ ପାଇବା । ସେ ଯେବେ ଚଢ଼େଇଟିଏ ବିପଦରୁ ଉଦ୍ଧାର କରି ଆନନ୍ଦ ଅନୁଭବ କରୁନଥିବେ, ତେବେ ନିଶ୍ଚୟ ତୁମ୍ଭଙ୍କୁ ଅପେକ୍ଷା କରିଥିବେ । ତେବେ ମୁଁ ମାଇକେଲ୍ ଅର୍ଡ଼ାନ୍ କହୁଛି,

ତୁମ୍ଭେ ତାଙ୍କୁ ଭେଟିଲା ପରେ ଅଉ ଉଭୟଙ୍କ ଭିତରେ ଯୁଦ୍ଧ ହେବ ନାହିଁ ।"

"ବାର୍ବିକେନ୍ ଓ ମୋ ଭିତରେ ? ନା, ନା, ଆମଭିତରୁ ଜଣେ ଶେଷ ନମଲେ ଶାନ୍ତି ହେବ ନାହିଁ ।"

"ଆସ, ଆସ, ତୁମ୍ଭଭଳି ସାହସୀ ଲୋକେ ପରସ୍ପରକୁ ଯେତେ ଘୃଣା କଲେ ମଧ୍ୟ ସମ୍ମାନ କରିଥାନ୍ତି । ତୁମ୍ଭେ ଯୁଦ୍ଧ କରିବ ନାହିଁ ।"

"ମୁଁ ଯୁଦ୍ଧ କରିବି, ସାର୍ ।"

"ନା, କେବେ ନୁହେଁ । ତୁମ୍ଭେ ବା ସଭାପତି କେହି ତାହା ଭୁଲରେ ପଡ଼ିବେ ନାହିଁ । କାରଣ ମୁଁ ଉଭୟ ପ୍ରତିଦ୍ୱନ୍ଦ୍ୱୀଙ୍କ ଆଗରେ ଏପରି ଗୋଟିଏ ପ୍ରସ୍ତାବ ପେଶ୍ କରିବି, ଯାହା ଉଭୟେ ଗ୍ରହଣ କରିବାକୁ ଆଗ୍ରହ କରିବେ ।"

"ସେ ପ୍ରସ୍ତାବ କଅଣ ?"

"ଧୈର୍ଯ୍ୟଧର, ମୁଁ ତାହା ବାର୍ବିକେନ୍‌ଙ୍କ ଆଗରେ ପ୍ରକାଶ କରିବି ।"

ତା ପରେ ଉଭୟେ ନୀରବରେ ଅଗ୍ରସର ହେଲେ । ନିକୋଲ୍ ତାଙ୍କ ବନ୍ଧୁକରୁ ଟୋଟା ଖୋଲିଦେଇ ତାକୁ କାନ୍ଧରେ ରଖି ଚାଲିଲେ । ସେମାନେ ଅଧ ଘଣ୍ଟାଏ ପର୍ଯ୍ୟନ୍ତ ଚାଲି ଚାଲି ବାର୍ବି-କେନ୍‌ଙ୍କର କୌଣସି ସୂଚନା ପାଇଲେ ନାହିଁ । ଖଣ୍ଡେ ଦୂରରେ ମନୁଷ୍ୟ ମୁଣ୍ଡଟିଏ ଦେଖି ମାଷ୍ଟନ୍ ଚମକି ପଡ଼ିଲେ । ତାର ସମସ୍ତ

ଦେହ ଘାସରେ ଘୋଡ଼େଇ ହୋଇଥିଲା । ସେମାନେ ପ୍ରାୟ ୨୦ ଫୁଟ୍ ଦୂରରୁ ତାଙ୍କୁ ଚିହ୍ନି ପାରିଲେ । ବାର୍ବିକେନ୍ ମୋଟେ ହଲ୍‌ଚଲ୍ ହେଉନଥିଲେ । ଅର୍ଡାନ୍ ଆଗକୁ ଧାଇଁ ଯାଇ ଡାକିଲେ, "ବାର୍ବିକେନ୍ ! ବାର୍ବିକେନ୍ !"

କିନ୍ତୁ ଉତ୍ତର ନାହିଁ କି ସେ ମୋଟେ ହଲିଲେ ନାହିଁ । ସେମାନେ ତାଙ୍କ ନିକଟରେ ପହଞ୍ଚି ଦେଖିଲେ, ବାର୍ବିକେନ୍ ହାତରେ ପେନ୍‌ସିଲ୍ ଧରି ନୋଟ୍ ଖାତାରେ କେତେକ ଜ୍ୟାମିତିକ ଅଙ୍କ ଲେଖୁଥିଲେ । ତାଙ୍କ ଖୋଲା ବନ୍ଧୁକ ପାର୍ଶ୍ୱରେ ପଡ଼ିଥିଲା । ସେ ବିରାଟ ପଣ୍ଡିତ, ଅଙ୍କରେ ଏତେ ନିବିଷ୍ଟ ଥିଲେ ଯେ ସେ ତାଙ୍କ ଦ୍ୱନ୍ଦ୍ୱ ବା ପ୍ରତିଦ୍ୱନ୍ଦ୍ୱୀ କଥା ଏକବାରେ ଭୁଲି ଯାଇଥିଲେ । ତେଣୁ ସେ ତାଙ୍କ ବନ୍ଧୁମାନଙ୍କୁ ଦେଖିପାରି ନ ଥିଲେ । ଯେତେବେଳେ ଅର୍ଡାନ୍ ତାଙ୍କ ପିଠିରେ ହାତ ପକେଇ ଦେଲେ, ସଭାପତି ଉଠିପଡ଼ି ତାଙ୍କୁ ବିସ୍ମୟ-ଭରା ଦୃଷ୍ଟିରେ ଚାହିଁଲେ । ତାପରେ ପାଟିକରି କହିଲେ, "ଓ ! ତୁମେ ଅସିଛ ? ମୁଁ ସେ କଥା ପାଇଗଲି ।"

ଅର୍ଡାନ୍—"କେଉଁ କଥା ?"

ସଭାପତି—"ସେ କଥା କପରି ହେବ ?"

ଅର୍ଡାନ୍—"କେଉଁ କଥା କପରି ହେବ ?"

ସଭାପତି—"ଗୋଲା ନିକ୍ଷିପ୍ତ ହେଲାବେଳେ ଯେଉଁ ଧକ୍କା ଲାଗିବ, ତାକୁ କପରି ବାଧା ଦିଆଯାଇ ପାରିବ ?"

ମାଇକେଲ୍ ନିକୋଲଙ୍କ ଆଡ଼କୁ କଣେଇଁ କଣେଇଁ ଚାହିଁ ପଚାରିଲେ "ସତେ ?"

ସଭାପତି—"ହଁ । ପାଣି, କେବଳ ପାଣି ସ୍ପ୍ରିଂପର କାମ ଦେବ । ଓ ! ମାଷ୍ଟନ୍ ! ତୁମେ ମଧ୍ୟ ?"

ଅର୍ଡାନ୍, "ହଁ, ସେ, ଅଉ ତାଙ୍କ ସଙ୍ଗେ କାପ୍ଟେନ୍ ନିକୋଲ୍ ମଧ୍ୟ ଅସିଛନ୍ତି ।"

ବାର୍ବିକେନ୍ ଚିତ୍କାର କରି ସାଙ୍ଗେ ସାଙ୍ଗେ ଉଠିପଡ଼ି କହିଲେ, "ନିକୋଲ୍ ? ମୋତେ କ୍ଷମାକର, ନିକୋଲ୍ ! ମୁଁ ଭୁଲି ଯାଇଥିଲି । ମୁଁ ଏବେ ପ୍ରସ୍ତୁତ ।"

ଅର୍ଡାନ୍ ଉଭୟଙ୍କ ମଧ୍ୟରେ ଠିଆ ହୋଇ କହିଲେ, "ଭାଗ୍ୟର କଥା ଯେ ତୁମ୍ଭ ଦୁହିଁଙ୍କ ଭଳି ସାହସୀ ପ୍ରତିଦ୍ୱନ୍ଦୀଙ୍କର ଅଗରୁ ଦେଖାହୋଇ ନାହିଁ । ତା ହୋଇଥିଲେ ଆମ୍ଭେମାନେ ଉଭୟଙ୍କ ଭିତରୁ ଜଣକ ପାଇଁ ବର୍ତ୍ତମାନ ଶୋକ କରୁଥାନ୍ତୁ । ତେଣୁ ଈଶ୍ୱରଙ୍କୁ ଧନ୍ୟବାଦ ଯେ, ସେ ତାହା କରାଇ ଦେଇ ନାହାନ୍ତି । ଅଉ ଏଣିକି ଭୟର କିଛି କାରଣ ନାହିଁ । ଯଦି ଜଣେ ନିଜର ପ୍ରତିଦ୍ୱନ୍ଦ୍ୱିତା ଭୁଲି ଯାନ୍ତ୍ରିକ ସମସ୍ୟାରେ ବୁଡ଼ିଯାଏ ଏବଂ ଅଉ ଜଣେ ସେହିପରି ମାକଡ଼ଶା ସଙ୍ଗେ କୌଶଳ ଖେଳୁଥାଏ, ତେବେ ତାଙ୍କ ପ୍ରତିଦ୍ୱନ୍ଦିତା ଜଣେ ଲୋକର ଅନିଷ୍ଟ ଘଟାଇବ କିପରି ?" ଅର୍ଡାନ୍ ଏହା କହି କାପ୍ଟେନ୍ଙ୍କର ମାକଡ଼ଶା ସଙ୍ଗେ ଯେଉଁ ଲଢ଼େଇ ଚାଲିଥିଲା ତାହା ଆନୁପୂର୍ବିକ ବାର୍ବିକେନ୍ଙ୍କୁ ଶୁଣାଇଲେ । ତାପରେ ସେ ଉଭୟଙ୍କୁ ପଚାରିଲେ, "ଏପରି ଅବସ୍ଥାରେ ଏତେବଡ଼ ବୈଜ୍ଞାନିକ ପଣ୍ଡିତ ଦୁଇଜଣ ଗୁଳି ଚୋଟରେ ପରସ୍ପର ମୁଣ୍ଡ ଭାଙ୍ଗି ପାରନ୍ତି କି ?

ଏପରି ହାସ୍ୟରସପୂର୍ଣ୍ଣ ଅବସ୍ଥା ଭିତରେ ଉଭୟ ଶତ୍ରୁଙ୍କ ମଧ୍ୟରେ ଗୋଟାଏ କି ଅଭାବନୀୟ ଅବସ୍ଥା ଅସିଗଲା ଯେ ଉଭୟେ

ପରସ୍ପର ଅଡ଼କୁ ଚାହିଁବାକୁ ସଂକୁଚିତ ହେଲେ । ଆର୍ଡାନ୍ ଏହା ଲକ୍ଷ୍ୟ କରି ଉଭୟଙ୍କୁ ମିଳାଇ ଦେବାକୁ ଚେଷ୍ଟା କଲେ ।

"ଦର ଦର ହାସ୍ୟଭରା ମୁହଁରେ ଆର୍ଡାନ୍ କହିଲେ ବନ୍ଧୁଦ୍ୱୟ ! ଉଭୟଙ୍କ ଭିତରେ ଯାହା ଘଟିଛି, ତାହା କେବଳ ସାମାନ୍ୟ ଭୁଲରେ ହୋଇ ଯାଇଛି । ସେ କଥା ଉଭୟଙ୍କ ଭିତରେ ପ୍ରମାଣ କରିବା ମଧ୍ୟ ଅଳ୍ପ ସରିଗଲା । ଯେତେବେଳେ ଉଭୟେ ଜୀବନକୁ ବିପନ୍ନ କରିବାକୁ ପ୍ରସ୍ତୁତ, ମୁଁ ଗୋଟିଏ ପ୍ରସ୍ତାବ କରୁଛି ତାହା କରନ୍ତୁ ।"

ନିକୋଲ—"କହନ୍ତୁ ।"

ଆର୍ଡାନ୍—"ବନ୍ଧୁ ବାର୍ବିକେନ୍ ବିଶ୍ୱାସ କରୁଛନ୍ତି ଯେ ତାଙ୍କ ଗୋଲା ଚନ୍ଦ୍ର ପର୍ଯ୍ୟନ୍ତ ସଳଖ ପଥରେ ଚାଲିଯିବ ।"

ବାର୍ବିକେନ୍—"ହଁ ନିଶ୍ଚୟ !"

ଆର୍ଡାନ୍—"ଏବଂ ବନ୍ଧୁ ନିକୋଲ କହୁଛନ୍ତି ଯେ ତାହା ପୁଣି ପୃଥିବୀ ଉପରେ ଖସିପଡ଼ିବ ।"

ନିକୋଲ—"ନିଶ୍ଚୟ ! ମୋର ସେହି ମତ ।"

ଆର୍ଡାନ୍—"ଉତ୍ତମ । ଆପଣମାନେ ସ୍ୱୀକାର କରିବାକୁ ମୁଁ ବାଧ କରୁନାହିଁ । କିନ୍ତୁ କହୁଛି, ଚାଲନ୍ତୁ ଏକ ସଙ୍ଗେ ଯିବା ଓ ଦେଖିବା, ଆମ୍ଭେମାନେ ବାଟରେ ଅଟକିବା କି ନାହିଁ ।"

ଏମ୍ଭାନ୍ ଏହା ଶୁଣି ହତଭାଗ ହୋଇଗଲେ । ଦୁଇ ପ୍ରତିଦ୍ୱନ୍ଦ୍ୱୀ ଏପରି ଅଦ୍ଭୁତ ପ୍ରସ୍ତାବରେ ଅର୍ଦ୍ଧେକ ପରସ୍ପର ଅଡ଼କୁ ଚାହିଁ

ଚାହିଁଲେ । ନିକୋଲାସ୍ କଣ କହିବେ, ଶୁଣିବାକୁ ବାର୍ବିକେନ ଅପେକ୍ଷା କଲେ; ବାର୍ବିକେନ କଣ କହିବେ, ଶୁଣିବାକୁ ନିକୋଲ୍ ଅପେକ୍ଷା କଲେ ।

ଆର୍ଡାନ୍—"ଆଉ ତ ଧକ୍କାର ଭୟ ନାହିଁ ?"

ବାର୍ବିକେନ୍—"ମୁଁ ଏକମତ ।"

ନିକୋଲ୍—"ମୁଁ ଏକମତ ।"

ଆର୍ଡାନ୍ ଆନନ୍ଦରେ ଚିତ୍କାର କରି କହିଲେ, "ହରି ହରି ବୋଲ । ଏବେ ସବୁ କଥା ନିଷ୍ପତ୍ତି ହେଲା । ଦୁହେଁ ମିଳିଯାଆନ୍ତୁ ।" ଏହା କହି ସେ ଉଭୟଙ୍କ ହାତ ମିଳାଇ ଦେଲେ । ଉଭୟେ ବନ୍ଧୁଭାବରେ ପରସ୍ପରର କରମର୍ଦ୍ଦନ କଲେ ।

---

—ଷୋହଳ—

# ଯୁକ୍ତରାଷ୍ଟ୍ରର ନୂତନ ସମ୍ମାନିତ ପ୍ରଜା

ସଭାପତି ବାର୍ବିକେନ୍ ଓ କାପ୍‌ଟେନ୍ ନିକୋଲଙ୍କ ମଧ୍ୟରେ ଦ୍ୱନ୍ଦ୍ୱପାଇଁ ପ୍ରତିଜ୍ଞା, ତା ପାଇଁ ଉଭୟଙ୍କର ରାଇଫଲ୍ ଧରି ଟାଂପା ଜଙ୍ଗଲରେ ପ୍ରବେଶ, ଉଭୟଙ୍କର ଦ୍ୱନ୍ଦ୍ୱକଥା ଭୁଲି ବାଉଳା ବିଷୟରେ ଧ୍ୟାନ, ମାଇକେଲ୍ ଆର୍ଡାନ୍ ଓ ଜେ. ଟି. ମାଷ୍ଟନ୍‌ଙ୍କର ଜଙ୍ଗଲରେ ଆକସ୍ମିକ ପ୍ରବେଶ, ଆର୍ଡାନ୍‌ଙ୍କ ଅଭିନବ ପ୍ରସ୍ତାବରେ ଉଭୟଙ୍କର ସମ୍ମତି ଏବଂ ବହୁ କାଳର ଶତ୍ରୁତାଭୁଲି ବନ୍ଧୁଭାବରେ ମିଳନ, ଏ ସମସ୍ତ ଖବର ତାର ବଳରେ ସେହି ଦିନ ଭିତରେ ସମଗ୍ର

ଅମେରିକାରେ ବ୍ୟାପିଗଲା । ଖବରକାଗଜମାନଙ୍କରେ ଏ ଖବର ବଡ଼ ବଡ଼ ଅକ୍ଷରରେ ବାହାରି ଦେଶର ଅନ୍ଧ ସନ୍ଧିରେ ପ୍ରଚାରିତ ହୋଇଗଲା । ସବୁ ଶ୍ରେଣୀର ଲୋକେ ଏ ବିରାଟ ବୈଜ୍ଞାନିକ ଦ୍ୱୟଙ୍କ ମିଳନରେ ଏତେ ଆଶ୍ୱସ୍ତି ଅନୁଭବ କଲେ ଯେ ସ୍ଥାନେ ସ୍ଥାନେ ସଭାମାନଙ୍କର ଆନନ୍ଦସୂଚକ ବାର୍ତ୍ତାମାନ ସେ ଦୁହିଁଙ୍କ ନିକଟକୁ ତାରରେ ପଠାଇଲେ । ଅର୍ଜୁନଙ୍କ ସଙ୍ଗେ ଏ ଦୁହେଁ ମଧ୍ୟ ଚନ୍ଦ୍ର-ଲୋକକୁ ଯିବେ ବୋଲି ସ୍ଥିର କରିଥିବାରୁ ସେଥିଲାଗି ବକ୍ତବ୍ୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ନିକଟକୁ ଉତ୍ସାହ ଓ ଆଶୀର୍ବାଦର ବାର୍ତ୍ତାମାନ ପ୍ରତି ଘଣ୍ଟାରେ ଦଶଟା ହିସାବରେ ଆସିବାକୁ ଲାଗିଲା । ସର୍ବୋପରି ଅର୍ଜୁନ ଏ ସମସ୍ତ ସୁଖକର ଅନୁଷ୍ଠାନର କର୍ତ୍ତା ଓ ମୂଳ କାରଣ ଥିବାରୁ ତାଙ୍କ ପ୍ରତି ଧନ୍ୟବାଦର ବାର୍ତ୍ତା ସ୍ୱତଃ ସ୍ୱତନ୍ତ୍ର ଭାବରେ ଆସିଲା । ବଡ଼ଠାରୁ ସାନ ପର୍ଯ୍ୟନ୍ତ ହଜାର ହଜାର ଲୋକ ପ୍ରତ୍ୟହ ତାଙ୍କ ନିକଟକୁ ଆସି ଧନ୍ୟବାଦ ଅର୍ପଣ ସଙ୍ଗେ ସଙ୍ଗେ କରମର୍ଦ୍ଦନ କରି ତାଙ୍କୁ ବିଶେଷ ଭାବରେ ଅଭିନନ୍ଦିତ କଲେ । ଏ ଅବସ୍ଥା କ୍ରମଶଃ ଏତେ ବୃଦ୍ଧି ପାଇଲା ଯେ ଅର୍ଜୁନ ଧନ୍ୟବାଦର ଉତ୍ତର ଦେବାରେ ତାଙ୍କର ଗଳା ବସିଗଲା ଏବଂ କରମର୍ଦ୍ଦନରେ ହାତ ପୀଡ଼ା ହୋଇ ତହିଁରେ ପଟି ଭିଡ଼ାହେଲା ଏବଂ ତହିଁରେ ଗୋଲଡ଼ସ୍ ଲୋଶନ ସିଞ୍ଚାହେବା ପର୍ଯ୍ୟନ୍ତ ଗଲା ।

ଏହା ସତ୍ତ୍ୱେ ମଧ୍ୟ ନିସ୍ତାର ମିଳିଲା ନାହିଁ । ଯୁବତୀଠାରୁ ବୃଦ୍ଧା ପର୍ଯ୍ୟନ୍ତ ଶତ ଶତ ରମଣୀ ଅର୍ଜୁନଙ୍କୁ ଦେଖିବାପାଇଁ ତାହାଙ୍କ ଚଢ଼ି ଟାଂପାକୁ ଧାଇଁଲେ ଏବଂ ନିଜେ ନିଜେ ଶୁଭେଚ୍ଛା ଜଣାଇ ପଟି ବନ୍ଧା କର ସଙ୍ଗେ ନିଜ ନିଜ କର ମିଳାଇଲେ । ଏପରିକି ସେମାନଙ୍କ ଭିତରୁ କେତେକ ଯୁବତୀ ତାଙ୍କ ପ୍ରେମରେ ପଡ଼ିଯିବା ପାଇଁ

ବସିଲେ । ମାତ୍ର ଅର୍ଡ୍ଦାନ୍‌ଙ୍କ ଧ୍ୟାନ ଧାରଣା ଅନ୍ୟ ଦିଗରେ ବ୍ୟାପୃତ ଥିବାରୁ ସେମାନେ ତାହାଁରୁ କ୍ଷାନ୍ତ ହେଲେ । ତାଙ୍କ ଲୋକପ୍ରିୟତା ଏତେ ପରିମାଣରେ ବଢିଲା ଯେ, ଲୋକେ ତାଙ୍କୁ ଫରାସୀ ନ କହି ଆମେରିକା ବାସୀ ବୋଲି କହିଲେ ଏବଂ ତାଙ୍କୁ ନିତାନ୍ତ ଆପଣାର କରିନେଲେ । ଅବଶେଷରେ ଏପରି ହେଲା ଯେ ଯୁକ୍ତରାଷ୍ଟ୍ରର ସଭାପତି ତାଙ୍କୁ ଆମେରିକାର ଶ୍ରେଷ୍ଠ ସମ୍ମାନ ଜଣାଇଲେ ଏବଂ ଆମେରିକା ସଂଯୁକ୍ତ ରାଷ୍ଟ୍ରର ବିଶିଷ୍ଟ ନାଗରିକ ଉପାଧିରେ ମଣ୍ଡିତ କଲେ । ଗନ୍‌କ୍ଲବ୍‌ର ମେମ୍ବରମାନେ ଏଥିପାଇଁ ବିପୁଳ ଉତ୍ସବ କଲେ ଏବଂ ଭୋଜି ଆମୋଦରେ ଗୋଟିଏ ଦିନ କଟିଗଲା । ଏ କାର୍ଯ୍ୟରେ ବଡ଼ ଭାଗ ନେଇଥିଲେ ବାର୍ବିକେନ୍, ନିକୋଲ୍ ଓ ମାଷ୍ଟନ୍ ।

ଏ ଘଟଣାପରେ ଅର୍ଡ୍ଦାନ୍ ବନ୍ଧୁମାନଙ୍କ ସହ ଷ୍ଟୋନାହିଲ୍‌କୁ ଗଲେ ଏବଂ ସେଠାରେ ବିରାଟ ତୋପକୁ ଦେଖି ବିସ୍ମିତ ହୋଇଗଲେ । ତାପରେ କ୍ରେନ୍ ସାହାଯ୍ୟରେ ତାଙ୍କୁ ନଅଶହ ଫୁଟ ବିବର ମଧ୍ୟକୁ ଖସାଇ ଦିଆଗଲା । ଅର୍ଡ୍ଦାନ୍ ତାହା ଦେଖି ତାହା ସମ୍ପୂର୍ଣ୍ଣ ଠିକ୍ ହୋଇଛି ବୋଲି ଶତମୁଖରେ ପ୍ରଶଂସା କଲେ ଏବଂ ଏହି ତୋପ ତାଙ୍କୁ ଚନ୍ଦ୍ରଲୋକକୁ ପଠାଇବ ବୋଲି ବିପୁଳ ଆନନ୍ଦରେ ଅଧୀର ହୋଇଗଲେ ।

ଏ ସମୟରେ ବାର୍ବିକେନ୍ ଗୋଟାଏ ନୂଆ କଳ୍ପନାରେ ମନୋନିବେଶ କରିଥିଲେ । ଗୋଲା ଉଡ଼ିଲାବେଳେ ତାହାଁରୁ କେତେ ପରିମାଣରେ ଧକ୍‌କା ଜାତ ହେବ, ତାହା ପରୀକ୍ଷା କରିବା ପାଇଁ ଗୋଟାଏ ବଡ଼ଣ ଇଞ୍ଚିଆ କମାଣ ପେନ୍‌ସାକୋଲା ଅର୍ସେନାଲ୍‌ରୁ ମଗାଇଲେ । ତାହା ସମୁଦ୍ର କୂଳର ଗୋଟିଏ ଛୋଟ ବନ୍ଦର ନିକଟରେ ସ୍ଥାପିତ ହେଲା । ତାଙ୍କ ଉଦ୍ଦେଶ୍ୟ, ବନ୍ଧୁକ ଛଳେ ନ ପଡ଼ି

ପାଣିରେ ପଡ଼ିବ ଏବଂ ପତନର ଧକ୍କା ତାଙ୍କୁ ଭୋଗିବାକୁ ପଡ଼ିବ ନାହିଁ । ବନ୍ଧୁକରୁ ଛୁଟିବା ବେଳର ଧକ୍କାକୁ ସେ ପରୀକ୍ଷା କରିବାକୁ ଚାହୁଁଥିଲେ, ପଡ଼ିବା ବେଳର ଧକ୍କା ପାଇଁ ନୁହେଁ ।

ଏ ପରୀକ୍ଷା ପାଇଁ ଗୋଟାଏ ଶୂନ୍ୟଗର୍ଭ ଗୋଳା ତିଆରି ହେଲା । ତା ଭିତରେ ଲୁହା ତାରର ଖୁବ ବହଳା ଜାଲି ଭର୍ତ୍ତି କରାଗଲା ଏବଂ ତା ମଧ୍ୟରେ ଖୁବ ମୋଟା ତୁଳା ଗଦାରେ ଶୂନ୍ୟଗର୍ଭ ପେଣ୍ଡୁ ରଖାଗଲା । ତା ଭିତରେ ଗୋଟିଏ ବଡ଼ ବିରାଡ଼ି ଓ ଗୋଟିଏ ଛୋଟ ଗୁଣ୍ଡୁଚି ରଖି କବାଟ ବନ୍ଦ କରିଦେଲେ ଏବଂ ତହିଁରେ ପେଚ ଅଣ୍ଟିଦେଲେ । ତୋପ ଭିତରେ ୧୬୦ ପାଉଣ୍ଡ ବାରୁଦ ଓ ଗୋଳାକୁ ଲଦି ନିଆଁ କରିଦେଲେ । ସେ ଗୋଳା ଖୁବ ଜୋରରେ ଉପରକୁ ଉଠିଗଲା ଏବଂ ଆକାଶର ଏକ ହଜାର ଫୁଟ ଉପରକୁ ଯାଇ ସେଠାରେ ଗୋଟାଏ ଜ୍ୟୋତିର୍ମୟ ବୃତ୍ତ ଅଙ୍କିତ କଲା । ତାପରେ ଧୁଇଁ ଧୁଇଁ ଆସି ସମୁଦ୍ର ତରଙ୍ଗ ଭିତରେ ପଡ଼ିଲା ।

ମୁହୂର୍ତ୍ତେ ବିଳମ୍ବ ନକରି ଗୋଟାଏ ଜାହାଜ ପତନ ସ୍ଥାନକୁ ପଠାଗଲା । ସୁଦକ୍ଷ ବୁଡ଼ାଳୀମାନେ ପାଣି ଭିତରକୁ ବୁଡ଼ିଯାଇ ଗୋଳା ଦେହରେ ଜଞ୍ଜିର ବାନ୍ଧିଦେଲେ । ତାକୁ ସଙ୍ଗେ ସଙ୍ଗେ ଉପରକୁ ଉଠାଇ ଅଣାଗଲା । ଗୋଳାକୁ ଜାହାଜରେ ରଖି ପେଚ ଖୋଲି କବାଟ ଉଠାଇ ଦେଲାବେଳକୁ ତା ଭିତରୁ ବିରାଡ଼ିଟି ଡେଇଁ ବାହାରି ଆସିଲା । ମାତ୍ର ଗୁଣ୍ଡୁଚିଟି ମିଳିଲା ନାହିଁ । ତାକୁ ବିରାଡ଼ି ଖାଇ ଯାଇଛି ବୋଲି ଜଣାଗଲା ।

ଏ ପରୀକ୍ଷାରେ ଅର୍ଡ଼ାନ୍, ବାର୍ବିକେନ୍, ନିକୋଲ୍ ଓ ସାଙ୍ଗମାନଙ୍କର ଆଗ୍ରହ ଅଧିକ ହେବା ସ୍ୱାଭାବିକ । ବିରାଡ଼ିଠାରେ

ସେମାନେ କୌଣସି ଭାବାନ୍ତର ଲକ୍ଷ୍ୟ କଲେ ନାହିଁ । ତେଣୁ ସେମାନେ ସ୍ଥିର କଲେ ଯେ ବହଳା ସ୍ପ୍ରିଂ ଓ ତୁଳାଗଦ୍ଦି ଅଭ୍ୟନ୍ତରର ଧକ୍କାକୁ ବହୁ ପରିମାଣରେ କମାଇ ଦେଇଛି । ବିଶେଷ ସାମାନ୍ୟ ପରିମାଣରେ ଭୟଙ୍କର ଧକ୍କା ଅନୁଭବ କରିଥିବାର ତା ଲକ୍ଷଣରୁ ଜଣାଗଲା ନାହିଁ ।

ଏ ପରୀକ୍ଷାରେ ସେମାନଙ୍କଠାରୁ ଭୟ ଓ ସନ୍ଦେହ ବହୁ ଗୁଣରେ ଦୂରିଗଲା । ଏ ଘଟଣାରୁ ପ୍ରମାଣିତ ହେଲା ଯେ ବାର୍ବିକେନ୍‌ଙ୍କ କଳ୍ପିତ ଜଳର ବ୍ୟବସ୍ଥା ଧକ୍କାକୁ ବେଶ୍‌ ଏ କମେଇ ଦେଇ ପାରିବ ।

---

—ସତର—

## ଗୋଳା ଭିତରେ ବୈଠକଖାନା

ପ୍ରସିଦ୍ଧ ତୋପ କାମ ଶେଷ ହେବା ସଙ୍ଗେ ସଙ୍ଗେ ସର୍ବସାଧାରଣଙ୍କ ଦୃଷ୍ଟି ଗୋଳାଆଡ଼କୁ ଆକୃଷ୍ଟ ହେଲା । ସେହି ଗୋଳାରେ ତିନିଜଣ ବିଖ୍ୟାତ ବ୍ୟକ୍ତି ବସିଛି ଶୂନ୍ୟମଣ୍ଡଳ ଭେଦ କରି ଚନ୍ଦ୍ରମଣ୍ଡଳ ପର୍ଯ୍ୟନ୍ତ ଯିବେ । ତେଣୁ ଗୋଳାପ୍ରତି ସାଧାରଣର ବିଶେଷ ଆଗ୍ରହ ବଢ଼ିବା ସ୍ୱାଭାବିକ । ସେପ୍ଟେମ୍ବର ତା ୩୦ ଦିନ ଆର୍ଡାନଙ୍କ ପ୍ରସ୍ତାବ ଅନୁସାରେ ଗୋଳାର ଆକୃତି ଯେ ବଦଳି ଯିବ, ଏ କଥା କେହି ଭୁଲି ଯାଇ ନ ଥିଲେ ।

କମିଟି ଆଗରୁ ନିଷ୍ପତ୍ତି କରିଥିଲା ଯେ ଗୋଳାର ଆକୃତି ଗୋଲ ହେବ । ତା ହେଲେ ସେ ଶୂନ୍ୟକୁ ଘୂରି ଘୂରି ତା ଇଚ୍ଛାରେ ଗତି

ଭରିବ । କିନ୍ତୁ ଅର୍ଡାନ୍‌ଙ୍କ ପ୍ରସ୍ତାବରେ ବାର୍ବିକେନ୍ ଭାବିଲେ, ଗୋଲାର ଆକୃତି ଯେପରି ହେଉ ନା କାହିଁକି ସେଥିରେ କିଛି ଯାଏ ଆସେ ନାହିଁ । ତାହା ବାୟୁ ମଣ୍ଡଳକୁ ସାମାନ୍ୟ କେତେ ସେକେଣ୍ଡ ଭିତରେ ପାରି ହୋଇ ଶୂନ୍ୟରେ ପହଞ୍ଚିବ । ତେଣୁ ବର୍ତ୍ତମାନ ଏପରି ସ୍ଥିର ହେଲା ଯେ, ଯାତ୍ରୀମାନେ ତହିଁରେ ଠିଆହୋଇ ପାରିବେ ଏବଂ ସେମାନଙ୍କ ମୁଣ୍ଡ ଉପରକୁ ଓ ଗୋଡ଼ ତଳକୁ ହେବ । ଏହି ଅନୁସାରେ ଗୋଲାର ଗୋଟାଏ ନୂଆ କଳ୍ପନା (ପ୍ଲାନ) ହେଲା ଏବଂ ଅବିଳମ୍ବେ ତାହା ତିଆରି କରି ପଠାଇବାକୁ ଅଲ୍‌ବାନିର ବ୍ରେଡ୍‌ଉଇଲ୍ କମ୍ପାନୀକୁ ବରାଦ ଦିଆଗଲା ।

ନଭେମ୍ବର ତା ୨ ଦିନ ଉକ୍ତ କମ୍ପାନୀ ଅଲ୍‌ମିନିୟମ ତରଳାଇ ଗୋଲା ତିଆରି କଲା ଏବଂ ଅନତିବିଳମ୍ବେ ଷ୍ଟୋନହିଲ୍‌କୁ ପଠାଇ ଦେଲା । ତାହା ତା ୧୦ ଦିନ ନିର୍ଦ୍ଦିଷ୍ଟ ସ୍ଥାନରେ ଆସି ପହଞ୍ଚିଲା । ଅର୍ଡାନ୍, ବାର୍ବିକେନ ଓ ନିକୋଲ୍ ଗୁରୁତର ଆଗ୍ରହରେ ନିଜ ଯାନକୁ ଅପେକ୍ଷା କରି ରହିଥିଲେ ।

ଅଲ୍‌ମିନିୟମ୍ ନାମକ ଅତି ଚମତ୍କାର ଧାତୁରେ ନିର୍ମିତ ଗୋଲା ଆମେରିକା ଲୋକଙ୍କର ଶିଳ୍ପ ଗୁଣଗ୍ରାମର ପରାକାଷ୍ଠା ଦେଖାଇ ଦେଉ-ଥିଲା । ସୂର୍ଯ୍ୟ କିରଣ ପଡ଼ିଲେ ତାହା ଏତେ ତେଜସ୍ୱୀ ଦେଖାଯାଉଥିଲା ଯେ ତାହା ଆଡ଼କୁ ଚାହିଁ ହେଉ ନ ଥିଲା । ଏତେ ବଡ଼ ଗୋଟାଏ ତୁମ୍ବାକାର ଚୋକିଆ ପଦାର୍ଥ ମଧ୍ୟଯୁଗୀୟ ଗମ୍ବୁଜମାନଙ୍କ ପରି ଦିଶୁଥିଲା ।

ଏହାକୁ ଦେଖି ଅର୍ଡାନ୍ କହିଲେ, "ଆମ୍ଭେମାନେ ଗୋଟିଏ ଗୋଟିଏ ରାଜା ପରି ଏହା ଭିତରେ ରହିବା ଏବଂ ସାମାନ୍ୟ କିଛି

ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ଚନ୍ଦ୍ରଲୋକ ବାସୀଙ୍କ ଆକ୍ରମଣକୁ ପ୍ରତିହତ କରି ପାରିବା ।"

ବାର୍ବିକେନ୍ ପଚାରିଲେ, "ଏ ସ୍ଥାନ ତାହାହେଲେ ଆପଣଙ୍କୁ ସୁଖକର ବୋଧ ହେଉଛି ?"

ଆର୍ଡାନ୍—"ନିଶ୍ଚୟ ! କିନ୍ତୁ ମୋର ଦୁଃଖ ହେଉଛି, ଏହା ଯଦି ଆଉ ଟିକିଏ ସବୁଜ ହୋଇଥାନ୍ତା, ଏହାର ଅଗ୍ରଭାଗ ଅଧିକ ସୁନ୍ଦର ଦେଖା ଯାଉଥାନ୍ତା ଏବଂ ଆମେ ସେ ଅଗରେ ଗୋଟିଏ ସୁନାର ଅଣ୍ଟା ଖଞ୍ଜି ଦୁଇ କଡରେ ଦୁଇଟି ଡେଣା ଦେଇ ଜଡ଼ାଇ ଦେଇଥାନ୍ତେ ।"

ବାର୍ବିକେନ—"ଲାଭ କଅଣ ?"

ଆର୍ଡାନ୍—"ପ୍ରତ୍ୟେକ କାର୍ଯ୍ୟରେ ଟିକିଏ ସୂକ୍ଷ୍ମ କାରିଗରି ଥିଲେ ପ୍ରୀତିକର ବୋଧହୁଏ । ତେବେ ବାହାର କଥା ତ ସବୁ ଯାଉଛି । ଆଉ ହେବ ନାହିଁ । ଏବେ ଭିତରଟା ଟିକିଏ ରୁଚିକର ଭାବରେ ସଜାଇବାକୁ ମୋତେ ଅନୁମତି ଦିଅନ୍ତୁ । ପୃଥିବୀବାସୀଙ୍କର ବିଳାସ ପ୍ରତି ଏତେ ରୁଚି ଥିବାର ଦେଖି ଚନ୍ଦ୍ରବାସୀମାନେ ଯେପରି ବିସ୍ମିତ ହୋଇଯିବେ ।"

ବାର୍ବିକେନ୍—"ସେଥିଲାଗି ତୁମ୍ଭର ଯାହା ଇଚ୍ଛା ତାହା କରିପାର ମୋର କୌଣସି ଆପତ୍ତି ନାହିଁ ।"

ଏହା ବୋଲି ସେ ଧକ୍କା କମାଇବା ପାଇଁ ବାର୍ବିକେନ୍ ଯାହା କଳ୍ପନା କରିଥିଲେ ତାହା ବନ୍ଦ କରି ଦେବେ ଏବଂ ଆବଶ୍ୟକ ବୈଜ୍ଞାନିକ ଉପକରଣ ସବୁ ତା ଭିତରେ ନ ରଖିବେ ଏପରି ନୁହେଁ ।

ଗୋଲା ଭିତରେ ତିନି ଫୁଟ ଗଭୀରତାରେ ପାଣି ଭର୍ତ୍ତି କରାଗଲା । ପାଣି ଉପରେ କାଠର ଫର୍ମା ଭେଳା ଆକାରରେ ଲଗା ହେଲା । ସେ ଫର୍ମା ଗୋଲାର ଅଭ୍ୟନ୍ତରକୁ ଆବୃତ କରି ରହିଲା । ତଦ୍ଦ୍ୱାରା ଏପରି କଳ୍ପିତ ହେଲା ଯେ ଗୋଲା ନିକ୍ଷିପ୍ତ ହେଲାବେଳେ ତଳକୁ ଯେଉଁ ଧକ୍‌କା ବାଜିବ, ତାକୁ ଏ ବୃହତ୍ ଜଳଭଣ୍ଡାର କମାଇ ଦେବ । ସଙ୍ଗେ ସଙ୍ଗେ ଯେଉଁ ଉପର ଧକ୍‌କା ହେବ ସେତେବେଳକୁ ତଳ ପାଣି ଗୋଲାର ଚାରିପାଖ କାନ୍ଥକୁ ଲାଗି ଉପରକୁ ଉଠିଯାଇ ତାହା କମାଇ ଦେବ ଏବଂ ସେହି ସଙ୍ଗେ ଉପର ନଳାବାଟେ ପଦାକୁ ବାହାରି ଯିବ । ଫଳରେ ଗୋଲାର ଓଜନ କମିଯାଇ ତାହା ହାଲୁକା ହୋଇଯିବ ।

ସେହି କାଠ ଫର୍ମାର ଅଭ୍ୟନ୍ତର ଆର୍ଡାନ୍‌ଙ୍କ କଳ୍ପନା ଅନୁସାରେ ସଜ୍ଜିତ ହେଲା । ଖୁବ୍ ପତଳା ମେଡ଼ାର ବହୁତ ମୋଟା ଗଦି ଇସ୍ପାତ ତାରର ସ୍ପ୍ରିଂ ଉପରେ ସଜ୍ଜିତ ହେଲା । ସେ ସ୍ପ୍ରିଂସବୁ ଘଣ୍ଟାର ସ୍ପ୍ରିଂ ପରି କୋମଳ ଓ ବିଶେଷ ଆରାମପ୍ରଦ ।

ଗୋଲାର ଉଚ୍ଚତା ବାରଫୁଟ ଓ ବାହାର ମୋଟା ନଅଫୁଟ । ତାର କାନ୍ଥସବୁ ତଳ ଅପେକ୍ଷା ପତଳା । ଗୋଲା ନିକ୍ଷିପ୍ତ ହେଲା ବେଳେ ତଳଭାଗ ଅଗ୍ନିର ଭୀଷଣ ଦାଉ ସହିବା ପାଇଁ ମୋଟା ହୋଇଥିଲା । ତା ଭିତରକୁ ପଶିବା ପାଇଁ ମନୁଷ୍ୟ ଗଳି-ଯିବା ଭଳି ଖୋଲା ରହିଥିଲା । ତାହା ହଠାତ୍ ବନ୍ଦକରି ଦେବା ପାଇଁ ସେହି ଧାତୁର ଦରଜା ଲଗା ହୋଇଥିଲା ଏବଂ ଭିତର ପଟେ ଖୁବ୍ ଶକ୍ତ ପେଚମାନଙ୍କ ଦ୍ୱାରା ତାହା ଖୋଲା ବନ୍ଦ ହୋଇ ପାରୁଥିଲା ।

ଚନ୍ଦ୍ରଲୋକକୁ କେବଳ ଅନ୍ଧଭଳି ଚାଲିଗଲେ ତ ହେବ ନାହିଁ । ମାର୍ଗରେ ସବୁ ଦୃଶ୍ୟାବଳୀ ଦେଖି ଦେଖି ଯିବା ଦରକାର । ଏଥିପାଇଁ

ଖୁବ୍ ମୋଟା ସ୍ଥୂଳ କାଚ ତଳ ଉପର ଓ ଦୁଇ ପାର୍ଶ୍ୱରେ ଲଗା ହେଲା । ତା ଦ୍ୱାରା ଯାତ୍ରୀମାନେ ତଳ କାଚ ସାହାଯ୍ୟରେ ପୃଥିବୀକୁ ଦେଖିବେ, ଉପରେ ଚନ୍ଦ୍ରକୁ ଦେଖିବେ ଏବଂ ଦୁଇ ପାର୍ଶ୍ୱରେ ନକ୍ଷତ୍ରଖଚିତ ସୁନୀଳ ଆକାଶ ଦେଖି ପାରିବେ । ନିକ୍ଷେପ ଜନିତ ଧକ୍କାରେ ତାହା କାଳେ ନଷ୍ଟ ହୋଇଯିବ, ଏଥିପାଇଁ ଧାତୁ ନିର୍ମିତ ଘୋଡ଼ଣୀ ତହିଁରେ ଲଗା ହେଲା ଏବଂ ଯାତ୍ରୀର ଇଚ୍ଛାନୁସାରେ ତାହା ଯେପରି ସହଜରେ ଖୋଲି ବନ୍ଦ ହୋଇ ପାରିବ, ତାର ବ୍ୟବସ୍ଥା ହେଲା । ଭିତର ପବନ ଯେପରି ବାହାରକୁ ଯାଇ ନ ପାରିବ; ତା ପାଇଁ ସମସ୍ତ ସତର୍କତା ଅବଲମ୍ବନ କରାଗଲା ।

ଜଳଭର୍ତ୍ତି ଡ୍ରମ୍ବା ଓ ଖାଦ୍ୟଭର୍ତ୍ତି ବାକ୍ସ ସବୁ ସେ କାନ୍ଥରେ ଖୋଲି ଜାଗାରେ ଲଗାଗଲା । ଆବଶ୍ୟକ ବେଳେ ଯେପରି ନିଆଁ ଓ ଆଲୋକ ସେମାନେ ପାଇ ପାରିବେ, ସେଥିପାଇଁ ଗ୍ୟାସଭର୍ତ୍ତି ପିମ୍ପା ମଧ୍ୟ ଗୋଟାଏ ସ୍ଥାନରେ କାନ୍ଥରେ ଅଣ୍ଟା ହେଲା । ଏ ଗ୍ୟାସ ପିମ୍ପାର ଗୋଟାଏ ବୋତାମ ଟିପି ଦେଲେ ତହିଁରୁ ଆଲୋକ ଜାତ ହେବ ଏବଂ ତାହା ମଧ୍ୟ ଅଭ୍ୟନ୍ତରକୁ ଉତ୍ତପ୍ତ ରଖିବ । ଜୀବନ ପାଇଁ ଯାହା ଯାହା ଆବଶ୍ୟକ ଏବଂ ଯାହା ସୁଖ ଶାନ୍ତି ବିଧାନ କରିବ, ତାହାସବୁ ଏଥିଭିତରେ ଅଭାବ ନ ଥିଲା । ଆବଶ୍ୟକତା ସଙ୍ଗେ ଆର୍ଡାନ୍‌ଙ୍କ ରୁଚିର ମିଶ୍ରଣ ହୋଇ ସେ ଅଭ୍ୟନ୍ତରକୁ ଅତି ଉଚ୍ଚ ଧରଣର ଗୋଟିଏ ବୈଠକ ଖାନାରେ ପରିଣତ କରାଗଲା । ଗୋଲାର୍ ଅଭ୍ୟନ୍ତର ୫୪ ବର୍ଗଫୁଟ ଓ ଉଚ୍ଚତା ୧୦ ଫୁଟ । ତେଣୁ ତିନିଜଣ ଯାତ୍ରୀ ଭଲ ଭାବରେ ତା ଭିତରେ ଦେହ ବୁଲାଇବାକୁ ଯଥେଷ୍ଟ ଜାଗା ପାଇବେ ।

ଜୀବନ ରକ୍ଷାର ଦୁଇଟି ଉପାଦାନ ଖାଦ୍ୟ ଓ ଜଳ ବିଷୟ ଆଗରୁ ବିସ୍ତୃତ ହୋଇ ଯାଇଥିଲା । ବାକିଥିଲା ବାୟୁ । ସେମାନେ ଯେଉଁ ବାୟୁଥଳି ନେବାକୁ ସ୍ଥିର କରିଥିଲେ, ତହିଁରେ ସେମାନଙ୍କର ବ୍ୟବହାରୋପଯୋଗୀ ଗୁରୁ ଘନର ବାୟୁ ସଞ୍ଚିତ ଥିଲା । ମାତ୍ର ବାୟୁ ଘନ ଘନ ସଫା ନ ହେଲେ ଚଳିବ ନାହିଁ । କାରଣ ସେମାନେ ତିନିଜଣ ଓ ଦୁଇଟି କୁକୁର ୨୪ ଘଣ୍ଟାରେ ୨୯୦୦ ଲିଟର୍ ଅମ୍ଳଜାନ ବାଷ୍ପ ବ୍ୟବହାର କରିବେ । ତାର ଓଜନ ସାତ ପାଉଣ୍ଡ । ସୁତରାଂ ଗୋଲା ଅଭ୍ୟନ୍ତର ବାୟୁ ଘନ ଘନ ସଫା ହେବା ଦର୍କାର । ତେଣୁ ବାୟୁ ସଫା କରିବା ଯନ୍ତ୍ର ତହିଁରେ ଖଞ୍ଜା ହେଲା ।

ସମସ୍ତ ବ୍ୟବସ୍ଥା ଶେଷ ହେଲା ପରେ ମାଷ୍ଟ୍ରନ୍ ସାହେବ ଅନୁରୋଧ କଲେ ଯେ ସେ ଗୋଲା ଭିତରେ ସାତଦିନ ବନ୍ଦ ହୋଇ ରହିବେ । ତାଙ୍କର ଏ ନିର୍ଦ୍ଦୋଷ ଅନୁରୋଧ ରକ୍ଷା କରିବାରେ କେହି ଆପତ୍ତି କଲେ ନାହିଁ । ସାତଦିନ ପାଇଁ ଆବଶ୍ୟକ ଖାଦ୍ୟ, ଜଳ ଓ ବାୟୁ ତା ଭିତରେ ରଖାଗଲା । ମାଷ୍ଟ୍ରନ୍ ସାହେବ ନଭେମ୍ବର ତା ୧୨ ସକାଳ ୬ଟା ବେଳେ ତା ଭିତରେ ପଶିଲେ ଓ ଦରୋଜା ଭିତର ପଟୁ ବନ୍ଦ କରି ଦେଲେ । ଠିକ୍ ସାତଦିନ ପରେ ନଭେମ୍ବର ତା ୨୦ ସକାଳ ୬ଟା ବେଳେ ସେ ଦରଜା ଖୋଲି ସେତେବେଳେ ପଦାକୁ ବାହାରିଲେ, ତାଙ୍କ ଆନନ୍ଦ କହିଲେ ନ ସରେ । ତାଙ୍କ ବନ୍ଧୁମାନେ ତାଙ୍କୁ ଖୁବ୍ ସ୍ନେହରେ ଅଭ୍ୟର୍ଥନା କଲେ । ସେ କେତେକ ପରିମାଣରେ ମୋଟା ହୋଇ ଯାଇଥିଲେ ।

---

—ଅଠର—

## ରକି ପର୍ବତମାଳାରେ ବିରାଟ ଦୂରବୀଣ

ବୃନ୍ଦା ଛାଲକା ଗାଏମୋଟ ହେବାପରେ ଗତବର୍ଷ ଅକ୍ଟୋବର ତା୨୦ ଦିନ ସଭାପତି ବାର୍ବିକେନ୍ ଗୋଟାଏ ବଡ଼ ଦୂରବୀଣ ଯନ୍ତ୍ର ନିର୍ମାଣ କରିବା ପାଇଁ କେମ୍ବ୍ରିଜ୍ ମାନମନ୍ଦିର ହାତରେ ପ୍ରଚୁର ଟଙ୍କା ଦେଇଥିଲେ ।ଏକଥା ପାଠକମାନଙ୍କର ସ୍ମରଣ ଥିବ । ଏ ଯନ୍ତ୍ର ଏତେ ପ୍ରକାଣ୍ଡ ଓ ସୂକ୍ଷ୍ମଦର୍ଶୀ ହେବ ଯେ, ଚନ୍ଦ୍ର ଦେହରେ ନଅଫୁଟ ମୋଟାର ଯେ କୌଣସି ପଦାର୍ଥ ସ୍ପଷ୍ଟ ଦେଖାଯାଇ ପାରିବ ।

କେମ୍ବ୍ରିଜ୍‌ମାନମନ୍ଦିରର ସଦସ୍ୟମାନେ ଏ କାର୍ଯ୍ୟରେ ଧମାଧମ ଲାଗି ପଡ଼ିଲେ । ଏଥିପାଇଁ ସେମାନଙ୍କୁ ଅନେକ ପରୀକ୍ଷା ଓ ଅନେକ ଆଲୋଚନା କରିବାକୁ ପଡ଼ିଲା । ଏକ ପ୍ରକାଣ୍ଡ ଦୂରବୀଣ ନିର୍ମାଣ ପାଇଁ ଯେତେ ବିପୁଳ ଅର୍ଥ ଦର୍କାର, ତାହା ବାର୍ବିକେନ୍‌ଙ୍କ ପ୍ରସାଦରୁ ତାଙ୍କ ହାତରେ ଗଚ୍ଛିତ ଥିଲା । ଆବଶ୍ୟକ ହେଲେ ଆଉ ମଧ୍ୟ ଲକ୍ଷ ଲକ୍ଷ ଟଙ୍କା ତାଙ୍କଠାରୁ ଆସିପାରେ । ସୁତରାଂ ଅର୍ଥର କୌଣସି ଚିନ୍ତା ନ ଥିଲା । ମାତ୍ର ଏକମାତ୍ର ଚିନ୍ତା ଉପକରଣ । ତାହା ସବୁ ସଂଗ୍ରହ କରିବାକୁ ସେମାନଙ୍କୁ କିଛିକାଳ ଲାଗିଗଲା ।

ତା ପରେ ସେମାନେ ଭିନ୍ନ ଭିନ୍ନ ଦେଶର ବିଭିନ୍ନ ବୈଜ୍ଞାନିକ-ମାନଙ୍କ କଳ୍ପନାପ୍ରସୂତ ଅନେକ ଦୂରବୀଣ ଯନ୍ତ୍ରର ନିର୍ମାଣ ପ୍ରଣାଳୀ, ଦୂରବସ୍ତୁ ପର୍ଯ୍ୟବେକ୍ଷଣ ବିଷୟରେ ଉପଯୋଗିତା ଓ ଅନ୍ୟାନ୍ୟ ଖୁବ୍ ଆବଶ୍ୟକ ବିଷୟମାନ ପରୀକ୍ଷା କରିବାରେ ଲାଗିଲେ । ହାର୍ସେଲ୍ ଓ ଲର୍ଡରସ୍‌ଙ୍କ ନିର୍ମିତ ଯନ୍ତ୍ରସବୁ କିପରି ଉପଯୋଗୀ ଓ କେତେ

ଶକ୍ତିଶାଳୀ ତାହା ସବୁ ଆଲୋଚନା କରି ସାରି ଶେଷରେ ମାନ୍ୟବର ବାର୍ଣ୍ଣକେନ୍‌ଙ୍କ ଅବଶ୍ୟକ ମୁତାବକ ପ୍ରକାଣ୍ଡ ଟେଲିସ୍କୋପ ସେମାନେ ତିଆର କଲେ । ତାହା ୨୮୦ ଫୁଟ ଲମ୍ବ ଓ ତାହାର କାଚ ୧୬ ଫୁଟ ବ୍ୟାସ ବିଶିଷ୍ଟ ଏ ନିର୍ମାଣରେ ସେମାନଙ୍କୁ ବହୁ ଅୟାସ ଭୋଗିବାକୁ ପଡ଼ିଥିଲା । ଶେଷରେ ତାହା ସଫଳତାର ସହ ନିର୍ମିତ ହୋଇଯିବାରୁ ସେମାନେ ସମସ୍ତ ମାନସିକ ଉଦ୍‌ବେଗ ଓ ଶାରୀରିକ କଷ୍ଟ ଭୁଲିଗଲେ ।

ଏ ଯନ୍ତ୍ରକୁ କେଉଁ ଗିରିଶୃଙ୍ଗରେ ସ୍ଥାପନ କରିବାକୁ ହେବ, ସେ ବିଷୟରେ ଗନ୍‌କ୍ଲବ୍‌ରେ ଓ ମାନମନ୍ଦିରରେ ବିସ୍ତୃତ ଆଲୋଚନା ହେଲା । ଏତେ ବଡ଼ ତୋପ ଯେତେବେଳେ ଯୁକ୍ତରାଷ୍ଟ୍ର ଭିତରେ ସ୍ଥାପିତ ହେଲା, ଟେଲିସ୍କୋପ୍ ମଧ୍ୟ ସେହିପରି ଯୁକ୍ତରାଷ୍ଟ୍ର ଅନ୍ତର୍ଗତ କୌଣସି ଉଚ୍ଚତମ ପାହାଡ଼ରେ ସ୍ଥାପିତ ହେବା ଦର୍କାର । ଏଥିପାଇଁ ରକୀ ପର୍ବତମାଳାର ଗୋଟିଏ ଉଚ୍ଚତମ ଶୃଙ୍ଗ 'ଲଙ୍ଗସ୍ ପୀକ୍' ମନୋନୀତ ହେଲା । ତାହାର ଉଚ୍ଚତା ୧୦, ୭୦୧ ଫୁଟ ଏବଂ ତାହା ମିଶୋରି ରାଜ୍ୟ ଭିତରେ ଅବସ୍ଥିତ ।

ଲଙ୍ଗ୍‌ସ୍ ପୀକ୍ ଉପରେ ଏପରି ଗୋଟିଏ ବିରାଟ ଯନ୍ତ୍ରକୁ ସ୍ଥାପନ କରିବାକୁ ଆମେରିକା ଇଞ୍ଜିନିଅରମାନଙ୍କୁ କେତେ ଯେ କଷ୍ଟ ଅସୁବିଧା ଭୋଗିବାକୁ ହେଲା, ତାହା କୌଣସି କଲମ ଲେଖି ପାରିବ ନାହିଁ ବା କୌଣସି ଭାଷା ବର୍ଣ୍ଣନା କରି ପାରିବ ନାହିଁ । ଅସଂଖ୍ୟ ବଡ଼ ବଡ଼ ପଥର, ପ୍ରକାଣ୍ଡ ପ୍ରକାଣ୍ଡ କାମ କରା ପିଟାଲୁହା ଖଣ୍ଡମାନ, ଖୁବ ଓଜନଦାର ବଡ଼ ବଡ଼ ଲୁହା ଖଣ୍ଡମାନ ଓ ଟେଲିସ୍କୋପ୍‌ର ପ୍ରକାଣ୍ଡ ଲୁହାନଳମାନ ସେମାନଙ୍କୁ ସିମାହୀନ, ଦୁସ୍ତର ମରୁଭୂମି ଓ ଅସାଧ ଦୁର୍ଗମ, ବିରାଟ, ଜଙ୍ଗଲ ମଧ୍ୟ ଦେଇ ଓ ଭୀଷଣ ଖରସ୍ରୋତା ନଦୀମାନ ପାର କରାଇ ବୁହାଇ ନେବାକୁ ପଡ଼ିଲା । ତା ପରେ ଚିର ବରଫାବୃତ

ଶୃଙ୍ଗ ଉପରକୁ ଏ ସମସ୍ତ ଜିନିଷ ଉଠାଇ ନେବା ଯେ କେତେ କଷ୍ଟକର ତାହା ସହଜ କଥାରେ କହି ହେବ ନାହିଁ । ସେଥିରେ ପୁଣି ମାର୍ଗ ମଧ୍ୟରେ ଅରଣ୍ୟକ ଦସ୍ୟୁମାନଙ୍କ ଉତ୍ପାତ ଅତି ଭୀଷଣ ଏବଂ ନିକଟରେ ୧୦୦ ମାଇଲ ଭିତରେ ଗାଁ ଗଣ୍ଡାର ଏକାନ୍ତ ଅଭାବ । ମାତ୍ର ଆମେରିକାର ବୈଜ୍ଞାନିକ ବୁଦ୍ଧି ଓ ଇଞ୍ଜିନିୟରିଂ ଅଧ୍ୟବସାୟ ଶେଷରେ ଜୟଯୁକ୍ତ ହେଲା । ଅଜସ୍ର ଅର୍ଥ ବ୍ୟୟରେ ସେପ୍‌ଟେମ୍ବର ମଧ୍ୟରେ ବିରାଟ ଟେଲିସ୍କୋପ ଯନ୍ତ୍ର ଲିଙ୍କସ୍ ପୀକ ଉପରେ ଆକାଶର ୨୮୦ ଫୁଟ ଉପରକୁ ବ୍ୟାପୀ ସ୍ଥାପିତ ହେଲା ।

ଏ କାର୍ଯ୍ୟରେ ସମୁଦାୟ ବାରଲକ୍ଷ ଟଙ୍କା ଖର୍ଚ୍ଚ ହେଲା । ଏହା ଗନ୍‌କ୍ଲବର ଆବଶ୍ୟକତା ପୂରଣ କରିବା ସଙ୍ଗେ ସଙ୍ଗେ କେମ୍ବ୍ରିଜ୍ ମାନମନ୍ଦିରର ଆଉ ଅନେକ ପ୍ରକାର ପର୍ଯ୍ୟବେକ୍ଷଣ କାର୍ଯ୍ୟରେ ସାହାଯ୍ୟ କଲା । କେମ୍ବ୍ରିଜ୍ ମାନମନ୍ଦିରର ବିଶିଷ୍ଟ ଜ୍ୟୋତିର୍ବିଦ ମିଃ କ୍ଲାର୍କ ଏହି ଟେଲିସ୍କୋପ୍ ସାହାଯ୍ୟରେ କ୍ରାବ୍ ନାମକ ପ୍ରକାଣ୍ଡ ନୀହାରିକାର ସମସ୍ତ ତଥ୍ୟ ସଂଗ୍ରହ କରି କରିପାରିଥିଲେ । ତାହା ଲର୍ଡ ରସ୍‌ଙ୍କ ଯନ୍ତ୍ର ସ୍ଥିର କରି ପାରି ନ ଥିଲା ।

---

—ଉଣିଶ—

## ଶେଷ ଆୟୋଜନ

ନଭେମ୍ବର ତା୨୨ ଆସି ହେଲା । ଆଉ ଦଶ ଦିନ ପରେ ଅଭିଯାନ ଆରମ୍ଭ ହେବ । ଏତେବେଳକୁ ଆଉ ଗୋଟାଏ ଭୀଷଣ ଉଦ୍‌ବେଗଜନକ ଓ ଅତିଶୟ ବିପଦପୂର୍ଣ୍ଣ କାମ ବାକି ରହିଥିଲା ।

ଏଥିପାଇଁ କାପ୍‌ଟେନ୍ ନିକୋଲ୍ ତାଙ୍କର ତୃତୀୟ ବାଜି ରଖିଥିଲେ। ତାହା ଏହି ଯେ ତୋପ ଭିତରେ ସ୍ତୁରିଲକ୍ଷ ପାଉଣ୍ଡର ବାରୁଦ ଭରିବାକୁ ହେବ। ନିକୋଲ ଭାବିଥିଲେ, ଏ ବାରୁଦ ଲଦିଲା ବେଳେ ଭୟଙ୍କର ବିପଦ ଘଟିବ ଏବଂ ଯେତେବେଳେ ଗୋଲା ତାହା ଉପରେ ବୋଝେଇ କରାଯିବ, ସେତେବେଳେ ଗୋଲାର ଚାପରେ ସେ ବାରୁଦ ଆପଣା ଛାଏଁ ହଠାତ୍ ନିଆଁ ହୋଇ ଉଠିବ। ମାତ୍ର ବାର୍ବିକେନ୍ ଏଥିପାଇଁ ବିଚଳିତ ହେଉ ନ ଥିଲେ। ସେ ମନରେ କୌଣସି ଉଦ୍‌ବେଗ ଅନୁଭବ ନ କରି ସଫଳତା ବିଷୟରେ ନିଶ୍ଚିନ୍ତ ଥିଲେ। ଏ ବିରାଟ କାର୍ଯ୍ୟ ଏତେଦୂର ଅଗ୍ରସର ହେଲା ପରେ ସେ ବାଟରେ ଅଟକି ଯିବ, ଏପରି ଆଶଙ୍କା ସେ ମନରେ ପୋଷଣ କରୁ ନ ଥିଲେ।

ତେଣୁ ସେ ତାଙ୍କ କର୍ମୀମାନଙ୍କ ଭିତରୁ ଖୁବ୍ ସୁଦକ୍ଷ ଲୋକମାନଙ୍କୁ ବାଛି ନିଜ ତତ୍ତ୍ୱାବଧାନରେ ସେମାନଙ୍କୁ କାର୍ଯ୍ୟରେ ଲଗାଇଲେ। ତେଣୁ ତାଙ୍କ ଅସୀମ ବିଜ୍ଞତା ଓ ସାବଧାନତା ବଳରେ ଶେଷରେ ସଫଳତା କିପରି ନିଜ ଆଡ଼କୁ ଟାଣି ହୋଇଗଲା, ତାହା ତଳେ ବର୍ଣ୍ଣିତ ହେଲା।

ପ୍ରଥମେ ସେ ସାବଧାନ ହୋଇ ସମସ୍ତ ବାରୁଦ ଏକ ସଙ୍ଗେ ଷ୍ଟୋନିହିଲ୍‌ର ଘେରବ ଭିତରକୁ ଆଣିଲେ ନାହିଁ। ଅଳ୍ପ ଅଳ୍ପ ବାରୁଦ ଭର୍ତ୍ତି ହୋଇଥିବା ବାକ୍‌ସମାନ ଉଜମୁଦ ହୋଇ ଗୋଟି ଗୋଟି କରି ଅଣାଗଲା। ଗୋଟିଏ ବାକ୍‌ସରେ ପାଞ୍ଚଶହ ପାଉଣ୍ଡ ବାରୁଦ ହିସାବରେ ସମୁଦାୟ ସ୍ତୁରିଲକ୍ଷ ପାଉଣ୍ଡ ବାରୁଦ ଅଠଶହ ବାକ୍‌ସରେ ପେନ୍‌ସାକୋଲାର କାରିଗରମାନେ ଖୁବ୍ ସାବଧାନତାର ସହ ଭର୍ତ୍ତି କଲେ। ଏପରି ଦଶୋଟି ବାକ୍‌ସ ଗୋଟାଏ ଗାଡ଼ିରେ

ଭର୍ତ୍ତି ହୋଇ ଝାଂପାରୁ ରେଲ୍‌ରେ ଗ୍ୱୋଲାଣ୍ଡଲକୁ ଅସିଲା ଏବଂ ସଙ୍ଗେ ସଙ୍ଗେ ତୋପ ଭିତରେ ରଖାଗଲା । ତା ପରେ ଅଉ ଗୋଟିଏ ଟାବଲ ଅସିଲ, ତାହା ରଖାଗଲା । ଏପରି ଭାବରେ ସମୁଦାୟ ଟାବଲ ତା ପରେ ତା ପରେ ଅସି ଖୁବ୍ ସନ୍ତ ଓ ଖୁବ୍ ସାବଧାନତାର ସହିତ ତୋପ ଭିତରକୁ କ୍ରେନ୍ ସାହାଯ୍ୟରେ ପଠାଯାଇ ତା ତଳେ ସଜାଡ଼ ରଖା-ଗଲା । କ୍ରେନ୍ କୌଣସି ଇଞ୍ଜିନ୍ ସାହାଯ୍ୟରେ ଗୁଳିତ ହେଉ ନ ଥିଲା । ଲୋକେ ଗୋଲା ପାଦରେ ରହି ତାହା ଚଳାଉଥିଲେ ।

ଗେରଦ ଭିତରେ ବା ତାର ଦୁଇ ମାଇଲ ମଧ୍ୟରେ କେହି ଯେପରି ନିଆଁ ବ୍ୟବହାର ନ କରିବେ, ଏଥିପାଇଁ କଡ଼ା କଟକଣା କରାଯାଇଥିଲା । ତଥାପି ଦର୍ଶକମାନେ ଗେରଦ ବାହାରେ ରହି ସମସ୍ତ ଦେଖିବାକୁ ଇଚ୍ଛୁକ ହେବା ସଙ୍ଗେ ସଙ୍ଗେ ସିଗାରେଟ୍ ଖାଇ ପୋଡ଼ା ଶେଷଭାଗ ଗୁଡ଼ାକ ଏଣେ ତେଣେ ଫିଙ୍ଗି ଦେଉଥିଲେ । ସେଥିପାଇଁ ଲୋକ ନିଯୁକ୍ତ ଥିଲେ । ସେମାନେ ସାଙ୍ଗେ ସାଙ୍ଗେ ସେ ପୋଡ଼ାଖଣ୍ଡମାନ ପାଣିକୁଣ୍ଡମାନଙ୍କରେ ପକାଇ ଦେଉଥିଲେ ।

ତୋପ ଭିତର ଅଲୋକିତ କରିବାପାଇଁ ଖୁବ୍ ଶକ୍ତିଶାଳୀ ବଲ୍‌ବଯୁକ୍ତ ଦୀପ ଖଞ୍ଜା ଯାଇଥିଲା । ତାହା ବହୁ ଉଚ୍ଚରୁ ତୋପର ତଳଭାଗ ଅଲୋକିତ କରୁଥିଲା । କର୍ମୀମାନେ ତାଯୋଗେ ବାରୁଦ ବାକ୍ସମାନ ଟାବଲରୁ ବାହାରକରି ତା ଭିତରେ ସାଇତି ରଖୁଥିଲେ । ସେ ବାରୁଦ ପୁଣି ଉତ୍ତପ୍ତ ହେବା ଭୟରେ ଖରାରେ ରଖାଯାଉନଥିଲା । ରାତିରେ ରେଲ୍‌ରେ ଅସୁଥିଲା ଏବଂ ସେହି ରାତିଭିତରେ ତୋପରେ ସମ୍ପଦା ହୋଇଯାଉଥିଲା । ଏପରି ଭାବରେ

ଅସୀମ ସତର୍କତା ବଳରେ ସମସ୍ତ ବାରୁଦ ବାକ୍ସମାନ ଥରକୁ ଥର ଅସି ବୋଝେଇ ହୋଇଗଲା । କୌଣସି ଦୁର୍ଘଟଣା ଘଟିଲା ନାହିଁ ।

ପ୍ରତ୍ୟେକ ବାକ୍ସ ଭିତରେ ଗୋଟିଏ ଗୋଟିଏ ତାର ଖଞ୍ଜାହୋଇ ସମସ୍ତ ତାର ଏକାଠିରେ ଗୋଟିଏ ସରୁନଳା ଭିତରେ ଭର୍ତ୍ତିହେଲା । ସେ ନଳା ବାରୁଦ ଅସ୍ଥାନ ନିକଟରେ ତୋପ ଢାଙ୍କୁରେ ଥିବା ଖୁବ୍ ସୂକ୍ଷ୍ମ କଣାରେ ଭର୍ତ୍ତିହୋଇ ପଙ୍କା ଢାଙ୍କୁ-ପାଖକୁ ଆସିଲା ଏବଂ ତା ଭିତର ଦେଇ ଉପରକୁ ଉଠିଥିବା ଛିଦ୍ରରେ ଉପରକୁ ଅଣାଗଲା । ସେଠାରେ ତାକୁ ଭୂଇଁତଳେ ଖୋଳାଯାଇଥିବା ନାଳରେ ପୋତି ପୋତି ଦୁଇ ମାଇଲ ଦୂର ପର୍ଯ୍ୟନ୍ତ ନିଆଗଲା ଏବଂ ସେଠାରେ ସେ ତାରମାନଙ୍କର ଅଗ୍ର ଭାଗକୁ ଏପରି ଭାବରେ ରଖାଗଲା ଯେ କୌଣସି କାରଣରେ ଯେପରି ନିଆଁର ସମ୍ପର୍କ ତା ଦେହରେ ଲାଗିବ ନାହିଁ । ଏ କାର୍ଯ୍ୟ ତୋପ ତଳାହେବା ଆଗରୁ ସରିଥିଲା । ସଂପ୍ରତି ତୋପର ଛିଦ୍ରରୁ ବାହାରି-ଥିବା ତାରମାନ ପ୍ରତି ବାକ୍ସରେ ଖଞ୍ଜି ଦିଆଗଲା । ଦୁଇ ମାଇଲ ଦୂରରେ ଥିବା ବିଜୁଳି ଇଞ୍ଜିନ୍‌ରୁ ଜାତ ବିଦ୍ୟୁତ୍‌ଶକ୍ତି ସେ ତାର ସ୍ପର୍ଶରେ ବାରୁଦ ପର୍ଯ୍ୟନ୍ତ ବ୍ୟାପିଯାଇ ତାହା ଯେପରି ଏକ ସଙ୍ଗେ ନିଆଁ ଲଗାଇଦେବ ସେଥିପାଇଁ ଏପରି ଉପାୟ କରାଯାଇଥିଲା ।

ବାରୁଦ ବୋଝେଇ ସଫଳତାର ସହ ଶେଷହେବା ଫଳରେ ନିକୋଲ ସାହେବ ତାଙ୍କ ତୃତୀୟ ବାଜି ହାରିଲେ । ମାତ୍ର ବାର୍ବିକେନ୍ ଘୋର ଉଦ୍‌ବେଗ ପରେ ଶେଷରେ ଏଥିରୁ ଉତ୍ତୀର୍ଣ୍ଣ ହୋଇ ଯେ ଅଶ୍ୱସ୍ତି ଅନୁଭବ କଲେ, ତାହା ଅସୀମ । ତଥାପି ମଧ୍ୟ ଉଦ୍‌ବେଗ ପୂରା ମାତ୍ରାରେ ଶେଷ ହୋଇନଥିଲା । ପ୍ରକାଣ୍ଡ ଗୋଲା ତୋପ

ଭିତରକୁ ଯାଇ ବାରୁଦ ଉପରେ ସେତେବେଳେ ବୋଝେଇ ହେବ, ସେତେବେଳର ବିପଦ କିଛି କମ୍ ନୁହେ । ଏତେବଡ଼ ଓଜନଦାର ଗୋଲର ଘୃଷାରେ ବାରୁଦ ଅପଣାଛାଏଁ ନିଆଁ ହୋଇପାରେ । ତାହାହେଲେ ସେ ବିପଦ ଘଟିବ ତାହା ସହଜ ନୁହେ ।

ତଥାପି ଗୋଲକୁ ତୋପ ଭିତରକୁ ନେବା ପୂର୍ବରୁ ତା ଭିତରେ ଯାତ୍ରୀର ଆବଶ୍ୟକୀୟ ଉପକରଣ ସବୁ ସଜାହେଲା । ଉନ୍ନାଷ କିଛି କମ୍ ନୁହେଁ । ସେବେ ଆର୍ଡ଼ାନ୍‌ଙ୍କୁ ପୁରାପୂରି ସଜେଇବାର ଭାର ଦିଆଯାଇଥାନ୍ତା, ତେବେ ସେ ଯାତ୍ରୀଙ୍କ ଚଳାଚଳ ଜାଗା ସୁଦ୍ଧା ଉନ୍ନାଷରେ ଖୁନ୍ଦ ଦେଇଥାନ୍ତେ । ମାତ୍ର ବାର୍ବିକେନ୍ ସେଥିରେ ବାଧା ଦେବାରୁ ସେତିକି ନିହାତ ଦର୍କାର, ସେତିକି ମାତ୍ର ସଜାଇବାରେ ଲାଗିଲେ ।

ଯନ୍ତ୍ର-ବାକ୍‌ସ ଭିତରେ କେତୋଟି ଥର୍ମୋମିଟର, ବାରୋମିଟର ଓ ଟେଲିସ୍କୋପ୍ ରଖାଗଲା । ସେମାନେ ଯାଉ ଯାଉ ବାଟରେ ଚନ୍ଦ୍ରକୁ ପର୍ଯ୍ୟବେକ୍ଷଣ କରିପିବେ ବୋଲି ଗୋଟିଏ ସୁନ୍ଦର ମାନଚିତ୍ର ତା ଭିତରେ ରଖିଲେ । ଚନ୍ଦ୍ର ଦେହରେ ଦେଖା ଯାଉଥିବା ବିଭିନ୍ନ ଦୃଶ୍ୟା-ବଳୀ ଖୁବ୍ ନିର୍ମଳ ଭାବରେ ତହିଁରେ ଅଙ୍କିତ ହୋଇଥିଲା । ପାହାଡ଼, ଉପତ୍ୟକା, ଆଗ୍ନେୟଗିରି, ଶୃଙ୍ଗ, ଜନସ୍ଥାନ ଏ ସବୁ ତହିଁରେ ମାପ ଅନୁସାରେ ଠିକ୍ ଜାଗାରେ ଅଙ୍କିତ ଥିଲା । ତା ପରେ ତିନୋଟି ରାଇଫଲ୍ ଓ ପ୍ରଚୁର ପରିମାଣରେ ଗୁଳି ବାରୁଦ ସେମାନେ ସେଥିରେ ରଖିଲେ । ଏହାଛଡ଼ା କୋଡ଼, କାଙ୍କ, ଫାଉଡ଼ା, ସାବଳ, କରତ ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକ ହତିଆରମାନ ଏବଂ ପ୍ରତ ଋତୁର ବ୍ୟବହାର ପାଇଁ ନାନାବିଧ ପୋଷାକ ତା ଭିତରେ ସାଇତା ହେଲା ।

ଅର୍ଡ୍ଡାନ କେତେଗୁଡ଼ିଏ ପକ୍ଷୀ ସଙ୍ଗରେ ନେବାକୁ ଚାହୁଁଥିଲେ । ଏ ବିଷୟରେ ବହୁତ ଆଲୋଚନା ପରେ ତାହା ଭାଙ୍ଗିଯାଇ କେବଳ ଦୁଇଟି କୁକୁର ସଙ୍ଗରେ ନେବାର ସ୍ଥିର ହେଲା । ଅର୍ଡ୍ଡାନ କେତେକ ମଞ୍ଜି ଓ କେତେକ ବୃକ୍ଷ ମଧ୍ୟ ତା ଭିତରେ ରଖିଲେ ।

ତା ପରେ ଖାଦ୍ୟ ସମସ୍ୟା । ବର୍ଷକ ପାଇଁ ମାଂସ ଓ ପରିବା କଳ ଯନ୍ତ୍ରରେ ଚାପା ହୋଇ ଟିଣ୍ଣିରେ ସମ୍ପଦା ହେଲା । ପଚାଶ ଗ୍ୟାଲନ୍ ମଦ ଓ ପଚାଶ ଗ୍ୟାଲନ୍ ପାଣି ମଧ୍ୟ ଟିଣ୍ଣିରେ ରଖାଗଲା । ଏହା ଛଡ଼ା ଆଉ କେତେକ ପୁଷ୍ଟିକର ଖାଦ୍ୟ ମଧ୍ୟ କଳ ଚାପା ଦିଆଯାଇ ରଖାଗଲା । ସେମାନେ ଅଧିକ କେତେକ ଖାଦ୍ୟ ସଙ୍ଗରେ ନେଇଥାନ୍ତେ, କିନ୍ତୁ ଚନ୍ଦ୍ରରେ ଖାଦ୍ୟ ନାହିଁ ବୋଲି ବିଚାରିବା ମୂର୍ଖତା ହେବ ବୋଲି ସେ ପ୍ରସ୍ତାବ ଭାଙ୍ଗି ଦେଲେ ।

ସମସ୍ତ ଜିନିଷ ଯନ୍ତ୍ରରେ ସାଇତା ହେଲା ପରେ ପୂର୍ବ ପ୍ରସ୍ତାବ ଅନୁସାରେ ତିନିଫୁଟ କଳ ତା ଭିତରେ ଭର୍ତ୍ତି କରାଗଲା । ତା ପରେ ସବୁ ଠିକ୍ ହୋଇଗଲା । ପରେ ବିରାଟ ଗୋଲାକୁ ଷ୍ଟୋନୀହିଲ୍ ଉପରକୁ ତୋପ ମୁହଁକୁ ନିଆଗଲା । ସେଠାରେ ପ୍ରକାଣ୍ଡ କ୍ରେନ୍ ସବୁ ତାକୁ ଚାରିପଟୁ ଅଣ୍ଟିଧରି ତୋପ ଉପରେ ଟଙ୍ଗାଇ ରଖିଲେ । ଏଥର ଗୋଲାକୁ ଆସ୍ତେ ଆସ୍ତେ ତଳକୁ ଖସାଗଲା । ଶେଷରେ ତାହା ତୁଳା ବାରୁଦରେ ନିର୍ମିତ ଗଦୀ ଉପରେ ନିଜର ବିରାଟ ଓଜନକୁ ଢାଳି ଦେଇ ବସି ରହିଲା ।

ଏ କାମ ଶେଷ ହେଲା ପରେ କାପ୍‌ଟେନ ନିକୋଲ୍ ନିଜର ପରାଜୟ ଘୋଷଣା କରି ବାଜି ବାବଦ ୫୧୦୦୦୯ ସଭାପତି

ବାର୍ବିକେନ୍‌ଙ୍କ ହାତକୁ ବଢାଇ ଦେଲେ । ମାତ୍ର ବାର୍ବିକେନ୍ ଅନ୍ତଃ ସେପରି ମତଲବରେ ନ ଥିଲେ । ସେ ତାଙ୍କ ବନ୍ଧୁଙ୍କଠାରୁ ଗୁଡ଼ାଏ ଟଙ୍କା ଅସୁଲ କରି ବିଜୟୀ ବୋଲି ପରିଚିତ ହେବାକୁ ଇଚ୍ଛୁକ ନ ଥିଲେ । ମାତ୍ର ନିକୋଲ୍ ପୃଥିବୀ ଛାଡ଼ିବା ପୂର୍ବରୁ ତାଙ୍କର ସମସ୍ତ ଦେଣା ପରିଶୋଧ କରି ଦେବାକୁ ପବିତ୍ର ସଙ୍କଳ୍ପ କରିବାରୁ ବାର୍ବିକେନ୍ ସେହି ସଙ୍କଳ୍ପ ରକ୍ଷା ପାଇଁ କେବଳ ସେ ଟଙ୍କା ଶେଷରେ ଗ୍ରହଣ କଲେ ।

---

—ତୋଡ଼ଏ—

## ତୋପ ଦଗା

ଅଜି ଡ଼ିସେମ୍ବର ତା ୧ ରିଖ । ଅତି ସାଙ୍ଘାତିକ ଭୟଙ୍କର ଦିନ । ଅଜି ରାତି ୧୦ ଘଣ୍ଟା, ୪୭ ମିନିଟ୍, ୪୦ ସେକେଣ୍ଡ ସମୟରେ ତୋପ ଦଗା ହେବ । ସେତେବେଳେ ଗୋଳା ଯାତ୍ରା ନକଲେ ପୁଣି ଅଠର ବର୍ଷପରେ ଚନ୍ଦ୍ର ଏପରି ଅବସ୍ଥାକୁ ଅସିଲେ ଯାଇ ତାହା ସମ୍ଭବ ହେବ ।

ସକାଳେ ପାଗ ଅତି ନିର୍ମଳ ହୋଇଥିଲା । ସୂର୍ଯ୍ୟ ଗଗନ ମଣ୍ଡଳକୁ ନାନାରଙ୍ଗରେ ରଂଜିତକରି ପୃଥିବୀକୁ କୋମଳ କିରଣ ପ୍ରବାହରେ ଧୌତ କରି ବ୍ୟୋମପଟରେ ଦେଦୀପ୍ୟମାନ ହୋଇ-ଉଠିଲେ ।

ଅଜି ଦିନର କାଣ୍ଡକୁ ଚିନ୍ତାକରି ଟାଂପାର କୌଣସି ଲୋକ ପୂର୍ବ-ରାତ୍ରୀରେ ଶାନ୍ତିରେ ଶୋଇପାରି ନଥିଲେ । ଅସଲ ମୁହୂର୍ତ୍ତକୁ କଳ୍ପନା କରି କେତେ ସହସ୍ର ଲୋକଙ୍କ ଛାତି ଧଡ଼ଧଡ଼ ପଡ଼ୁଥିଲା । ମାଇକେଲ୍ ଅର୍ଡ଼ାନ କିନ୍ତୁ ଚିନ୍ତାଶୂନ୍ୟ ଥିଲେ । ତାଙ୍କ ଛାତି ପଡ଼ୁନଥିଲା କି ସେ କୌଣସି ଭୀଷଣ ମୁହୂର୍ତ୍ତର କଳ୍ପନା କରୁନଥିଲେ । ସେ ନିଜ କାମରେ ଏଣେ ତେଣେ ଧାଁ ଦୌଡ଼ କରୁଥିଲେ । ସେ ପୂର୍ବରାତ୍ରୀରେ ଶାନ୍ତିରେ ଶୋଇଥିଲେ ଓ ଖୁବ୍ ମନଖୁସିରେ ଚଳୁଥିଲେ ।

ଭୋର ହେବା ସଙ୍ଗେ ସଙ୍ଗେ ଅସଂଖ୍ୟ ମନୁଷ୍ୟ ଷ୍ଟୋନୀହିଲ୍ ଚାରିକଡ଼େ ଆସି ଜମାହେଲେ । ଆଖି ଯେତେଦୂର ପର୍ଯ୍ୟନ୍ତ ଯାଇପାରିବ, ସେ ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ ନର ମୁଣ୍ଡରେ ପୂର୍ଣ୍ଣ ହୋଇଗଲା । ଫ୍ଲୋରିଡ଼ାର ସାଧାରଣ ଅଧିବାସୀଙ୍କ ଛଡ଼ା ସେଦିନର ଦୃଶ୍ୟ ଦେଖିବା ପାଇଁ ପାଞ୍ଚଲକ୍ଷ ଦର୍ଶକ ଟାଂପାରେ ଆସି ଜମା ହୋଇଥିଲେ । ଟାଂପାରୁ ଷ୍ଟୋନୀହିଲ୍ ପର୍ଯ୍ୟନ୍ତ ପ୍ରତି ପନ୍ଦର ମିନିଟରେ ଥରେ ଟ୍ରେନ୍ ଯା-ଆସ କରି ସନ୍ଧ୍ୟା ପର୍ଯ୍ୟନ୍ତ ସମସ୍ତ ଜନତାକୁ ବୋହିବାକୁ ଲାଗିଲା । ଜନତାର ଅଧିକାଂଶ ଭାଗ ଘେରଦ ବାହାରେ ତମ୍ବୁପକାଇ ଷ୍ଟୋନୀହିଲ୍ ଚାରିତରଫ ଘେରି ଅପେକ୍ଷା କରିଥିଲେ । କେତେ କୁଡ଼ିଆ, କେତେ ଛୋଟ ଘର, କେତେ ଯେ ତମ୍ବୁ ଚାରିଆଡ଼େ ବାଛେଇହୋଇ ଠିଆ ହୋଇଥିଲେ ତାର କଳନା ନାହିଁ ।

ସମଗ୍ର ପୃଥିବୀର ଚାରିଆଡ଼ୁ ପ୍ରତିନିଧିମାନେ ଆସିଥିଲେ । ସେଠାରେ ପୃଥିବୀର ସବୁଆଡ଼ର ଭାଷା ଶୁଣାଯାଉଥିଲା । ଅମେରିକାର ବଡ଼ଲୋକ କାରବାର ଓ ବଡ଼ଲୋକ ଧମାଳର ଲୋକେ ସେଠାକୁ ଆସି

ଏକାଠେଇ ହୋଇଥିଲେ । କେତେ ମହାଜନ, କେତେ କୃଷକ, କେତେ ନାବିକ, କେତେ ବଡ଼ ବଡ଼ ଅନୁଷ୍ଠାନର ପ୍ରତିନିଧି, କେତେ ବଣିକ, କେତେ ତୁଳାବ୍ୟବସାୟୀ ଓ କେତେ ଯେ ହାକିମ ସେଠାରେ ଆସି ଏକତ୍ର ମିଶିଯାଇଥିଲେ ତାର ସୀମା ନାହିଁ । କେତେ ସ୍ତ୍ରୀଲୋକ, କେତେ ବାଳକ ବାଳିକା ଓ କେତେ ଭୃତ୍ୟ ଅମୂଲ୍ୟ ବେଶଭୂଷାରେ ମଣ୍ଡିତ ହୋଇ ସେ ଅଞ୍ଚଳରେ ଗୋଟିଏ ଉପବନର ଶୋଭା ସଂପାଦନ କରୁଥିଲେ । ଏପରି କେତେ ଯେ ପରିବାର ସେଠାରେ ଜୁଟି ହୋଇଥିଲେ ତାହା ସଂଖ୍ୟା କରିବା କଠିନ ।

ପାର୍ଟିଗୁଡ଼ିକ, କଣାକଣି, ଖିଆପିଆ ଓ କଳାଷ ବାଜିର ଡାକ, ଏହାଛଡ଼ା ଟ୍ରେନ୍ ଶବ୍ଦ, ଯନ୍ତ୍ରପାତିର ଘୁରୁଘର୍ଘର, ଏସବୁ ମିଶି ଷ୍ଟୋନାହଲ୍‌ର ଚୌଦିଗ ପବନକୁ କମ୍ପମାନ କରିଦେଉଥିଲା । ମାତ୍ର ପହିଲ ସକାଳେ ଏ ହୃଷ୍ଟଗୋଳ କୁଆଡ଼େ ଦବିଗଲା । ସେଦିନ କେହି ଖିଆପିଆ ବା ବିକାକିଣା ଆଡ଼କୁ ମୋଟେ ମନଦେଲେ ନାହିଁ । ଗୁରୁଆଡ଼େ ଗୋଟାଏ ନିସ୍ତବ୍ଧ ଗମ୍ଭୀରଭାବ ଖେଳିଗଲା । ଗୋଟାଏ ଅଜ୍ଞାତ ଅଶଙ୍କା ଏ ଅସ୍ୱାଭାବିକ ଗମ୍ଭୀରତାରୁ ଉଦ୍‌ଭୂତ ହୋଇ ଅନେକଙ୍କ ଗ୍ଣତରେ ହାତୁଡ଼ୀ ପ୍ରହାର କରିବାକୁ ଲାଗିଲା । ଦିନର ପ୍ରଧାନ ଘଟଣା ସମସ୍ତଙ୍କ ମନର ଉତ୍ସାହ ଓ ଉନ୍ମାଦନାକୁ ବରାବର ଦବେଇ ରଖିଲା । ଏପରି ଭାବରେ ସମସ୍ତ ଦିନ ଅତିବାହିତ ହୋଇ ସୂର୍ଯ୍ୟାସ୍ତ ହେଲା ।

ମାତ୍ର ସନ୍ଧ୍ୟା ୭ଟା ବେଳକୁ ଏ ଅବସ୍ଥା ବଦଳିଗଲା । ବିମଳ ଚନ୍ଦ୍ର ନିଜର ରଜତଧବଳ ସୁଶୀତଳ କିରଣରାଶିରେ ସମଗ୍ର ଷ୍ଟୋନାହଲ୍‌କୁ ପ୍ଲାବିତକରି ନଭୋମଣ୍ଡଳରେ ଦେଖାଦେଲେ ।

ତାହାର ମନ ଯେ ଏ ଦୃଶ୍ୟରେ ବଦଳି ନଗଲା, ଏପରି ନୁହେଁ । ସମସ୍ତେ ଚନ୍ଦ୍ରଙ୍କ ନାମରେ ଜୟ ଜୟ କାର କରି ତାଙ୍କୁ ନମସ୍କାର କଲେ । ବିରାଟ ଜନତା ମନେକଲା, ଯେପରି ତାଙ୍କର ପ୍ରତିନିଧିମାନେ ତାଙ୍କୁ ଅବିଷ୍କାର କରିବାକୁ ଓ ପୃଥିବୀର ଅଧିପତ୍ୟ ସେଠାରେ ପ୍ରଚାର କରିବାକୁ ଆଜି ଯାତ୍ରା କରୁଅଛନ୍ତି । ଏଥିପାଇଁ ବିଶେଷତଃ ଚନ୍ଦ୍ର ଆଜି ସମସ୍ତଙ୍କ ନୟନମନ ମୁଗଧକର ହୋଇଉଠିଲେ ।

ଠିକ୍ ସେତିକବେଳେ ତିନି ନିର୍ଭୀକ ଯାତ୍ରୀ ସମସ୍ତଙ୍କର ଦୃଷ୍ଟି-ଗୋଚର ହେଲେ । ସେମାନଙ୍କୁ ଦେଖିଲା ମାତ୍ରେକେ ଚାରିଆଡୁ ଖୁବ୍ ପ୍ରବଳ ଚିତ୍କାର ଉଠିଲା । ସମସ୍ତ ଦର୍ଶକ ଏକ ସମୟରେ ଏକ ସ୍ୱରରେ ଯୁକ୍ତରାଷ୍ଟ୍ରର ଜାତୀୟ ସଙ୍ଗୀତ ଗାଇ ଉଠିଲେ । ଏହା ସଙ୍ଗେ ଆଉ ଅନ୍ୟାନ୍ୟ ଦେଶର ଲୋକେ ମଧ୍ୟ ସେମାନଙ୍କ ଜାତୀୟ ସଙ୍ଗୀତ ଗାଇଲେ । ଏହା ସବୁ ଏକତାନରେ ଉଠି ଗହ ଗହ ଧ୍ୱନିରେ ଦଶ ଦିଗକୁ କମ୍ପାଇ ବାୟୁରାଶିର ଶେଷସ୍ତର ପର୍ଯ୍ୟନ୍ତ ତରଙ୍ଗିତ ହୋଇଗଲା ।

ଏ ସମୟରେ ଅର୍ଡ୍ଡାନ୍, ବାର୍ବିକେନ୍ ଓ ନିକୋଲ୍ ଗେରଦ ମଧ୍ୟରେ ପ୍ରବେଶ କଲେ । ସେମାନଙ୍କ ସଙ୍ଗରେ ଗନ୍‌କ୍ଲବ୍‌ର ମେମ୍ବରମାନେ ଓ ଇଉରୋପୀୟ ମାନମନ୍ଦିରମାନଙ୍କର ପ୍ରତିନିଧିଦଳ ମଧ୍ୟ ଗଲେ । ବାର୍ବିକେନ ସେତେବେଳେ ଖୁବ ଥଣ୍ଡା ମେଜାଜରେ ଖୁବ କୋମଳ ସ୍ୱରରେ ତାଙ୍କ ଶେଷ ଅଦେଶମାନ ଦେଉଥିଲେ । ନିକୋଲ ହାତ ଦୁଇ ପଛପଟେ ରଖି ଧୀରପଦକ୍ଷେପରେ ଏଣେ ତେଣେ ଚଲାବୁଲା କରୁଥିଲେ । ମାଇକେଲ୍ ଅର୍ଡ୍ଡାନ୍ କିନ୍ତୁ ବେପରୁଆ । ସେ ଉତ୍କୃଷ୍ଟ ଭ୍ରମଣପୋଷାକ ପିନ୍ଧି ଚମଡା ଗେଟର୍ ଅଣ୍ଟୁ ପର୍ଯ୍ୟନ୍ତ ବାନ୍ଧି ମୂଲ୍ୟବାନ ଚମଡ଼ାଥଳି କରରେ ଝୁଲାଇ ମୁହଁରେ ସିଗାର ଧରି ରାଜକୀୟ ଆଡ଼ମ୍ବରରେ ସମସ୍ତଙ୍କ ସଙ୍ଗେ କରମର୍ଦ୍ଦନ

କରୁଥିଲେ । ସେ ସବୁବେଳେ ଖୁସି । କେତେବେଳେ ହସ, କେତେବେଳେ ଥଟ୍ଟା ତାଙ୍କଠାରେ ବରାବର ଲାଗିରହୁଥିଲା । କେତେବେଳେ ସେ ମାଷ୍ଟନ୍‌ଙ୍କ ପିଠିରେ ଅଡ଼ଜ୍ଜା ପଡ଼ୁଥିଲେ ।

ଏପରି ହେଉ ହେଉ ଦଶଟା ବାଜିଲା । ସେମାନେ ଗୋଲା-ଭିତରେ ବନ୍ଦ ହେବାର କଥା । ପ୍ରଥମେ ଯନ୍ତ୍ରକୌଶଳ ହୋଇ ସେମାନେ ତୋପ ଭିତରକୁ ଯିବେ ଏବଂ ସେଠାରେ ଗୋଲାରେ ପ୍ରବେଶ କରିବେ । ତା ପରେ ଇଲାକବାଟି ପେଚ ଦେଇ ଅଣ୍ଟାହେବ । କ୍ରେନ୍ ପଦାକୁ ବାହାରି ଅସିବ ଏବଂ ତୋପ ମୁହଁରେ ଥିବା ମଁଆକୁ ହଟେଇ ଦିଆଯିବ । ଏତକ କାର୍ଯ୍ୟପାଇଁ ତ ପୁଣି ସମୟ ଲାଗିବ । ବାର୍ବିକେନ୍ ଗୋଟିଏ କ୍ରନୋମିଟର (ଘଡ଼ି) ପାଖରେ ରଖିଥିଲେ । ଯେଉଁ ମୁହୂର୍ତ୍ତରେ ତୋପ ଦଗାହେବ ସେ ମୁହୂର୍ତ୍ତ ସେ ତହିଁରୁ ଜାଣି ପାରିବେ ।

ଏ ସମସ୍ତ ଅୟୋଜନ ଶେଷ ହେବା ସଙ୍ଗେ ସଙ୍ଗେ ବିଦାୟ ମୁହୂର୍ତ୍ତ ଆସିଗଲା । ସେ ଦୃଶ୍ୟ ବଡ଼ ମର୍ମସ୍ପର୍ଶୀ । ଅର୍ଡ୍ଡାନ୍ ତାଙ୍କ ସ୍ୱାଭାବିକ ଅମୋଦ ଭାବ ସତ୍ତ୍ୱେ କାନ୍ଦ ପକେଇଲେ । ଜେ. ଟି. ମାଷ୍ଟନ୍ ତାଙ୍କ ଅନର୍ଗଳ ଲୋତକ ଧାରାରେ ପ୍ରିୟ ସଭାପତି ବାର୍ବି-କେନ୍‌ଙ୍କ କପାଳକୁ ଭିଜାଇ ଦେଲେ । ଏତେ ବଡ଼ ଗମ୍ଭୀର ପ୍ରକୃତି ବାର୍ବିକେନ୍‌ଙ୍କ ଆଖିପତାରେ ମଧ୍ୟ ଜଳ ସଞ୍ଚାର ଅସିଲା ।

ତା ପରେ ଭାରୋତ୍ତୋଳୀ ଯନ୍ତ୍ର ସାହାଯ୍ୟରେ ତଳକୁ ଖସିଗଲେ ଏବଂ ଗୋଲା ଭିତରେ ପଶି ଇଲା କବାଟିର ପେଚମାନ ଦୃଢ଼ଭାବରେ ଅଣ୍ଟି ଦେଲେ । ତୋପ ଉପର ମଁଆଟା କାଢି ଦେଲା ପରେ ତାର ବିରାଟ ପାଟି ଚନ୍ଦ୍ରକୁ ଗ୍ରାସ କରିବା ପାଇଁ ଅଁ କରି ରହିଲା ।

ସେତେବେଳେ ଚନ୍ଦ୍ର ସ୍ୱଚ୍ଛ ନିର୍ମଳ ବାହ୍ୟାସ୍ଥ ମଣ୍ଡଳରେ କ୍ରମଶଃ ଉପରକୁ ଉଠୁଥିଲେ, ତାଙ୍କ ଗତି ସଙ୍ଗେ ସଙ୍ଗେ ତାରକା ଗଣର ଆଲୋକ ହ୍ରାସ ହୋଇ ଯାଉଥିଲା । ସେ ମିଥୁନ ରାଶିକୁ ଭେଦ କରି ଯେତେବେଳେ ଆକାଶର ସର୍ବୋଚ୍ଚ ଅଂଶରେ ପହଞ୍ଚିଲେ, ସେତେବେଳେ ଗୁରି ଆଡ଼େ ଭୟାନକ ନିସ୍ତବ୍ଧତା ବ୍ୟାପିଗଲା । ସେତେବେଳେ ଟୋକାଏ ସୁଦ୍ଧା ବାୟୁ ବୋହୁ ନ ଥିଲା । ବିଶାଳ ଜନତାର ନିଃଶ୍ୱାସ ସୁଦ୍ଧା ଶୁଣା ଯାଉ ନ ଥିଲା । ସମସ୍ତଙ୍କର ଦୁକଦୁକୀ ବନ୍ଦ ହେବା ପରି ବୋଧ ହେଲା । ସମସ୍ତଙ୍କ ଦୃଷ୍ଟି ବର୍ତ୍ତମାନ ତୋପ ମୁହଁରେ ।

ମର୍ଚିଶନ୍ ସାହେବଙ୍କ ଦୃଷ୍ଟି ତାଙ୍କ କ୍ରାନୋମିଟର (ଘଣ୍ଟା) ଉପରେ । ଆଉ ଗୁଳଶ ସେକେଣ୍ଡ ମାତ୍ର ବାକି । ଏ ସମୟ ତାଙ୍କୁ ଯୁଗେ ପରି ଲାଗିଲା । କ୍ରନୋମିଟର ଗୁଲିଲା । ପଞ୍ଚତିରିଶ, ଛତିଶ, ସଇଁତିରିଶ, ଅଠତିରିଶ, ଅଣଚାଳିଶ, ଚାଳିଶ । ନିଆଁ ! ! ! ମର୍ଚିଶନ ସାହେବ ସୁଇଚ୍ ଟିପି ଦେଲେ । ତାପରେ ବିଜୁଳି ଚମକି ତୋପ ଭିତର ବାରୁଦକୁ ନିଆଁ କରିଦେଲା ।

କି ଭୟାବହ, କି ଅଶ୍ରୁତପୂର୍ବ, କି କଳ୍ପନାତୀତ ଶବ୍ଦ ତହିଁରୁ ବାହାରିଲା ! ଲୋକେ ସେ ଶବ୍ଦର ଧାରଣା କରି ପାରିଲେ ନାହିଁ । ବଜ୍ର ବା ଆଗ୍ନେୟ ଗିରି ବିସ୍ଫୋରଣ ଶବ୍ଦ ଏତେ ଭୟାବହ କଦାପି ହୋଇ ନ ପାରେ । ଭୂଗର୍ଭରୁ ଏତେ ଅଗ୍ନି ଶିଖା ଉଠିଲା ଯେ ଆଗ୍ନେୟ-ଗିରିର ଅଗ୍ନି ଉଦ୍‌ବମନ ସଙ୍ଗେ ତାର ତୁଳନା ହୋଇ ପାରେ । ଗୁରି ଆଡ଼ର ମାଟି ଥରିଗଲା । ଗୋଳା ଗଲାବେଳେ ଅଗ୍ନିରାଶି ମଧ୍ୟରେ ଖୁବ୍ କମ୍ ଲୋକ ତାକୁ ଦେଖି ପାରି ଥିଲେ ।

—ଏକୋଇଶ—

## 'ମେଘ ଆ ଘାଗ

ଯେତେବେଳେ ଅଗ୍ନିଗିରି ଭୀଷଣ ଭାବରେ ଉଠିଗଲା; ତାର ତେଜରେ ସମଗ୍ର ପ୍ଲୋରିଡ଼ା ଆଲୋକିତ ହୋଇଗଲା ଏବଂ କେତେକ ଘଣ୍ଟା ପାଇଁ ରାତିଟା ସଫା ଦିନ ପରି ଜଣାଗଲା । ଏହା ନାଁ ସମୁଦ୍ରରେ ଶହେ ମାଇଲ ପର୍ଯ୍ୟନ୍ତ ଦେଖାଗଲା । କେତେକ ଜାହାଜର କାପ୍ତାନମାନେ ଏହା ଗୋଟିଏ ଭୟାନକ ଉଲ୍‌କା ବୋଲି ମନେ କରି ସେମାନଙ୍କ ବହିରେ ଟିପି ରଖିଲେ ।

ତୋପ ଫୁଟା ହେବା ସଙ୍ଗେ ସଙ୍ଗେ ଭୂମିକମ୍ପ ପରି ଗୋଟାଏ କମ୍ପନ ହୋଇ ସମଗ୍ର ପ୍ଲୋରିଡ଼ାକୁ ଦୋହଲାଇ ଦେଲା । ବାରୁଦରୁ ଯେଉଁ ବାଷ୍ପ ଉଠିଲା ଉତ୍ତାପରେ ତାର ଆକାର ଭୟାନକ ବୃଦ୍ଧି ହେବାରୁ ତାହା ବାୟୁ ମଣ୍ଡଳରେ ଅସୀମ ଜୋରରେ ଧକ୍‌କା ଦେଲା । ସେ ଧକ୍‌କାର ବେଗ ଅନେକ ଦୂର ଯାଏ ବ୍ୟାପିଗଲା । ଜଣେ ସୁଦ୍ଧା ଦର୍ଶକ ଭୂଇଁ ଉପର ସିଧା ହୋଇ ରହି ପାରିଲେନାହିଁ । ନର ନାରୀ, ବାଳକ ବାଳିକା ପ୍ରତ୍ୟେକେ ଟଳି ପଡ଼ିଲେ । ଗୋଟାଏ ଅସାଧାରଣ ହଇଚଇ କାଣ୍ଡ ଘଟିଗଲା । ବହୁତ ଲୋକ ଭୀଷଣ ରୂପେ ଆହତ ହୋଇଗଲେ । ଜେ. ଟି. ମାଷ୍ଟନ୍ ସମସ୍ତଙ୍କ ଆଗରେ ଖୁବ୍ ମନରେ ଠିଆ ହୋଇ ଥିଲେ । ସେ ସେହି ଧକ୍‌କାରେ ମଣିଷଙ୍କ ମୁଣ୍ଡ ଉପରେ ଉଡ଼ି ୨୦ ଫୁଟ ଦୂରରେ ଯାଇ ପଡ଼ିଲେ । ସେ ଅଗ୍ନିକ ବଡ଼ ସମ୍ଭାଳି ନ ପାରି ପ୍ରାୟ ତିନି ଲକ୍ଷ ଲୋକ କେତେକ କାଳ ପାଇଁ କାଲା ହୋଇ ଗଲେ ।

ପବନର ସେହି ଭୟାନକ ଧକ୍କା ଷ୍ଟୋମୀ ହିଲ୍ ଅନ୍ତର୍ଗତ ସମସ୍ତ କୁଡ଼ିଆ, ତମ୍ବୁ ଓ ଅନ୍ୟ ଘରମାନ ତୁଳା ପରି ଆକାଶକୁ ଫିଙ୍ଗି ଦେଇ କୋଡ଼ିଏ ମାଇଲ୍ ମଧ୍ୟରେ ଯେତେ ଗଛ ଥିଲା ସେ ସମସ୍ତ ଉପାଡ଼ି ଦେଲା । ଟ୍ରେନ୍ ସବୁ ରେଳ ଲାଇନ ଉପରେ ରହି ନ ପାରି ତଳେ ଓଲଟି ପଡ଼ିଲେ । ସେ ଧକ୍କା ଟାଂପା ସହର ପର୍ଯ୍ୟନ୍ତ ବ୍ୟାପି ଯାଇ ଶହ ଶହ ଘର ଭାଙ୍ଗି ଦେଲା । ବନ୍ଦରରେ ଥିବା କେତେକ ଡଙ୍ଗା, କେତେ ବଜରା, କେତେକ ଲଞ୍ଚ ଓ କେତେ ଜାହାଜ ନଙ୍ଗର ଛିଣ୍ଡାଇ ସମୁଦ୍ର ଭିତରକୁ ଭାସି ଗଲେ ଓ ଉତ୍ତାଳ ଲହରୀମାଳାର ଧକ୍କା ଖାଇ ଅନେକେ ବୁଡ଼ି ଗଲେ ଏବଂ ଅଳ୍ପ କେତେକ କୂଳରେ ଆସି ଶୁଖିଲାରେ ପଡ଼ିଲେ ।

ଏ କମ୍ପନ ସମଗ୍ର ଆମେରିକାରେ ଖୁବ୍ ଜୋରରେ ଅନୁଭୂତ ହେଲା । ପବନର ସେ ଧକ୍କା ଅଟଲାଣ୍ଟିକ ଭିତରେ ତିନି ଶହ ମାଇଲ ଯାଏ ବ୍ୟାପି ଯାଇ ଥିଲା । କେତେକ ଜାହାଜ ଏପରି ଗୋଟାଏ ଅସ୍ୱାଭାବିକ ବାତାବର୍ତ୍ତରେ ପଡ଼ି ପାଲଟେକିବାକୁ ସମୟ ନ ପାଇ ବୁଡ଼ିଗଲେ ।

ଏ ଗୋଳମାଳ ଟିକିଏ କମି ଆସିବା ସଙ୍ଗେ ସଙ୍ଗେ ଲୋକେ ତାଙ୍କ ପତନ ସ୍ଥାନରୁ ଉଠି ସେମାନଙ୍କ କ୍ଷତ ଓ ବଧିରତାକୁ ଭୁଲି-ଯାଇ ସଙ୍ଗେ ସଙ୍ଗେ "ଅର୍ଡାନ୍‌ଙ୍କର ଜୟ," "ବାର୍ବିକେନ୍‌ଙ୍କର ଜୟ", "ନିକୋଲଙ୍କର ଜୟ" ଏହି ଧ୍ୱନି-ଖୁବ୍ ଉଚ୍ଚ ସ୍ୱରରେ କଲେ । ଲକ୍ଷ ଲକ୍ଷ ଲୋକ ଉପରକୁ ଚାହିଁ ଶୂନ୍ୟ ଆଡ଼କୁ ନିରୀକ୍ଷଣ କଲେ ଏବଂ ଟେଲିସ୍କୋପ୍ ପ୍ରଭୃତି ଦୂରବୀଣ ସାହାଯ୍ୟରେ ଗୋଲାକୁ ଦେଖିବାକୁ ଚାହିଁଲେ । ବୃଥା ଚେଷ୍ଟା, ଗୋଲା ଆଉ ଦେଖାଯିବାର ନୁହେ । ତାହା

ସେତେବେଳକୁ ବାୟୁମଣ୍ଡଳ ପାର ହୋଇ ଯାଇଥିବ । ତେଣୁ ଲିଙ୍ଗ୍‌ସ୍‌ପୀକ୍‌ର ଟେଲିଗ୍ରାମ୍‌କୁ ସମସ୍ତେ ଅପେକ୍ଷା କଲେ । କେମ୍ବ୍ରିଜ୍‌ମାନମନ୍ଦିରର ଡିରେକ୍‌ଟର ଏମ୍. ବେଲ୍‌ଫାଷ୍ଟ୍ ବଙ୍କା ମାଉଣ୍ଟ୍‌ର ଉଚ୍ଚତମଶୃଙ୍ଗ ଲିଙ୍ଗସ୍‌ପୀକ୍‌ରେ ସେତେବେଳକୁ ମୃତପ୍ରାୟ ହୋଇ ସାରିଥିଲେ ଏବଂ ବିରାଟ ଦୂରବୀଣକୁ ସଜାଇ ରଖି ନିଜ ଲକ୍ଷ୍ୟରେ ଅବସ୍ଥିତ ଥିଲେ ।

ମାତ୍ର ଲୋକସାଧାରଣଙ୍କ ଏ ଉତ୍ତେଜନା ଓ ଉଦ୍‌ବେଗ ବିରୁଦ୍ଧରେ ପ୍ରକୃତି ଗୋଟାଏ ଦାଉ ସାଧିବାକୁ ବସିଲା । ପୂର୍ବଦିନ ପାଗ ଏତେ ସୁନ୍ଦର ଥିଲା, କିନ୍ତୁ ତା ପରଦିନ ଦେଖିଲାବେଳକୁ ସେ ଅବସ୍ଥା ଆଉ ରହିଲା ନାହିଁ । ଆକାଶର ଚତୁର୍ଦ୍ଦିଗ ମେଘରେ ଢାଙ୍କି ହୋଇ ଯାଇଥିଲା । ଏପରି ହେବା ସ୍ୱାଭାବିକ । କାରଣ ଏ ଘଟଣାରେ ବାୟୁମଣ୍ଡଳ ଭୀଷଣ ଭାବରେ ଆନ୍ଦୋଳିତ ହେଲା ଏବଂ ଦୁଇଲକ୍ଷ ପାଉଣ୍ଡ ବାରୁଦରୁ ଯେଉଁ ପ୍ରକାଣ୍ଡ ଧୂମପଟଳ ଉଠିଲା, ତାହା ସାଧାରଣ ପ୍ରକୃତିରେ କମ ବିପର୍ଯ୍ୟୟ ଘଟାଇଲା ନାହିଁ । ଏହାଦ୍ୱାରା ପ୍ରକୃତିର ସମସ୍ତ ନିୟମ ବିଶୃଙ୍ଖଳ ହୋଇଗଲା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କଥା ନାହିଁ । ସାମୁଦ୍ରିକ ଯୁଦ୍ଧମାନଙ୍କରେ ଭୀଷଣ ତୋପ ବୃଷ୍ଟି ଫଳରେ ବାୟୁମଣ୍ଡଳରେ ଏହିପରି ଅବସ୍ଥା ବରାବର ହୋଇଥାଏ ।

ତହିଁ ଆର ଦିନ ସୂର୍ଯ୍ୟ ଉଦିତ ହେଲେ ମଧ୍ୟ ଆଦୌ ଦେଖାଗଲେ ନାହିଁ । ଘନ ମେଘ ପଟଳ ସମଗ୍ର ଆକାଶକୁ ଢାଙ୍କି ରଖିଥିଲା ଏବଂ ରକୀହିଲ ଯାଏ ତାହା ବ୍ୟାପିଥିଲା । ମେଘ ସମ୍ବନ୍ଧରେ ପୃଥିବୀର ବୁଦ୍ଧିଅନ୍ତ ଘୋର ଆପତ୍ତି ଉଠିଲା । ମାତ୍ର ପ୍ରକୃତି ତହିଁକି କର୍ଣ୍ଣପାତ କଲାନାହିଁ । ମନୁଷ୍ୟମାନେ ତୋପ ମାରି ପ୍ରକୃତି ରାଜ୍ୟରେ ଯେଉଁ

ବୈଷମ୍ୟ ସୃଷ୍ଟି କରଥିଲେ, ସେଥିପାଇଁ ସେମାନଙ୍କୁ ଏପରି ପ୍ରତିକ୍ରିୟା ଭୋଗିବାକୁ ପଡ଼ିଲା ।

ପ୍ରଥମ ଦିନର ଏ ଅବସ୍ଥା ଦେଖି ଲୋକେ ଆଶା କରିଥିଲେ ଯେ ରାତିକ ଏହା ଅବଶ୍ୟ ବଦଳି ଯିବ । ମାତ୍ର ରାତ୍ରୀ ହେବା ସଙ୍ଗେ ସଙ୍ଗେ ଘନ ମେଘରାଶି ଯୋଗେ ଚନ୍ଦ୍ରାଲୋକ ପୃଥିବୀରେ ନ ପଡ଼ିବାରୁ ଚାରିଆଡ଼େ ଅନ୍ଧାର ଘୋଟିଗଲା । କୁଆଡ଼େ କିଛି ଦେଖାଗଲା ନାହିଁ । କେହି କେହି ଲୋକ ବାହାର କରି ଠିକ୍ କଲେ, ତୋପ ମାଡ଼ ଦେଖି ଚନ୍ଦ୍ର ଭୀତ ହୋଇ ମେଘ ଅନ୍ତରାଳରେ ଲୁଚି ଯାଇଛନ୍ତି । କୌଣସି ପର୍ଯ୍ୟବେକ୍ଷଣ କାମ ହୋଇ ପାରିଲା ନାହିଁ । ଲଙ୍ଗସ୍‌ପୀକ୍ ମଧ୍ୟ ତାର ଦ୍ୱାରା ଏକଥା ସମର୍ଥନ କଲା ।

ଯେବେ ପରୀକ୍ଷା ସଫଳ ହୁଏ, ତେବେ ଯାତ୍ରୀମାନେ ଡିସେମ୍ବର ତା ୧ ରାତ୍ର ଘ୧୦, ମି୪୬, ୪୦ ସେକଣ୍ଡରେ ପୃଥିବୀ ଛାଡ଼ ତା ୪ ଅର୍ଦ୍ଧରାତ୍ରରେ ଚନ୍ଦ୍ର ଦେହରେ ପହଞ୍ଚିବେ । ଗୋଲା ପରି ଗୋଟିଏ ଅତି କ୍ଷୁଦ୍ର ବିନ୍ଦୁ କେବଳ ଲଙ୍ଗ୍‌ସ୍‌ପୀକ୍‌ବାଲା ଦେଖିବେ । ତେଣୁ ତାଙ୍କ ରିପୋର୍ଟ ଶୁଣିବା ପାଇଁ ଲୋକେ ଧୈର୍ଯ୍ୟ ଧରି ଅପେକ୍ଷା କଲେ ।

ଡିସେମ୍ବର ତା ୪ ଦିନ ସନ୍ଧ୍ୟା ୮ଟାଠାରୁ ଅଧରାତ୍ର ମଧ୍ୟରେ ଗୋଲାର ସଙ୍କେତ ମିଳିବା ସମ୍ଭବ ଥିଲା । କାରଣ ସେତେବେଳେ ତାହା ଚନ୍ଦ୍ରର ଉଜ୍ଜ୍ୱଳ ଗୋଲକ ନିକଟରେ ଗତି କରୁଥିବ । ମାତ୍ର ଆକାଶର ଅବସ୍ଥା ସେହିପରି ଭୀଷଣ ବାଦଲପୂର୍ଣ୍ଣ ଥିବାରୁ ପର୍ଯ୍ୟବେକ୍ଷଣ କୌଣସିମତେ ସମ୍ଭବ ହେଲା ନାହିଁ । ଲୋକେ ବଡ଼ ଅସ୍ଥିର ହୋଇ ପଡ଼ିଲେ । ଶତ ଶତ ଲୋକଙ୍କ ମୁହଁରୁ ରାଶି ରାଶି ଅଭିସମ୍ପାତ ଚନ୍ଦ୍ରଙ୍କ ଉପରେ ବର୍ଷିବାକୁ ଲାଗିଲା । ତଥାପି ମଧ୍ୟ ସେ ଟିକିଏ ଦେଖା ଦେଲେ ନାହିଁ ।

ଜେ. ଟି. ମାଷ୍ଟନ୍ ଏ ଘଟନାରେ ବଡ଼ ହତାଶ ହୋଇ ପଡ଼ିଲେ । ତେଣୁ ସେ ନିଜେ ପର୍ଯ୍ୟବେକ୍ଷଣ କରିବା ପାଇଁ ଲଙ୍ଗ୍‌ସ୍ପୀକ୍‌କୁ ଦୌଡ଼ିଲେ । ତାଙ୍କ ବନ୍ଧୁମାନେ ଯେ ଲକ୍ଷ୍ୟରେ ପହଞ୍ଚି ସାରିଥିବେ ଏ ବିଷୟରେ ତାଙ୍କର ଆଦୌ ସନ୍ଦେହ ରହିଲା ନାହିଁ । ପୃଥିବୀର କୌଣସି ଅଡ଼େ ସେ ପର୍ଯ୍ୟନ୍ତ ଶୁଣାପାଇ ନ ଥିଲା ଯେ, ଗୋଲା ପୃଥିବୀର କୌଣସି ସମୁଦ୍ରରେ ବା କୌଣସି ସ୍ଥଳରେ ପଡ଼ି ଯାଇଛି । ତେଣୁ ଜେ. ଟି. ମାଷ୍ଟନ୍ ଆଦୌ ସ୍ୱୀକାର କଲେ ନାହିଁ ଯେ, ପୃଥିବୀର କୌଣସି ଅଞ୍ଚଳରେ ଗୋଲା ପଡ଼ିଯାଇ ଥାଇପାରେ ।

ପଞ୍ଚମ ଓ ଷଷ୍ଠ ଦିନ ଆକାଶର ଅବସ୍ଥା ଠିକ୍ ସେହିପରି ରହିଲା । ସପ୍ତମ ଦିନ ଟିକିଏ ସାମାନ୍ୟ ପତଳା ପଡ଼ିଯାଇଥିଲେ ମଧ୍ୟ ସନ୍ଧ୍ୟା-ବେଳକୁ ପୁଣି ଘନ ମେଘାବଳୀ ଢାଙ୍କିଗଲା । କ୍ରମେ ଅବସ୍ଥା ସାଙ୍ଘାତିକ ଧରି ଆସିଲା । ତା ୧୧ ରିଖ ୯ଟା ୧୧ ମିନିଟ୍ ସମୟରେ ଚନ୍ଦ୍ର ଶୁକ୍ଳପକ୍ଷର ଶେଷ ସୀମାରେ ପହଞ୍ଚିବେ । ତା ପରେ ସେ କ୍ରମେ କ୍ରମେ କ୍ଷୟ ହୋଇଯିବେ ଏବଂ ଶେଷରେ ଆଉ ମୋଟେ ଦେଖା ଦେବେ ନାହିଁ । ତା ପରେ ସେ ସୂର୍ଯ୍ୟଙ୍କ ସଙ୍ଗେ ଉଇଁବେ ଓ ସୂର୍ଯ୍ୟଙ୍କ ସଙ୍ଗେ ଅସ୍ତ ଯିବେ, ସୁତରାଂ ମୋଟେ ଦେଖାଯିବେ ନାହିଁ । ତା ପରେ ଜାନୁୟାରି ତାରିଖରେ ପୂର୍ଣ୍ଣ ହେଲେ ତେବେ ଯାଇଁ ପର୍ଯ୍ୟବେକ୍ଷଣ କାମ ହୋଇ ପାରିବ ।

ତା ୮ରେ ଆକାଶର ଅବସ୍ଥା ଅପରିବର୍ତ୍ତିତ ରହିଲା । ତା ୯ରେ ସୂର୍ଯ୍ୟ ଟିକିଏ ଦେଖା ଦେଇ ସତେ ଯେପରି ଆମେରିକାବାସୀଙ୍କି ଖତେଇ ହେଲେ । ଲୋକଙ୍କ ନିନ୍ଦା, ହିସ୍ ହିସ୍ ଧ୍ୱନି ଓ କୁତ୍ସା ଶୁଣି ପୁଣି ସଙ୍ଗେ ସଙ୍ଗେ ମୁହଁ ଲୁଚେଇ ଦେଲେ । ତା ୧୦ ରେ କୌଣସି

ପରିବର୍ତ୍ତନ ଦେଖା ଗଲା ନାହିଁ । ମାତ୍ର ତା ୧୧ ଦିନ ଗ୍ରୀଷ୍ମପ୍ରଧାନ ଦେଶମାନଙ୍କରେ ସାଧାରଣତଃ ଯେପରି ବାତ୍ୟା ହୁଏ, ସେପରି ଗୋଟାଏ ବାତ୍ୟା ପ୍ରବାହିତ ହୋଇ ସମଗ୍ର ଆକାଶ ମଣ୍ଡଳକୁ ସଫା କରି ଦେଲା । ସନ୍ଧ୍ୟା ବେଳକୁ ଚନ୍ଦ୍ରର ପୂର୍ଣ୍ଣ ଗୋଲକ ନିର୍ମଳ ଆକାଶରେ ଦେଖା ଦେଇ ଲୋକଙ୍କ ମନରେ ଅପୂର୍ବ ଆନନ୍ଦ ସଞ୍ଚାର କଲା ।

ସେ ଦିନ ରାତିରେ ଗୋଲାର ସମ୍ବାଦ ମେଘ ଘଡ଼ଘଡ଼ି ପରି ସମଗ୍ର ଆମେରିକାରେ ବ୍ୟାପିଗଲା ଏବଂ ସେଠାରୁ ତାର ଯୋଗେ ଆଟଲାଣ୍ଟିକ ପାରି ହୋଇ ସମଗ୍ର ପୃଥିବୀରେ ବିସ୍ତୃତ ହୋଇଗଲା । ଗୋଲା ଦେଖା ପଡ଼ୁଛି ବୋଲି ଲଙ୍ଗ୍‌ସ୍ପିକ୍‌ର ବିଶାଳ ଟେଲିସ୍କୋପ୍ ଜଣାଇ ଦେଲା । ସେମାନେ ପର୍ଯ୍ୟବେକ୍ଷଣ କରି ଯେଉଁ ତାର ଦେଲେ, ତାହା ତଳେ ଦିଆଗଲା ।

"ଲଙ୍ଗ୍‌ସ୍‌ପୀକ୍, ଡିସେମ୍ବର ତା ୧୨ ।"

"କେମ୍ବ୍ରିଜ୍ ମାନ ମନ୍ଦିରର ସଭ୍ୟ ମହୋଦୟ ଗଣ ।"

"ଚନ୍ଦ୍ର ପକ୍ଷର ଶେଷାର୍ଦ୍ଧରେ ପହଞ୍ଚିବା ବେଳେ ଡିସେମ୍ବର ତା ୧୧ ରିଖ ୮ଟା ୪୭ ମି: ସମୟରେ ମି: ବଲ୍‌ଫାଷ୍ଟ୍ ଓ ଯେ: ଟି: ମାଷ୍ଟନ୍ ସ୍କୋନୀହିଲ୍ ଚୋପରୁ ଦଗା ଯାଇଥିବା ଗୋଲାକୁ ଦେଖିଛନ୍ତି । ଗୋଲା ଏ ପର୍ଯ୍ୟନ୍ତ ତା ଲକ୍ଷ୍ୟ ସ୍ଥଳରେ ପହଞ୍ଚି ନାହିଁ । ଏହା ଟିକିଏ କର ଅଡ଼କୁ ଡେଇଁ ଯାଇଛି । ମାତ୍ର ଚନ୍ଦ୍ରର ଆକର୍ଷଣ ସୀମାର ଖୁବ୍ ନିକଟ ହୋଇ ଗଲାଣି ।

"ଗୋଲାର ସିଧାଗତି ଆଉ ନାହିଁ । ତାହା ଗୋଟାଏ ବୃତ୍ତାକାର ପଥରେ ଅତି ଭୟଙ୍କର ବେଗରେ ଗତି କରୁଛି । ତାହା

ଚନ୍ଦ୍ରର ଗ୍ରହ ଢଙ୍ଗରେ ଗୋଟାଏ ଅଣ୍ଡାକାର ପଥରେ କକ୍ଷ ସ୍ଥିର କରି ଚନ୍ଦ୍ରର ଗୋଟିଏ ଉପଗ୍ରହ ପାଲଟି ଯାଇଛି । ଏହାର ଦୂରତା ବର୍ତ୍ତମାନ ଚନ୍ଦ୍ରଠାରୁ ୪୫୦୦ ମାଇଲ ।

"ଏ ବିଷୟରେ ଦୁଇଟି ମତ ସ୍ଥିର ହୋଇ ପାରେ ।

୧ । ଗୋଲା ଚନ୍ଦ୍ରର ଆକର୍ଷଣରେ ଏପରି ଘୂରୁ ଘୂରୁ ଦିନେ ତାହା ଚନ୍ଦ୍ରର ନିକଟବର୍ତ୍ତୀ ହୋଇ ଯିବ । ଯାତ୍ରୀମାନେ ଚନ୍ଦ୍ର ଦେହରେ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବେ ।

"ଅଥବା"

୨ । ଗୋଲା ଚନ୍ଦ୍ର ଗ୍ରହ ପଟେ ଗୋଟାଏ ନିରବଚ୍ଛିନ୍ନ କକ୍ଷ ପଥରେ ପ୍ରଳୟ ପର୍ଯ୍ୟନ୍ତ ଘୂରୁଥିବ ।

"ପରେ ଅବଶ୍ୟ ପର୍ଯ୍ୟବେକ୍ଷଣ ଫଳରେ ଏ ବିଷୟରେ ଅନେକ ନୂଆ ତଥ୍ୟ ବାହାରି ପାରେ । କିନ୍ତୁ ସେ ପର୍ଯ୍ୟନ୍ତ ଗନ୍‌କ୍ଲବର ସେହି ମହତ୍ ପରୀକ୍ଷା ସୌର ଜଗତରେ ଗୋଟିଏ ନୂଆ ନକ୍ଷତ୍ର ସୃଷ୍ଟି କରିବା ଛଡା ଆଉ କିଛି ଫଳ ଫଳିବ ନାହିଁ ।"

"ଜେ ବେଲ ଫାଷ୍ଟ୍"

ବେଲ୍‌ଫାଷ୍ଟ୍‌ଙ୍କ ଏହି ତାର ଗ୍ରହଅଡ଼େ ମେଘ ଆଣି ଦେଲା । ଲୋକେ ଭାବିଲେ, ଭବିଷ୍ୟତର ବୈଜ୍ଞାନିକମାନେ ଅବଶ୍ୟ ଏ ରହସ୍ୟ ଉଦ୍‌ଘାଟନ କରିବେ । ସେହି ତିନି ମହାମାନବଙ୍କୁ ଶତ ଶତ ଧନ୍ୟବାଦ । ଚନ୍ଦ୍ରକୁ ଗୋଟାଏ ଗୋଲା ଛାଡ଼ିବା ସେତେ ଅସମ୍ଭବ ବୋଧ ହେଲେ ମଧ୍ୟ ଶେଷରେ ତହିଁରୁ ଗୋଟାଏ ମହତ୍ ଫଳ ଲାଭ ହେଲା । ଯାତ୍ରୀମାନେ ମରି ନ ଥିଲେ ବର୍ତ୍ତମାନ ।ସେମାନେ ଚନ୍ଦ୍ର-

ଲୋକର ଗୋଟାଏ ଅଂଶ ହୋଇ ଯାଇଥିବେ । ସେମାନଙ୍କର ଚନ୍ଦ୍ର ଗ୍ରହ ପଟେ ଦୁର୍ଣ୍ଣନ ଫଳରେ ତାର ଗୋପନୀୟ ପ୍ରକୃତ ଉପରେ ମନୁଷ୍ୟର ଦୃଷ୍ଟି ପ୍ରଥମ ହୋଇ ପଡ଼ିଲା । ନିକୋଲ୍, ବାର୍ବିକେନ୍ ଓ ଆର୍ଡାନ୍‌ଙ୍କ ନାମ ଜ୍ୟୋତିର୍ବିଦ୍ୟା ବିଶାରଦମାନେ ଚିରକାଳ ସ୍ମରଣ କରିବେ । କାରଣ ସେହି ସାହସୀ ଅଦ୍ୱେଷକମାନେ ମନୁଷ୍ୟର ଜ୍ଞାନ ଚକ୍ଷୁ ଖୋଲିବା କାମନାରେ ଶୂନ୍ୟ ମଣ୍ଡଳକୁ ଚାଲି ଯାଇଛନ୍ତି ଏବଂ ଆଧୁନିକ ଯୁଗର ବିସ୍ମୟକର ପରୀକ୍ଷାରେ ନିଜକୁ ଆହୁତି ଦେଇଛନ୍ତି ।

ଲଙ୍ଗ୍‌ସ୍‌ପୀକ୍‌ର ବାର୍ତ୍ତାରେ ସମଗ୍ର ବିଶ୍ୱରେ ଯୁଗପତ୍ ବିସ୍ମୟ ଓ ଭୟ ଖେଳିଗଲା । ସେମାନଙ୍କ ସାହାଯ୍ୟ ପାଇଁ ଯିବା ଅସମ୍ଭବ । କାରଣ ମନୁଷ୍ୟର ଚଳାଚଳ ପାଇଁ ଈଶ୍ୱର ପୃଥିବୀରେ ଯେଉଁ ସୀମା ଧାର୍ଯ୍ୟ କରିଛନ୍ତି, ସେମାନେ ସେ ସୀମା ପାର ହୋଇ ଅସୀମ ଦୂରକୁ ଚାଲି ଯାଇଥିଲେ । ସେମାନେ ଦୁଇମାସ ପାଇଁ ନିଶ୍ୱାସ ବାୟୁ ପାଇବେ, ଏକ ବର୍ଷ ପାଇଁ ଖାଦ୍ୟ ପାଇବେ । ତା ପରେ ? ଏ ପ୍ରଶ୍ନରେ କଠିନ ହୃଦୟ ସୁଦ୍ଧା ଥରିଗଲା ।”

ମାତ୍ର ଜଣେ ଲୋକ ଏଥିପାଇଁ କୌଣସି ଆଶଙ୍କା କଲେ ନାହିଁ । ସେ ହେଉଛନ୍ତି, ସେମାନଙ୍କ ପୃଥିବୀସ୍ଥ ବନ୍ଧୁ, ଏକାନ୍ତ ଭକ୍ତ, ସାହସୀ ଓ ପ୍ରତିଜ୍ଞାଶୀଳ ମିଃ ମାଷ୍ଟନ୍ । ସେ ଗୋଲା ଉପରେ ବରାବର ଦୃଷ୍ଟି ନିବଦ୍ଧ ରଖିଥିଲେ । ଲଙ୍ଗ୍‌ସ୍ ପୀକ୍ ତାଙ୍କ ବାସସ୍ଥାନରେ ପରିଣତ ହେଲା । ଚନ୍ଦ୍ର ଆକାଶରେ ଚକ୍ରବାଳରେ ଦେଖା ଗଲା ମାତ୍ରେ ସେ ଟେଲିସ୍କୋପ୍ ଭିତର ଦେଇ ତାଙ୍କୁ ଦେଖୁଥିଲେ ଏବଂ ମୁହୂର୍ତ୍ତେ ସୁଦ୍ଧା ଦୃଷ୍ଟିରୁ ଅନ୍ତର କରୁ ନ ଥିଲେ । ସେ ଖୁବ୍ ଧୈର୍ଯ୍ୟ

ଧରି ଗୋଲ୍ଡ ଚନ୍ଦ୍ର ଦେହରେ ନଜର କରୁଥିବାର ଲକ୍ଷ୍ୟ କରୁ ଥିଲେ ଏବଂ ଏହି ଭାବରେ ସେ ବନ୍ଧୁମାନଙ୍କ ସଙ୍ଗେ ସମ୍ପର୍କ ରଖିଥିଲେ । ସେ ତାଙ୍କ ବନ୍ଧୁମାନଙ୍କୁ କେବେ ହେଲେ ଦିନେ ଦେଖି ପାରିବେ ବୋଲି ଗୋଟାଏ ପ୍ରବଳ ଆଶା ମନରେ ପୋଷିଥିଲେ । ସେ ଭାବୁଥିଲେ, “ଅବସ୍ଥା ଠିକ୍ ହୋଇ ଗଲେ ଆମେ ତାଙ୍କ ସଙ୍ଗେ ନିଶ୍ଚୟ ବାର୍ତ୍ତା ବିନିମୟ କରିପାରିବା । ଏହା ଛଡ଼ା ମୁଁ ଜାଣେଁ, ସେମାନେ ବଡ଼ ପଣ୍ଡିତ, ବଡ଼ ବୈଜ୍ଞାନିକ, ଅସାଧାରଣ ଧୀମାନ୍ ବ୍ୟକ୍ତି । ଶିଳ୍ପ, ବିଜ୍ଞାନ ଓ କଳାର ସମସ୍ତ ଯନ୍ତ୍ର ସେମାନେ ସଙ୍ଗରେ ନେଇଛନ୍ତି । ସେ ସବୁ ସାହାଯ୍ୟରେ ସେମାନେ ଅଲୌକିକ କାର୍ଯ୍ୟ କରି ପାରିବେ ଓ ସମସ୍ତ ଅସୁବିଧାରୁ ଖସି ଯାଇ ପାରିବେ ।”

---

# ଦ୍ୱିତୀୟ ଭାଗ

—ଏକ—

## ଗୋଲ୍‌ଭିତର କଥା

ଦଶଟା ବାଜିବା ସଙ୍ଗେ ସଙ୍ଗେ ମାଇକେଲ୍ ଅର୍ଡାନ୍, ବାର୍ବିକେନ୍ ଓ ନିକୋଲ୍ ପୃଥିବୀସ୍ଥ ବନ୍ଧୁମାନଙ୍କଠାରୁ ବିଦାୟ ନେଇ କୁକୁର ଦୁଇଟି ସହ କ୍ରେନ୍ ସାହାଯ୍ୟରେ ତୋପ ଭିତରେ ପଶିଲେ । କ୍ରେନ୍ ସେମାନଙ୍କୁ ଅସ୍ତେ ଅସ୍ତେ ଭିତରକୁ ଖସାଇ ଗୋଲ ନିକଟରେ ପହଞ୍ଚାଇ ଦେଲା । ସେମାନେ ଗୋଲରେ ଥିବା ଖୋଲା କବାଟି ଭିତର ଦେଇ ତା ଭିତରେ ପଶିଲେ ଓ କବାଟିକୁ ଭିତର ପଟୁ ବନ୍ଦକରି ପେଚମାନ କସିଦେଲେ । ସେ ଗୋଲ ଦେହରେ ସମୁଦାୟ ଚାରି ଗୋଟା କବାଟି ବା ଝରକା ଥିଲା । ସେମାନେ ସବୁ କବାଟିର ପେଚ ପରୀକ୍ଷା କରି ଦେଖିଲେ ଏବଂ ହୁଗୁଳା ଥିବା ପେଚମାନ ଭଲକରି କସିଦେଲେ ।

ଗୋଲା ଭିତର ଘୋର ଅନ୍ଧାର । ତେଣୁ ଆଲୁଅ ଆବଶ୍ୟକ ହେବାରୁ ଅର୍ଡାନ୍ ଦିଆସିଲି ସାହାଯ୍ୟରେ ଗ୍ୟାସବତୀ ଜାଳିଲେ । ଆଲୁଅ ହେବାରୁ ଗୋଲା ଭିତର ପରିଷ୍କାର ଦେଖାଗଲା । ତାହା ଗୋଟିଏ ସୁନ୍ଦର କେବିନ୍ । ମଖମଲ୍ ଗଦି ଅଣ୍ଟା କାନ୍ଥଗୁଡ଼ିକ ଓ ଗୋଲାକାର ଗଦି ଅଣ୍ଟା ସବୁ ଖଟ ଗୁଡ଼ିକ ଅତି ଚମତ୍କାର ଦେଖାଯାଉଥିଲା । ତା ସାଙ୍ଗକୁ ଅନ୍ୟାନ୍ୟ ମୂଲ୍ୟବାନ ଅସବାବ୍ ସବୁ ସଯତ୍ନରେ ସ୍ତରପଟେ ଖଞ୍ଜା ଯାଇଥିଲା । ଗୋଲା ଯାନଟି ଯାତ୍ରୀମାନଙ୍କ ପକ୍ଷରେ ଗୋଟିଏ ଅତି ମୂଲ୍ୟବାନ ଓ ଆରାମପ୍ରଦ ପଦାର୍ଥ ହୋଇଥିଲା । ତାହାସବୁ ପେଟ ଅଣ୍ଟାହୋଇ ଦଗା ବେଳର ଧକ୍କାରୁ ଯେପରି ରକ୍ଷା ପାଇବ, ତାପାଇଁ ସବୁ ବ୍ୟବସ୍ଥା ହୋଇଥିଲା ।

ବାର୍ବିକେନ୍ ଓ ନିକୋଲ୍ ଘରର ସାଜସଜ୍ଜା ଠିକ୍ କରି ଯାତ୍ରା ପାଇଁ ପ୍ରସ୍ତୁତ ହେଉଥିଲେ । ଏ ସମୟରେ ଅର୍ଡାନ୍ ଟିକିଏ କୌତୁକ ପାଇଁ କହିଲେ, "ଏହା ଗୋଟିଏ ବନ୍ଦୀଘର, କିନ୍ତୁ ଗତିଶୀଳ ବନ୍ଦୀଘର । ଏପରି ଗୋଟିଏ ବନ୍ଦୀଘରକୁ ମୁଁ ଶହେ ବର୍ଷ ପାଇଁ ପଟ୍ଟାନେବାକୁ ପ୍ରସ୍ତୁତ ଅଛି । ବାର୍ବିକେନ୍ ! ତମେ କଣ ମନେ କରୁଛ ଏଇଟା ଆମର ଶବାଧାର ( କଫିନ୍ ) ? ହଉନା । ତେବେ ଏପରି ଗୋଟାଏ କଫିନ୍ ଆମର ଖାଲି ଆକାଶରେ ଝୁଲି ରହିଲେ କି ମଜାର କଥା ? ମହମ୍ମଦ ଏଟେରି କଫିନ୍ କେବେ ପାଇଥିଲେ ?"

ସେତେବେଳକୁ ସମୟ ୧୦ ଟା ୨୦ ମିନଟ୍ । ବାର୍ବିକେନ୍ ଘଣ୍ଟା ଦେଖି କହିଲେ, "ଆଉ ୨୭ ମିନଟ୍ ପରେ ମର୍ଚିଶନ୍ ନିଆଁ କରିଦେବେ । ତେବେ ଏତିକି ସମୟ ମାତ୍ର ଆମ୍ଭେମାନେ ପୃଥିବୀରେ ଅଛେଁ ।"

ଅର୍ଡାନ୍ ଏତିକ ସମୟକୁ ବହୁତ ବେଶି ବୋଲି କହି ପ୍ରକାଶ କଲେ ଯେ, ଏହି ସମୟ ମଧ୍ୟରେ ଗୋଟାଏ ବଡ଼ ରାଜନୈତିକ ପ୍ରସଙ୍ଗ ନିଷ୍ପତ୍ତି ହୋଇ ଯାଇପାରେ । ନିଚୋଲ୍ ଘଣ୍ଟାକୁ ବରାବର ଚାହିଁ ରହିଥିଲେ । ଆଉ ଛବିଶ ମିନିଟ୍ ଅଛି ବୋଲି ସେ ଜଣାଇଲେ । ଅର୍ଡାନ୍ ଆଉ ଗୋଟାଏ କଣ କହିବାକୁ ଯାଉଥିଲେ, ବାର୍ବିକେନ୍ ବାଧାଦେଇ କହିଲେ, "ଆଉ ବାଜେ ଗପ କରନାହିଁ । ଧକ୍କାର ପ୍ରତିକାର ପାଇଁ ଆଉ ମଧ୍ୟ ଆମକୁ କେତେକ ଭାବିବାର ଅଛି ।"

ଅର୍ଡାନ୍ କହିଲେ, "କାହିଁକି ? ପାଣିର ଗଦି ଯେ ଆମର ଅଛି ? ତାହାତ ଏ ଧକ୍କା ସମ୍ଭାଳିବା ପାଇଁ ଯଥେଷ୍ଟ ।"

ବାର୍ବିକେନ୍ କହିଲେ, "ହଁ, ତା ହୋଇପାରେ । ମାତ୍ର ମୁଁ ସେ ବିଷୟରେ ଅଧିକ ଅଶାନ୍ବିତ ନୁହେ ।"

ଏ ସମୟରେ ନିକୋଲ୍ ଜଣାଇଦେଲେ ଯେ ଆଉ କୋଡ଼ିଏ ମିନିଟ୍ ମାତ୍ର ବାକି ।

ଏହାଶୁଣି ଯାତ୍ରୀମାନେ ପରସ୍ପରକୁ ଚାହିଁଲେ ଏବଂ କଳକବଜାକୁ ପୁନର୍ବାର ପରୀକ୍ଷା କରିବାରେ ଲାଗିଲେ । ସବୁ ଠିକ୍ ଥିବାର ଦେଖିସାରି ବାର୍ବିକେନ୍ କହିଲେ, "ବର୍ତ୍ତମାନ କଥା ହେଉଛି, ଦାଗ ବେଳର ଧକ୍କା ଆମ୍ଭେମାନେ କି ଅବସ୍ଥାରେ ରହି ସମ୍ଭାଳିବା । ସେ ଅବସ୍ଥାଟା ଠିକ୍ କରିବା ନିହାତି ଜରୁରୀ । ତାହେଲେ ଦେହର ସମୁଦାୟ ରକ୍ତ ମୁଣ୍ଡକୁ ଯେପରି ଛୁଟି ନଯିବ, ସେଥିପାଇଁ ସତର୍କ ହେବା ଆବଶ୍ୟକ । ମୁଁ ଭାବୁଚି, ଆମ୍ଭେମାନେ ଦରେଇ ହୋଇ ଶୋଇ ପଡ଼ିବା ! ତାହେଲେ ଏ ଧାତ ସମ୍ଭାଳି

ନେବା ।” ନାଟୋଲ୍ ତହିଁରେ ଏକମତ ହେଲେ ଓ ଆଉ ତେର ମିନାଟ୍ ଅଛି ବୋଲି ଜଣାଇଲେ । ଏହାପରେ ଯାତ୍ରୀମାନେ ଶେଷ-ଯାତ୍ରା ପାଇଁ ଥଣ୍ଡା ମେଜାଜରେ ପ୍ରସ୍ତୁତ ହେବାକୁ ଲାଗିଲେ । ରେଲ୍‌ର ପ୍ରଥମ ଶ୍ରେଣୀ ଯାତ୍ରୀମାନେ ରେଲ୍ ଛାଡ଼ିବା ଆଗରୁ ଯେପରି ପ୍ରସ୍ତୁତ ହୋଇପଡ଼ନ୍ତି, ଏମାନେ ସେହିପରି ନୀରବରେ ଅଥଚ ଧୀର ସ୍ଥିର ଭାବରେ ସବୁ ଠିକ୍ ଠାକ୍ କରିନେଲେ । ଏତେବଡ଼ ବିପଦ ସାମନାରେ, ଯହିଁରେ କେତେ ମିନାଟ୍‌ପରେ ସେମାନଙ୍କର ଅସ୍ତିତ୍ୱ ରହିବାରେ ସନ୍ଦେହ । ସେପରି ଅବସ୍ଥାରେ ସେମାନେ ଯେପରି ଥଣ୍ଡା ମେଜାଜରେ ସବୁ କାମ କରି ନେଉଥିଲେ, ତାହା ଦେଖି ମନେ ହେଉଥିଲା, ଆମେରିକା ଲୋକେ ସହସ୍ର ବିପଦ ଭିତରେ ମଧ୍ୟ ଭାଙ୍ଗି ପଡ଼ିବା ଲୋକ ନୁହନ୍ତି ।

ଯେଉଁ ତଳ ପଟା ଜଳଗାଡ଼ୀକୁ ଲାଗିଥିଲା, ତା ଉପରେ ତିନି-ଯାତ୍ରୀ କଡ଼େଇ ହୋଇ ଶୋଇଲେ ଏବଂ କେତେ ମିନାଟ୍ ପର୍ଯ୍ୟନ୍ତ ସେହିପରି ପଡ଼ି ରହିଲେ । ଆଉ ନଅ ମିନାଟ୍ ଚାଳିଶ ସେକେଣ୍ଡ୍ ମାତ୍ର ବାକୀ । ଏହି ଅଳ୍ପ ସମୟ ଭିତରେ ସେମାନେ ପଡ଼ି ରହି ନିମ୍ନୋକ୍ତ ମତେ କଥାବାର୍ତ୍ତା ହେଲେ ।

ଆର୍ଡାନ୍—“କାପ୍‌ଟେନ୍ ! ଆଉ ସାମାନ୍ୟ କେତେ ମିନାଟ୍ ପରେ ତୁମେ ଟ୨୭, ୦୦୦୯ ବାର୍ବିକେନ୍‌କୁ ଦେବାକୁ ବାଧ୍ୟହେବ । ତୋପ ଫାଟି ନଗଲେ ଟ୧୨, ୦୦୦୯ ଏବଂ ଗୋଳା ଛଅ ମାଇଲରୁ ଅଧିକ ଉଠିଗଲେ ଟ୧୫, ୦୦୦୯ ।”

ନାଟୋଲ୍ ପକେଟରେ ହାତ ମାରି କହିଲେ “ସେ ଟଙ୍କା ମୋ ପାଖେ ପାଖେ ଅଛି । ତାହା ଦେବାକୁ କେବଳ ବାକୀ ।”

ଅର୍ଡ୍ଡାନ୍—"ନିକୋଲ୍ ! ତୁମ ପରି ସନ୍ଦେହୀ ଲୋକ ମୁଁ କେବେହେଁ ହୋଇ ପାରିବି ନାହିଁ । ମାତ୍ର ମୁଁ ଦେଖୁଛି, ଏ ବାଜି ତୁମପକ୍ଷରେ ଆଦୌ ସୁବିଧାଜନକ ହେବନାହିଁ ।"

ନିକୋଲ୍—"କାହିଁକି ?"

ଅର୍ଡ୍ଡାନ୍—"କାରଣ ତୋପ ଫାଟିଗଲେ ଗୋଲା ମଧ୍ୟ ତାସଙ୍ଗେ ଚୂନା ହୋଇଯିବ । ଆଉ ତ ବାର୍ବିକେନ୍ ନଥିବେ । କିଏ ଟଙ୍କା ଦେବ ?"

ବାର୍ବିକେନ୍—"ମୋ ବାଜି ବାବଦ ଟଙ୍କା ମୁଁ ବାଲ୍ଟିମୋର ବ୍ୟାଙ୍କ୍‌ରେ ଦାଖଲ କରି ଦେଇଛି । ନିକୋଲ୍ ନଥିଲେ ତାଙ୍କ ପିଲାମାନେ ପାଇବେ ।"

ଅର୍ଡ୍ଡାନ୍—"କେଡ଼େ ଠିକଣା ଲୋକ ତୁମ୍ଭେମାନେ ! ମୋର ଅନ୍ତର ତୁମ୍ଭପ୍ରତି ପ୍ରଶଂସାରେ ଭରି ଯାଉଛି ।"

ଆଉ ପାଞ୍ଚ ମିନିଟ୍ ଚାଳିଶ ସେକେଣ୍ଡ୍ ମାତ୍ର ବାକି । ବନ୍ଧୁମାନେ ପରସ୍ପରର କର ମର୍ଦ୍ଦନ କରି ଏ ପବିତ୍ର ମୁହୂର୍ତ୍ତରେ ଦୀର୍ଘଯାତ୍ରାପାଇଁ ମନକୁ ପ୍ରସ୍ତୁତ କଲେ । ଅର୍ଡ୍ଡାନ୍ କହିଲେ, "ଭାଇମାନେ ! ଜୀବିତ ଥିଲେ, ଏହି ଦେହରେ ଅଳ୍ପକ୍ଷଣପରେ ଦେଖା ହେବ । ନୋହିଲେ ପର ପାରରେ ସାକ୍ଷାତ ।"

ଆଉ କୋଡ଼ିଏ ସେକେଣ୍ଡ୍ ମାତ୍ର ବାକି । ବାର୍ବିକେନ୍ ହଠାତ୍ ଗ୍ୟାସ୍ ବତୀଟା ଲିଭାଇ ଦେଲେ ଏବଂ ବନ୍ଧୁଦ୍ୱୟଙ୍କ ପାଖରେ ପଡ଼ି-ରହିଲେ । ଘୋର ଅନ୍ଧକାରମଧ୍ୟରେ କ୍ରନୋମିଟର୍ ଘଡ଼ିର

ଠିକ୍ ଠିକ୍ ଶବ୍ଦ କରୁଥିଲା । ହଠାତ୍ ଗୋଟାଏ ଅତି ଭୟାବହ ଧକ୍କା ଅନୁଭୂତ ହେଲା । ତୁଳା ବାରୁଦରେ ଅଗ୍ନି ସଂଯୋଗ ଫଳରେ ଉତ୍ପନ୍ନ ଷାଠିଏ ହଜାର ଲକ୍ଷ ଲିଟର୍ ବାଷ୍ପର ଜୋରରେ ଗୋଲା ଅନନ୍ତ ଆକାଶ ମଧ୍ୟକୁ କ୍ଷେପିଗଲା ।

---

—ଦୁଇ—

## ପ୍ରଥମ ଅଧଘଣ୍ଟାର କଥା

ଗୋଲା ଭିତରର ଅବସ୍ଥା କଅଣ ? ଏତେ ବଡ଼ ଧକ୍କାର ଫଳ କଅଣ ହେଲା ? ପାଣିର ଗଦି, କାଠର ଫର୍ମା ଓ ଚଳନ୍ତ କାଠପର୍ଦ୍ଦା ବଳରେ ଧକ୍କାଟା ବାଧା ପାଇଗଲା କି ? ଏପରି ବହୁପ୍ରଶ୍ନ ଦର୍ଶକମାନଙ୍କ ମନରେ ଜାତହେଲେହେଁ ଗୋଲା ଭିତର ଅବସ୍ଥା ସମ୍ବନ୍ଧରେ ସମସ୍ତେ ଅଜ୍ଞ । ଗୋଲା ଭିତର ଭୀଷଣ ଅନ୍ଧାର । ଗୋଲାର ଗୋଡ଼ଆ ଅଗ୍ରଭାଗ ଖୁବ୍ ସମ୍ଭାଳିନେଲା । ଭିତରେ କୌଣସି ଜିନିଷ ଭାଙ୍ଗି ବା ଫାଟିଯାଇ ନଥିଲା କିମ୍ବା ସ୍ଥାନଚ୍ୟୁତ ହୋଇନଥିଲା । ବାରୁଦର ଭୀଷଣ ଅଗ୍ନି ତେଜରେ ଗୋଲା ତରଳି ଯିବାର ଯେଉଁ ଭୟଥିଲା, ତାହା ଆଉ ହେଲା ନାହିଁ । ଗୋଲା ବାରୁଦର ଧକ୍କାରେ ଯେତେବେଳେ ଉପରକୁ ଉଠିଗଲା, ସମୁଦାୟ ପାଣି ଉପରକୁ ଘୁଞ୍ଚିହୋଇ ଛିଦ୍ର ବାଟେ ବାହାରେ ପଡ଼ିଗଲା । କାଠ ଫର୍ମାଟା ଗୁଣ୍ଡା ହୋଇଗଲା ଏବଂ ଯାତ୍ରୀମାନଙ୍କ ଶରୀର ତଳେ ସେହିପରି ପଡ଼ି ରହିଥିଲା ।

କେତେକ ମିନଟ୍ ପରେ ତା ଭିତରୁ ଗୋଟିଏ ଶରୀର ଟିକିଏ ହଲଚଲ ହେଲା, ହାତ ଟେକିଲା, ମୁଣ୍ଡ ଉଠାଇଲା ଓ ଆଣ୍ଠୁ ଉପରେ

ଲଗ ଦେଇ ଠିକ୍‌ଏ ଉଠିଲା । ସେ ମାଇକେଲ୍ ଆର୍ଡାନ୍ । ସେ ଠିକ୍‌ଏ ପ୍ରକୃତିସ୍ଥ ହୋଇ ଠିଆ ହେବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ । ତାଙ୍କ ମୁଣ୍ଡ ଚହଲି ଗଲା ଓ ଦେହର ରକ୍ତ ମୁଣ୍ଡ ଉପରକୁ ଧାଇଁବାକୁ ଲାଗିଲା । ସେ ନିଶା ଖୋର ପରି ନିଜକୁ ମନେ କଲେ । ତା ପରେ ସେ କପାଳ ଉପରେ କିଛି ସମୟ ହାତ ବୁଲାଇ ତାର ଦୁଇ ପାଖ କିଛି ସମୟ ଘଷିଲେ । ତଦ୍ୱାରା ସେ ସଚେତ ହୋଇ ଉଠିଲେ । ତାଙ୍କର ପୂର୍ବଜ୍ଞାନ ଫେରି ଆସିଲା । ସେ 'ନିକୋଲ, ବାର୍ବି-କେନ୍' ବୋଲି ଡାକ ଛାଡିଲେ । କିଛି ଉତ୍ତର ନ ମିଳିବାରୁ ତାଙ୍କ ମନରେ ଉଦ୍‌ବେଗ ଜାତ ହେଲା । ନିଶ୍ୱାସ ବା ଦୁକ୍‌ଦୁକି ଶବ୍ଦ କିଛି ଶୁଣାଗଲା ନାହିଁ । ପୁଣି ଡାକିଲେ । ସେହି ନୀରବତା । ସେ ବ୍ୟସ୍ତ ହୋଇ କହି ପକେଇଲେ, "କି ! ଜଣେ ଫରାସୀ ଲୋକ ସିଧା ଅଣ୍ଟୁ ଉପରେ ଠିଆ ହୋଇ ପାରେ, ଦୁଇଜଣ ଆମେରିକାନ୍ ଗୋଡରେ ଠିଆ ହେବା ଉଚିତ । ଏମାନଙ୍କର ହେଲା କଣ ?"

ଏହା ଭାବି ସେ ଦିଆସିଲି ମାରି ଗ୍ୟାସ୍‌ବତୀ ବାକ୍‌ସଟା ଦେଖିଲେ । ତାହା ଠିକ୍ ଥିଲା । ସେ ବତୀ ଲଗାଇ ଦୁଇ ବନ୍ଧୁଙ୍କ ଉପରକୁ ଝୁଙ୍କି ପଡିଲେ । ଗୋଲାର ଝାଙ୍କ ଫଳରେ ନିକୋଲ୍ ବାର୍ବିକେନ୍‌ଙ୍କ ଉପରେ ପଡି ଯାଇ ଥିଲେ । ଅର୍ଡାନ୍ ଆଗ ନିକୋଲ୍‌ଙ୍କୁ ଉଠାଇ ଗୋଟାଏ ଖଟିଆ ଉପରେ ଶୁଆଇ ଦେଲେ ଏବଂ ତାଙ୍କର ସର୍ବାଙ୍ଗ ଘଷିଲେ । ଏ କୌଶଳ ପ୍ରୟୋଗରେ ନିକୋଲ ସଚେତ ହୋଇଗଲେ ଏବଂ ଆଖି ଖୋଲି ଅର୍ଡାନ୍‌ଙ୍କୁ ଚାହିଁଲେ । ତା ପରେ ସେ ଉଠିପଡି ଅର୍ଡାନ୍‌ଙ୍କ ସଙ୍ଗେ ହାତ ମିଳାଇ ବାର୍ବିକେନ୍ କିପରି ଅଛନ୍ତି ବୋଲି ପଚାରିଲେ ।

ଅର୍ଜାନ୍ କହିଲେ, "ତୁମେ ବାର୍ବିକେନ୍‌ଙ୍କ ଉପରେ ପଡ଼ିଥିବାରୁ ତୁମ୍ଭଙ୍କୁ ଅଗ ସଚେତ କଲି । ଏବେ ତାଙ୍କ ପାଳି ପଡ଼ିବ ।" ତତ୍ପରେ ବାର୍ବିକେନ୍‌ଙ୍କୁ ଉଠାଇ ଖଟିଆ ଉପରେ ଶୁଆଇ ଦେଲେ । ତାଙ୍କ ଦେହରୁ ରକ୍ତ ବାହାରୁ ଥିଲା । ନିକୋଲ୍ ବଡ଼ ବ୍ୟସ୍ତ ହୋଇ ତାଙ୍କୁ ପରୀକ୍ଷା କରି ଦେଖିଲେ, ତାଙ୍କ ହାତରେ ଗୋଟାଏ କ୍ଷତ ହୋଇ ତହିଁରୁ ରକ୍ତ ବାହାରୁଛି । ତାହା ଖୁବ୍ ସାମାନ୍ୟ । ନିକୋଲ୍ ସଙ୍ଗେ ସଙ୍ଗେ ତହିଁରେ ପଟି ଭିଡ଼ିଦେବାରୁ ରକ୍ତ ସ୍ରୋତ ବନ୍ଦ ହୋଇଗଲା । ତା ପରେ ସେ କୁହେଁ ତାଙ୍କୁ ଘଷା ଘଷି କରିବାରେ ଅନେକ ସମୟ ପରେ ତାଙ୍କର ଜ୍ଞାନ ଅସିଲା । ସେ ଆଖି ଖୋଲି ବସିଲେ ଓ ଦୁଇ ବନ୍ଧୁଙ୍କ ହାତରେ ହାତ ମିଳାଇ ପଚାରିଲେ, "ନିକୋଲ୍ ! ଆମେ କଣ ଯାଉଛୁଁ ?"

ନିକୋଲ ଓ ମାର୍ଡ଼ାନ୍ ପରସ୍ପରକୁ ଚାହିଁଲେ । ସେମାନେ ଏ ଏ ପର୍ଯ୍ୟନ୍ତ ଗୋଲା ବିଷୟ ଭାବି ନ ଥିଲେ । ଅର୍ଜାନ୍ ମଧ୍ୟ ବିସ୍ମୟରେ ସେହିପରି ପଚାରିଲେ । ନିକୋଲ୍ କହିଲେ, "ଆମେ କଣ ତେବେ ଫ୍ଲୋରିଡ଼ା ମାଟିରେ ଏ ପର୍ଯ୍ୟନ୍ତ ଶାନ୍ତିରେ ରହିଛୁଁ ?" ବାର୍ବିକେନ୍ ଏହା ଅସମ୍ଭବ ବୋଲି କହି ସଜାଗ ହୋଇ ଉଠିଲେ । ସେମାନେ ଏ ପର୍ଯ୍ୟନ୍ତ କିଛି ନିଷ୍ପତ୍ତି କରି ପାରି ନ ଥିଲେ । ଗୋଲାର ଅଚଳ ଅବସ୍ଥା ଓ ବାହାର ସଙ୍ଗେ ସମ୍ବନ୍ଧ ଅଭାବରୁ ସେମାନେ କିଛି ଠିକ୍ କରି ପାରିଲେ ନାହିଁ । ଗୋଲା ବୋଧହୁଏ କିଛି ଦୂର ଉଠି ଯାଇ ଭୂଇଁରେ କଣ୍ଟିଡ଼ ହୋଇ ପଡ଼ିଛି ଅଥବା ମେକ୍ସିକୋ ସାଗର ଭିତରେ ପଡ଼ି ବୁଡ଼ି ଯାଇଛି । ଏ ବିଷୟ ଯାତ୍ରୀମାନଙ୍କ ମନରେ ଘୋର ବିସ୍ମୟ ଜନ୍ମାଇ ଦେଲା । ବାର୍ବିକେନ୍ ବେଶ ବ୍ୟସ୍ତ ହୋଇ ଟଳ ଟଳ ଅବସ୍ଥାରେ ଉଠିଲେ ଏବଂ ଝରକା ପାଖକୁ ଯାଇ କାନେଇଲେ ।

ବାହାରେ ଘୋର ନିସ୍ତବ୍ଧତା । ତାହା ମଧ୍ଯ ଗୋଲାର ଗତି ପ୍ରମାଣ କରି ପାରିଲା ନାହିଁ । କାରଣ ଧାତୁ ନିର୍ମିତ ଡାଲ୍ ଅଙ୍କାରର ଶକତ କବାଟ ସେ ଘରକାକୁ ଟାଙ୍କିଥିଲା । ରବର ଚକ୍କା ତାକୁ କାନ୍ଥ ସଙ୍ଗେ ଦୃଢ଼ ଭାବରେ ଚାପି ଦେଇଥିଲା । ତା ପରେ ପୁଣି ମୋଟା କାଚରେ ପରଦା । ଏ ଦୁଇ ସ୍ଥୂଳ ପ୍ରତିବନ୍ଧକ ଭେଦ କରି ବାହାର ଶବ୍ଦ ଭିତରକୁ ଅସିବ କିପରି ? ତା ପରେ ବାର୍ବିକେନ୍ ଥର୍ମୋମିଟର ଖୋପରୁ ବାହାର କରି ଦେଖିଲେ । ତହିଁରେ ଗୋଲାର ଅଭ୍ୟନ୍ତର ଉତ୍ତାପ ୮୧ ଡ଼ିଗ୍ରୀ ହୋଇଥିଲା । ସେ ତାହା ଦେଖି ଅଶ୍ୱସ୍ତି ସହକାରେ କହିଲେ, "ହଁ, ଅମେ ନିଷ୍ଚୟ ଗତିଶୀଳ । ବାୟୁ ମଣ୍ଡଳ ସଙ୍ଗେ ପ୍ରତିଘାତ ହେତୁ ଏ ଉତ୍ତାପ ଉଠୁଛି । ଏଇଟା ଶୀଘ୍ର କମିଯିବ । କାରଣ ଅମେ ଏତେ ବେଳକୁ ବାୟୁ ମଣ୍ଡଳ ଛାଡ଼ି ଶୂନ୍ୟରେ ପହଞ୍ଚିଲଣି, ଥଣ୍ଡା ପଡ଼ିଲା ମାତ୍ରେ ଉତ୍ତାପ ଖୁବ୍ ଖସିଯିବ ।"

ଅର୍ଡ୍ଡାନ୍, "ତେବେ କଣ ଅମେ ପାର୍ଥିବ ବାୟୁମଣ୍ଡଳ ଭିତରେ ବର୍ତ୍ତମାନ ନାହୁଁ ?"

ବାର୍ବିକେନ୍, 'ନା, ଅମେ ପୃଥିବୀ ଛାଡ଼ିବା ଅଠ ମିନିଟ୍ ହୋଇ ଗଲଣି । ଯଦି ଘାତ ପ୍ରତିଘାତ ହେତୁ ଅମ ଗତିରେ କୌଣସି ବାଧା ଅସି ନ ଥାଏ, ତେବେ ପୃଥିବୀର ସ୍ତର ପଟେ ଘେରି ଥିବା ୪୮ ମାଇଲ୍ ବହଳ ବାୟୁମଣ୍ଡଳକୁ ପାର ହୋଇ ଯିବାକୁ ମୋଟେ ଛଅ ସେକେଣ୍ଡ ଲାଗିବ ।"

ନିକୋଲ୍, "ତା ଠିକ୍ ! ତେବେ ଘର୍ଷଣ ବାଧା ହେତୁ ବେଗର କେତେ ପରିମାଣରେ କମିବ ବୋଲି ତୁମେ ହିସାବ ଧରିଛ ?"

ବାର୍ବିକେନ୍—"ଏକ ତୃତୀୟାଂଶ ଅନୁପାତରେ । ଏପରି କମିତ କରୁ ନାହିଁ । ଯଦି ଆମର ଗତି ବେଗ ଆରମ୍ଭରେ ୧୧୦୦୦ ମିଟାର ହୁଏ, ତେବେ ବାୟୁମଣ୍ଡଳ ଭିତରେ ଗତିକଲା ବେଳେ ୭୩୩୨ ମିଟାରକୁ ଖସି ଆସିବ । ତା ହେଲେ ମଧ୍ୟ ଆମେ ଅଜି ବାୟୁମଣ୍ଡଳ ଭିତରେ ନାହୁଁ ।"

ଆର୍ଡାନ୍, "ନିକୋଲ୍ ଏବେ ତାଙ୍କ ବାଜି ଦୁଇଟି ହାରେଇଲେ ।"

ନିକୋଲ୍, "ଅଗ ପ୍ରମାଣିତ ହେଉ, ତା ପରେ ଧରି ନିଅ ହେବା ବାର୍ବିକେନ୍‌ଙ୍କ ହିସାବ ଯେ ଠିକ ଏଥିରେ ସନ୍ଦେହ ନ ଥାଇ ପାରେ । ମୁଁ ମୋର ଟ ୨୭,୦୦୦୯ ହାରିଲି । କିନ୍ତୁ ଅଜି ଗୋଟାଏ କଥା ମୋ ମନକୁ ଲାଗୁଛି । ତାହା ଏ ବାଜିକୁ ଉଡ଼ାଇ ଦେଇ ପାରେ ।"

ବାର୍ବିକେନ୍ ଚଟ୍ କରି ପଚାରିଲେ, "କଣ ସେଇଟା ?"

ନିକୋଲ୍ କହିଲେ, "ମୋର ଅନୁମାନ ଯେ ବାରୁଦରେ ନିଆଁ ଧରି ନାହିଁ । ଗୋଲା ମୋଟେ ସ୍ୱ ସ୍ଥାନରୁ ଉଠି ନାହିଁ ।"

ଆର୍ଡାନ୍ "କ୍ୟାପ୍‌ଟେନ୍ । ଏପରି ଅନୁମାନ ମୋ ଭଳି ଲୋକ ପକ୍ଷରେ ସମ୍ଭବ । ଆମେ କଣ ଧକ୍‌କା ଜୋରରେ ଅଚେତ ହୋଇପଡ଼ି ନ ଥିଲୁଁ ? ମୁଁ କଣ ତୁମ୍ଭର ଜ୍ଞାନ ସଂଗ୍ରହ କରାଇ ନାହିଁ ? ଧକ୍‌କା ଲାଗି ସଭାପତିଙ୍କ କାନରେ ଯେ କ୍ଷତ ହୋଇଥିଲା, ତହିଁରୁ କଣ ଏ ପର୍ଯ୍ୟନ୍ତ ରକ୍ତ ବୋହୁ ନାହିଁ ?"

ନିକୋଲ୍, "ମୁଁ ତା ମାନିଲି । ମାଇକେଲ୍ ! ମୁଁ ଗୋଟାଏ କଥା ପଚାରୁଛି । ତୁମେ କଣ ଧକ୍‌କାର ଶବ୍ଦ ଶୁଣି ପାରିଚ ?"

"ନା, ଅବୌ ନୁହେଁ ।"

"ବାର୍ବିକେନ୍, ତୁମେ ଶୁଣିଛ ?"

"ନା, ମୁଁ ମଧ୍ୟ ଶୁଣି ନାହିଁ ।"

"ତା ହେଲେ ଏଥିରୁ କଣ ବୁଝାଯାଇ ପାରେ ?"

ସଭାପତି ଗୁଣୁ ଗୁଣୁ ହୋଇ କହିଲେ, "କାରଣ କଣ ? ଆମେ ତ ବାସ୍ତବିକ ଧକ୍କାର ଶବ୍ଦ ଶୁଣି ପାରିଲୁ ନାହିଁ ?"

ତିନିବନ୍ଧୁ ଏ ବିଷୟରେ ପରସ୍ପରକୁ ଚାହିଁ ବହୁତ ଚିନ୍ତାକଲେ । ଗୋଟାଏ ଅସ୍ୱାଭାବିକ ପରିସ୍ଥିତି ଘଟିଗଲା । ବାରୁଦର ବିସ୍ଫୋରଣ ଓ ଧକ୍କା କିଛି କମ୍ ନୁହେ । ତାହା ଶୁଣା ନଗଲା କାହିଁକି ? ବାର୍ବିକେନ୍ ନୀରବତା ଭଙ୍ଗ କରି କହିଲେ, "ଆମେ ବର୍ତ୍ତମାନ କେଉଁଠି, ତାହା ଆଗେ ସ୍ଥିର ହେବା ଦର୍କାର । ଚାଲ କବାଟୀ ଖୋଲିବା ।"

ତେଣୁ ଶୀଘ୍ର କବାଟୀ ଖୋଲିବା ଆୟୋଜନ ହେଲା । ପେଚ ଗୁଡ଼ାକ ଢିଲା କରି ଦେବା ମାତ୍ରକେ ଧାତୁଢାଲ ଖସି ଯାଇ ଗୋଟାଏ କରକୁ ଅଲଗାଗଲା ଓ କାଚ ପରଦା ଦେଖା ପଡ଼ିଲା । ବାର୍ବିକେନ୍ ଓ ତାଙ୍କ ବନ୍ଧୁଦ୍ୱୟ ସେଠାକୁ ଚମକି ଯାଇ ବାହାର ଦେଖିଲେ । ବାହାରେ ଘୋର ଅନ୍ଧାର । ସାମାନ୍ୟ ଆଲୋକର ସତ୍ତା ନଥିଲା । ବାର୍ବିକେନ୍ ତାହା ଦେଖି ଦେଖି କହିଲେ, ବନ୍ଧୁମାନେ ! ଆମ୍ଭେମାନେ ପୃଥିବୀରେ କଚ୍ଛଡ ହୋଇ ପଡ଼ି ନାହୁଁ, କିମ୍ବା ମେକ୍ସିକୋ ସାଗରରେ ବୁଡ଼ି ଯାଇ ନାହୁଁ । ଆମେ ବର୍ତ୍ତମାନ ଶୂନ୍ୟରେ ଉଠି ଚାଲିଛୁ । ଦୂରରେ ତାରମାନଙ୍କୁ ଦେଖ, ଉପର ଅନ୍ଧାରରେ ଝକ୍ ଝକ୍ ଦେଖା ଯାଉଛନ୍ତି । ପୃଥିବୀ ଓ ଆମ ଭିତରେ ସୂଚିଭେଦ୍ୟ ଅନ୍ଧକାର ବ୍ୟାପି ଯାଇଛି ।"

ନିକୋଲ୍ ଓ ଅର୍ଡାନ୍ ତାହା ଦେଖି ଜୟ ଜୟକାର କଲେ । ଏ ଅନ୍ଧକାରରୁ ଏପରି ପ୍ରମାଣିତ ହେଲା ଯେ ଗୋଲା ବାସ୍ତବିକ ପୃଥିବୀ ଆଡ଼ ଗୁଲି ଆସିଛି । ନୋହିଲେ ଚନ୍ଦ୍ର ଯେପରି ସ୍ନିଗ୍ଧ କିରଣ ବନ୍ୟାରେ ଚଉଦିଗ ଭସାଇ ଦେଉଥିଲେ, ତାହା ଅବଶ୍ୟ ଯାତ୍ରୀ-ମାନେ ପୃଥିବୀରେ ଥିଲେ ଦେଖି ପାରିଥାନ୍ତେ । ତେଣୁ ଅନ୍ଧକାର ଯେ ବାୟୁମଣ୍ଡଳ ଗୁଡ଼ିକାର ଯଥେଷ୍ଟ ପ୍ରମାଣ ଏଥିରେ ସନ୍ଦେହ ନାହିଁ । ସେମାନେ ବାସ୍ତବିକ ପୃଥିବୀ ଆଡ଼ ଥିଲେ ।

ଏହା ପରେ ନିକୋଲ୍ ନିଜର ପରାଜୟ ସ୍ୱୀକାର କରି ବାଜି ବାବଦ ୫୨୭,୦୦୯ ବାର୍ବିକେନ୍‌ଙ୍କ ହାତରେ ଗଣିଦେଲେ । ବାର୍ବିକେନ୍ ଏଥିପାଇଁ ଖଣ୍ଡିଏ ରସିଦ୍ ମଧ୍ୟ ଲେଖି ଦେଲେ । ତାହା ନିକୋଲ୍ ପକେଟ୍ ନୋଟ୍ ବହି ଭିତରେ ଗୁଞ୍ଜିଦେଲେ । ଜୀବନମରଣର ସନ୍ଧି ସ୍ଥଳରେ ପହୁଞ୍ଚି ମଧ୍ୟ ଆମେରିକା ଲୋକେ ଯେ ଆଦବ୍ କାଇଦା ଭୁଲି ପାରନ୍ତି ନାହିଁ, ଏଥିପାଇଁ ଅର୍ଡାନ୍ ବିସ୍ମିତ ହୋଇ ଉଭୟଙ୍କୁ ଟୋପି ଖୋଲି ସଲାମ କଲେ ।

ଆଦବ କାଇଦା ଶେଷରେ ବାର୍ବିକେନ୍ ଓ ନିକୋଲ୍ କାଚ କବାଟି ନିକଟକୁ ଯାଇ ତାରକା ମଣ୍ଡିତ ନଭୋଦେଶକୁ ଚାହିଁ ରହିଲେ । ତାରକାମାନେ ଅନ୍ଧକାର ଆବରଣ ଭିତରୁ ଉଜ୍ଜ୍ୱଳ ଭାବରେ ଦେଖାଯାଉ ଥିଲେ । ମାତ୍ର ଚନ୍ଦ୍ର ଊର୍ଦ୍ଧ୍ୱ ଆକାଶରେ ଥିବାରୁ ସେମାନେ ଦେଖି ପାରିଲେ ନାହିଁ ।

ଉପରସ୍ଥିତ କବାଟି ଖୋଲିଲେ ଚନ୍ଦ୍ର ଦେଖାଯିବ । ଏଥିପାଇଁ ବାର୍ବିକେନ୍ ତାହା ଖୋଲିବାକୁ ଯାଉ ଯାଉ ତାଙ୍କ ଦୃଷ୍ଟି ଅନ୍ୟ ଗୋଟାଏ ବିଚିତ୍ର ଦୃଶ୍ୟ ଆଡ଼କୁ ଆକୃଷ୍ଟ ହେଲା । ଗୋଟାଏ ଅତି

ଉଜ୍ଜ୍ୱଳ ପଦାର୍ଥ ଦୂରରେ ଦେଖାଗଲା । ତାହା ଗୋଟାଏ ଅତି ବଡ଼ ଆଲୋକମୟ ଗୋଲାକାର ପିଣ୍ଡ । ତାର ପରିମାଣ କେତେ ତାହା ଏମାନେ ସ୍ଥିର କରି ପାରିଲେ ନାହିଁ । ତାର ମୁହଁ ପୃଥିବୀ ଆଡ଼କୁ ଥାଇ ଖୁବ୍ ଉଜ୍ଜ୍ୱଳ ଦିଶୁଥିଲା । ତାକୁ ଦେଖି ମନେ ହେଲା, ଏହା ଯେପରି ଗୋଟିଏ କ୍ଷୁଦ୍ର ଚନ୍ଦ୍ର, ବୃହତ୍ତର ଚନ୍ଦ୍ରଠାରୁ ଆଲୋକ ସଂଗ୍ରହ କରିଅଛି । ତାହାର ଗତି ଅତି ଭୀଷଣ । ସେ ପୃଥିବୀ ଚାରିପାଖେ ଗୋଟିଏ କକ୍ଷରେ ଗତି କରୁ କରୁ ଗୋଲାର ରାସ୍ତାରେ ଆସି ପଡ଼ିଯିବ ବୋଲି ମନେ ହେଲା । ତାହା ଗୋଟାଏ କକ୍ଷରେ ଘୂରୁ ଘୂରୁ ନିଜର ଚତୁର୍ଦ୍ଦିଗରେ ମଧ୍ୟ ଘୂରୁଥିଲା । ତେଣୁ ଏହା ସୌର ଜଗତର ଗୋଟାଏ ଅଂଶ ବିଶେଷ । ଆର୍ଡାନ୍ ଏହାକୁ ଆଉ ଗୋଟାଏ ଗୋଲା ବୋଲି ମନେ କଲେ । ମାତ୍ର ବାର୍ବିକେନ୍ ବିସ୍ମିତ ହୋଇ ନୀରବରେ ଚିନ୍ତା କରିବାକୁ ଲାଗିଲେ । ତାଙ୍କ ମନରେ ଘୋର ଅସ୍ଥିରତା ଖେଳିଗଲା । ତା ଦେହରେ ଗୋଲା ଯଦି ବାଜେ ତାହେଲେ ଭୀଷଣ ଦୁର୍ଘଟଣା ଘଟିବ । ତଦ୍ଦ୍ୱାରା ଗୋଲା ଗତିଚ୍ୟୁତ ହୋଇ ପୃଥିବୀରେ ଖସି ପଡ଼ିବ କିମ୍ବା ତାର ଆକର୍ଷଣ ବଳରେ ତା ଦେହରେ ଯାଇ ପଡ଼ିଯିବ । ତା ହେଲେ ତାଙ୍କ ଚେଷ୍ଟା ପଣ୍ଡ ହୋଇଯିବ ।

ଆଉ ଦୁଇ ଯାତ୍ରୀ ଟେଲିସ୍କୋପ ବଳରେ ତାକୁ ଦୂରରୁ ଦେଖୁଥିଲେ । ତାହା କ୍ରମେ ବଡ଼ ହୋଇ ବଢ଼ିବାକୁ ଲାଗିଲା । ସେମାନେ ମନେ କଲେ ଯେପରି ଗୋଲା ତା ଉପରେ ପଡ଼ି ଯିବାକୁ ଧାଇଁଛି । ସେମାନଙ୍କ ମନରେ ବଡ଼ ଭୟ ଜାତ ହେଲା, କିନ୍ତୁ କେତେକ ସେକେଣ୍ଡ ପରେ ସେ ଭୟ ଦୂର ହୋଇଗଲା । ତାହା ସାମାନ୍ୟ କେତେ ଗଜ ଦୂରରେ ଗୋଲାକୁ ଅତିକ୍ରମ କରି ଅତି ଦ୍ରୁତ ବେଗରେ ଚାଲିଗଲା । ତାହାର ଅନ୍ୟ ତରଫ ଚନ୍ଦ୍ରର ବିପରୀତ ଦିଗରେ ଥିବାରୁ

ଅନ୍ଲେକ ଅଭାବରେ ଘନ ଅନ୍ଧକାର ଭିତରେ ବୁଡ଼ିଗଲା । ଏହା ଗୋଟିଏ ହ୍ରସ୍ୱତମ ଗ୍ରହ । କିନ୍ତୁ ପୃଥିବୀ ତାକୁ ଆକର୍ଷଣ କରି ନିଜ ଉପଗ୍ରହରେ ପରିଣତ କରିଛି ।

ଅର୍ଡ଼ାନ୍ ପଚାରିଲେ, "ତାହେଲେ ପୃଥିବୀର ଉପଗ୍ରହ ଦୁଇଟି ?"

ବାର୍ବିକେନ୍, "ନିଶ୍ଚୟ ଦୁଇଟି । ମାତ୍ର ଗୋଟିଏ ବୋଲି ଜଣା-ଯାଏ । ଏହି ଦ୍ୱିତୀୟ ଚନ୍ଦ୍ରଟି ଏତେ କ୍ଷୁଦ୍ର ଓ ଏହାର ଗତି ଏତେ ଭୀଷଣ ଯେ ପୃଥିବୀବାସୀ କେହି ଏହାକୁ ଦେଖି ପାରନ୍ତି ନାହିଁ । ଏମ୍. ପେଟିଟ୍ ନାମରେ ଜଣେ ଫରାସୀ ଜ୍ୟୋତିର୍ବିଦ୍ ଏହି ଦ୍ୱିତୀୟ ଉପଗ୍ରହର ଅବସ୍ଥିତି ଓ ପ୍ରକୃତି ସମ୍ବନ୍ଧରେ ବହୁ ଗବେଷଣା କରି-ଥିଲେ । ତାଙ୍କ ଗଣନା ଅନୁସାରେ ଏହି ଦ୍ୱିତୀୟ ଚନ୍ଦ୍ର ତିନିଘଣ୍ଟା କୋଡ଼ିଏ ମିନିଟ୍‌ରେ ପୃଥିବୀ ଚାରିପଟେ ଥରେ ଘୂରିଯାଏ । ଏଥିରୁ ଏହାର କେତେ ଭୀଷଣ ସହଜରେ ଜଣାପଡ଼ୁଛି ।"

ନିକୋଲ୍, "ଅନ୍ୟ ଜ୍ୟୋତିର୍ବିଦମାନେ ଏହି ଉପଗ୍ରହ ବିଷୟ ସ୍ୱୀକାର କରନ୍ତି କି ?

ବାର୍ବିକେନ, "ନା, ତେବେ ସେମାନେ ଯଦି ଏହାକୁ ଆମପରି ଦେଖନ୍ତେ, ତେବେ ନିଶ୍ଚୟ ସ୍ୱୀକାର କରନ୍ତେ ।"

ଏହାପରେ ବାର୍ବିକେନ୍ ଦ୍ୱିତୀୟ କବାଟି ଖୋଲିଦେଲେ । ସଙ୍ଗେ ସଙ୍ଗେ ଚନ୍ଦ୍ରର ସ୍ନିଗ୍ଧ ରଜତ ଧବଳ କିରଣରାଶି ଗୋଲାର ଗର୍ଭକୁ ମୁଖରିତ କରି ଦେଲା । ନିକୋଲ୍ ଗ୍ୟାସ ବତୀ ଲିଭାଇ ଦେଲେ । ସେହି କିରଣ ପ୍ରଭାବରେ ଆକାଶର କୌଣସି

ତାହା ଦେଖାଗଲା ନାହିଁ । ବାୟୁଶୂନ୍ୟ ନଭୋଦେଶରେ ଚନ୍ଦ୍ରକିରଣ ଅତି ନିର୍ମଳ ଓ ଅତି ପବିତ୍ର ଭାବରେ ଦେଖାଗଲା । ଆକାଶ ମଣ୍ଡଳର ଏହି ଅଭିନବ ଦୃଶ୍ୟ କୌଣସି ପୃଥିବୀ ବାସୀ ଅନୁଭବ କରି ମୋହିତ ହେବା କିମ୍ବା କଳ୍ପନା କରିବା ଅସମ୍ଭବ । ଚନ୍ଦ୍ରର ଏପରି ସ୍ନିଗ୍ଧ ମଧୁର ଉଜ୍ଜ୍ୱଳ କିରଣ ବାୟୁମଣ୍ଡଳ ମଧ୍ୟରେ ସମ୍ଭବ ହୋଇପାରେ ନାହିଁ । ତେଣୁ ପୃଥିବୀବାସୀ ତାହା ଦେଖି ତହିଁରେ ମୁଗ୍ଧ ହୋଇ ପାରନ୍ତି ନାହିଁ । ଆଜି ଯାତ୍ରୀମାନେ ତାହା ଦେଖି ଯେଉଁ ପରିମାଣରେ ଅସ୍ଥିର ହୋଇପଡ଼ିଲେ, ତାହା କଳ୍ପନାତୀତ ।

ନିଜର ମାତୃ ସ୍ୱରୂପା ପୃଥିବୀ ସମ୍ବନ୍ଧରେ ସେମାନେ ଏପର୍ଯ୍ୟନ୍ତ କିଛି ଭାବି ନଥିଲେ । ଅର୍ଡାନ୍ ଏ ବିଷୟରେ ପ୍ରଥମେ ଉତ୍ସୁକ ହୋଇ ପୃଥିବୀକୁ ଦେଖିବାକୁ ଚାହିଁବାରୁ ବାର୍ବିକେନ୍ ତଳ କବାଟି ଖୋଲିଲେ । ତାହା ଅଧ ଗଜେ ଓସାର ମୋଟା ତାଲ ପରି । ତାପରେ ପାଞ୍ଚ ଇଞ୍ଚ ମୋଟା କାଚର ପର୍ଦ୍ଦା । ତାହା ପିତ୍ତଳର ଶକ୍ତ ବଳୟ ଦ୍ୱାରା ଦୃଢ଼ରୂପେ ଅଣ୍ଟା ହୋଇଥିଲା । ଯାତ୍ରୀମାନେ ଝୁଙ୍କି ବସି ତା ଭିତର ଦେଇ ପୃଥିବୀ ଆଡ଼କୁ ଲକ୍ଷ୍ୟକଲେ । ପୃଥିବୀ ଘୋର ଅନ୍ଧକାରାଚ୍ଛନ୍ନ ଓ ବଡ଼ ଅସ୍ପଷ୍ଟ ଦେଖାଗଲା । ଆର୍ଡାନ୍ ଖୁବ୍ ପତଳା ରେଖାଯୁକ୍ତ ରୌପ୍ୟ ବଳୟଟିଏ ଦେଖି ତାହା ପୃଥିବୀ ବୋଲି ସନ୍ଦେହ କଲେ ।

ବାର୍ବିକେନ୍ କହିଲେ, "ତାହାହିଁ ପୃଥିବୀ । ଯେତେବେଳେ ଚନ୍ଦ୍ର ପୂର୍ଣ୍ଣ ହୋଇଯିବ ଓ ଆମେ ସେଠାରେ ପହଞ୍ଚିବା, ସେତେବେଳେ ପୃଥିବୀରେ ଅମାବାସ୍ୟା । ସେତେବେଳେ ପୃଥିବୀ ଚାରିପଟେ ଗୋଟାଏ ସରୁ ବଳୟ ଦେଖାଯିବ । ମାତ୍ର ତାହା ଖୁବ୍ ଶୀଘ୍ର ଅଦୃଶ୍ୟ

ହୋଇଯିବ ଏବଂ ତାପରେ କିଛିଦିନ ଦୁର୍ଭେଦ୍ୟ ଅନ୍ଧକାର ଭିତରେ ବୁଡ଼ିରହିବ ।

ପୃଥିବୀ ସେତେବେଳେ ପକ୍ଷର ଶେଷଭାଗକୁ ଗତି କରିଥିଲା । ଆଲୋକ ରେଖାର ଏକ-ଅଷ୍ଟମାଂଶ ଭାଗରେ ତାର ଅବସ୍ଥିତି ଥିଲା । ଆକାଶର ବିଶାଳ ଅନ୍ଧକାର ବକ୍ଷରେ ତାର ଆଂଶିକ ବଳୟ ପରିଷ୍କାର ରୂପେ ଅଙ୍କିତ ହୋଇଥିଲା । ବାୟୁମଣ୍ଡଳ ହେତୁ ତାର ଆଲୋକ ନୀଳବର୍ଣ୍ଣ ଦେଖାଯାଉଥିଲା । ମାତ୍ର ଚନ୍ଦ୍ରାଲୋକ ତୁଳନାରେ ତାର ଆଲୋକ ଆଦୌ ସ୍ପଷ୍ଟ ହୋଉନଥିଲା । ତାର ବଳୟ ଆକାଶ ବକ୍ଷରେ ଅତି ବିଶାଳ ଦେଖାଯାଉଥିଲା ଏବଂ ତାକୁ ଦେଖି ମନେହେଲା ଯେପରି ଗୋଟାଏ ବିଶାଳ ଖିଲାଣ ସମଗ୍ର ନଭୋଦେଶକୁ ବ୍ୟାପି ରହିଅଛି । ତା ଭିତରେ ଗୋଟାଏ ଗୋଟାଏ ସ୍ଥାନରେ ପରିଷ୍କାର ଆଲୋକିତ ବିନ୍ଦୁ ଦେଖାଯାଉଥିଲା, ତାହା ପୃଥିବୀର ବଡ଼ ବଡ଼ ପର୍ବତ ବୋଲି ମନେହେଲା । ମାତ୍ର ପରକ୍ଷଣରେ ଗୋଟାଏ ଗୋଟାଏ କଳାବିନ୍ଦୁ ଭାସିଯାଇ ସେ ଆଲୋକିତ ଅଂଶଗୁଡ଼ିକୁ ଲୁଚାଇ ଦେଉଥିଲା । ଏପରି ଅବସ୍ଥା ଚନ୍ଦ୍ର ଦେହରେ ଲକ୍ଷିତ ହୁଏନାହିଁ । ତେଣୁ ତାହା ପୃଥିବୀର ବାୟୁମଣ୍ଡଳ ଭିତରେ ଭାସୁଥିବା ପ୍ରକାଣ୍ଡ ମେଘଖଣ୍ଡ ଛଡ଼ା ଅନ୍ୟ କିଛି ନୁହେଁ ।

ବିଶାଳ ଅନ୍ଧକାର ଭିତରେ ପୃଥିବୀକୁ ଠିକ୍‌ଏ ଦେଖିବାକୁ ଯେତେବେଳେ ଯାତ୍ରୀମାନେ ଶତ ଚେଷ୍ଟା କରୁଥିଲେ, ସେତେବେଳେ ଅସଂଖ୍ୟ ନକ୍ଷତ୍ରପାତ ଦେଖି ସେମାନଙ୍କ ଆଖି ଝଲସି ପଡ଼ିଲା । ଶତ ଶତ ଉଲ୍‌କା ପୃଥିବୀର ବାୟୁମଣ୍ଡଳ ଯୋଗେ ଆଲୋକିତ ହୋଇ ଅନ୍ଧକାର ଗର୍ଭରେ ଉଜ୍ଜ୍ୱଳ ଆଲୋକରେଖା ସବୁ ଅଙ୍କିତ କରୁଥିଲେ ଏବଂ ପୃଥିବୀ ଉପରେ ଅଗ୍ନିର ସୂତାସବୁ ଟାଣି ଅନ୍ୟ ଦଗରେ ଛୁଟି

ଯାଉଥିଲେ । ଅଧିକାଂଶ ବର୍ଷ ଡିସେମ୍ବର ମାସରେ ଏ ଅବସ୍ଥା ଘଟେ ଏବଂ ଘଣ୍ଟାରେ ଚବିଶ ହଜାର ଙ୍କର ଉଲ୍କାପାତ ଦେଖାଯାଏ ।

ପୃଥିବୀ କ୍ରମେ ଘୋର ଅନ୍ଧକାରରେ ବୁଡ଼ିଗଲା । ସୌର-ଜଗତରେ ଏହା ଗୋଟିଏ ଅତି କ୍ଷୁଦ୍ରତମ ଗ୍ରହ । ବଡ଼ ବଡ଼ ଗ୍ରହମାନଙ୍କ ଆଗରେ ଏହା ଗୋଟିଏ ସାମାନ୍ୟ ସନ୍ଧ୍ୟା ବା ପ୍ରଭାତୀ ତାରା ପରି ଅସ୍ପୋଦ୍ଭାତ ହୁଏ । ବର୍ତ୍ତମାନ ଯାତ୍ରୀମାନଙ୍କ ଦୃଷ୍ଟିରେ ଶୂନ୍ୟରେ ଏହା ଗୋଟିଏ ଅତି ଅସ୍ପଷ୍ଟ ବିନ୍ଦୁ ; ଗୋଟିଏ ଦ୍ରୁତ-ଗତିଶୀଳ ବଳୟ ମାତ୍ର । ମାତ୍ର ସେହି ତାଙ୍କର ମାତୃଭୂମି, ସମସ୍ତ ସୁଖ, ସମ୍ପଦ ଓ ଅସୀମ ସ୍ନେହମମତାର ଆଧାରଭୂତା, ଅନନ୍ତ ସୁଖ-ଦାୟିନୀ ପୃଥିବୀ ।

ଏପରି ଦର୍ଶନ ଓ ଚିନ୍ତାରେ ଅଭିଭୂତ ହୋଇ ଯାତ୍ରୀମାନେ କେତେକାଳ ବିହ୍ୱଳ ହୋଇପଡ଼ିଲେ । ତାପରେ ସେମାନଙ୍କୁ ନିଦ ଙ୍ଘାଙ୍କିଲା । ଦିନ ଯାକର ଘୋର ମାନସିକ ଉଦ୍‌ବେଗ ଓ ଅସୀମ ପରିଶ୍ରମ ପରେ ସେମାନଙ୍କ ଶରୀର ସ୍ୱଭାବତଃ ବିଶ୍ରାମ ଚାହିଁଲା । ତେଣୁ ସେମାନେ ତଳ ଜଳାଟୀ ବନ୍ଦକରି ଦେଇ ନିଜ ନିଜ ଖଟିଆ ଉପରେ ଦେହଟିମାନ ବିଛାଇ ଦେଲେ । ସାଙ୍ଗେ ସାଙ୍ଗେ ଗାଢ଼ ନିଦ୍ରା ଗ୍ରାସକରି ପକାଇଲା ।

ପ୍ରାୟ ପନ୍ଦର ମିନିଟ୍‌ପରେ ବାର୍ବିକେନ୍‌ଙ୍କ ନିଦ ହଠାତ୍ ଭାଙ୍ଗିଗଲା ; ସେ ଉଠିପଡ଼ି ବନ୍ଧୁମାନଙ୍କୁ ହଲାଇ ଉଠାଇଦେଇ କହିଲେ, “ଭାଇମାନେ ! ମୁଁ ସେ ତଥ୍ୟ ବୁଝି ପାରିଛି ।”

ଆର୍ଡାନ୍—“କେଉଁ ତଥ୍ୟ ?”

ବାର୍ବିକେନ୍—"ଆମେ ସେମାନଙ୍କ ବାରୁଦ ବିସ୍ଫୋରଣର ଶବ୍ଦ ଶୁଣି ପାରିଲୁନାହିଁ ।"

ନିକୋଲ୍—"ସତେଜନା ? ଜଣେ ଠିକ୍ କହିଲ ?"

ବାର୍ବିକେନ୍—"ଆମ ଗୋଲାର ଗତି ଶବ୍ଦର ଗତିଠାରୁ ଅଧିକ ଥିବାରୁ ବିସ୍ଫୋରଣ ଶବ୍ଦ ଆମ ପାଖରେ ପହଞ୍ଚିପାରିଲା ନାହିଁ ।"

ଦୁଇ ବନ୍ଧୁ ତାହା ଠିକ୍ ବୋଲି କହି ବାର୍ବିକେନ୍‌କୁ ଧନ୍ୟବାଦ ଦେଲେ ଏବଂ ସମସ୍ତେ ଏକ ସଙ୍ଗେ ପୁଣି ଗାଢ଼ ନିଦ୍ରାରେ ଅଭିଭୂତ ହେଲେ ।

---

—ତିନି—

## ଅପାର୍ଥୀବ ଦୃଶ୍ୟାବଳୀ

ସେମାନଙ୍କର ଏପରି ସୁସୁପ୍ତି ହେଲା, ଯାହା ସେମାନେ ସାରା ଜୀବନରେ ମୁହୂର୍ତ୍ତେ ସୁଦ୍ଧା ଅନୁଭବ କରି ନ ଥିଲେ । ଏପରି ନୀରବ, ନିସ୍ତବ୍ଧ, ଶାନ୍ତିପୂର୍ଣ୍ଣ ଅବସ୍ଥା ପୃଥିବୀରେ କାହିଁ ସମ୍ଭବ ହେବ ? ସହରରେ ଅସୀମ ଶବ୍ଦ ସ୍ରୋତ ଦିବାରାତ୍ର ଲାଗି ରହିଛି । ପଲ୍ଲୀରେ ମଧ୍ୟ ତାର ବିରାମ ନାହିଁ । କେତେ ରକମର ପଲ୍ଲୀସୁଲଭ ଶବ୍ଦମାନଙ୍କରେ ତାର ଚୌଦିଗ ନିରନ୍ତର ପୂରି ରହିଛି । ସମୁଦ୍ରରେ ଚଞ୍ଚଳ ତରଙ୍ଗାକୁଳିତ ଜାହାଜମାନ ନିରନ୍ତର ଦୋଳାୟମାନ । ଆକାଶରେ ବେଲୁନ୍ ଯାତ୍ରୀ ପକ୍ଷରେ ମଧ୍ୟ ପବନର ବିଭିନ୍ନ ସ୍ତରରେ

ବିଭିନ୍ନ ଧକ୍କାରେ ଶାନ୍ତ ନିଦ୍ରା ଅସମ୍ଭବ । ଏବେମାତ୍ର ଏହି ଗୋଲା ଅନନ୍ତ ଶୂନ୍ୟରେ ନୀରବରେ ଭାସିଯାଉଥିଲା । ତହିଁରେ କୌଣସି ଅଶାନ୍ତି, କୌଣସି ଧକ୍କା ବା କୋଳାହଳ ନ ଥିଲା । ଏ ନିଦ୍ରା ସେମାନଙ୍କ ପକ୍ଷରେ ଅସୀମ ଆରାମଦାୟକ ହେଲା । ଏଠାରେ ଏକ ଘଣ୍ଟାର ନିଦ୍ରା ପୃଥିବୀରେ ଏକ ରାତିର ନିଦ୍ରା ସଙ୍ଗେ ସମାନ ହୋଇ ପାରେ ।

ସେମାନଙ୍କ ନିଦ୍ରା କେତେ କାଳ ଯେ ବ୍ୟାପି ଥିଲା ତାର ଠିକଣା ନାହିଁ । ତହିଁ ଆରଦିନ ସକାଳ ୭ଟା ବେଳେ ଗୋଟାଏ ଶବ୍ଦ ସେମାନଙ୍କୁ ଜାଗ୍ରତ କରି ଦେଲା । ଗୋଟାଏ କୁକୁର ଭୋ ଭୋ ଡାକ ଛାଡ଼ିଲା ମାତ୍ରକେ ଅର୍ଡାନ ଉଠି ପଡ଼ିଲେ । ସଙ୍ଗେ ସଙ୍ଗେ ତାଙ୍କ ବନ୍ଧୁ-ମାନେ ମଧ୍ୟ ଉଠି ବସିଲେ । ଗୋଲାର ଧକ୍କା ପାଇବା ଯୋଗୁଁ କୁକୁର ଦୁଇଟି ଉପରେ ଡେଇଁଯାଇ ଖଟିଆର ଗୋଟାଏ କଣରେ ପଡ଼ି ରହି ଥିଲେ । ସେଥିରୁ ଗୋଟାଏ କୁକୁରକୁ ଟିକିଏ ହେବାରୁ ସେ ସେହିଠାରେ ଲହୁ ରକ୍ତ ଖାଇବାକୁ ଖୋଜିଲା । ଅର୍ଡାନ୍ ତାକୁ ଉଠାଇ ଆଣି ଖାଇବାକୁ ଦେଲେ । ସେ ଗାଇଁ ଗାଇଁ ହୋଇ ଖୁବ୍ ଗୁଡ଼ାଏ ଖାଇ ଦେଲା ।

ତା ପରେ ଅନ୍ୟ କୁକୁରକୁ ଖୋଜା ପଡ଼ିଲା । ସେ ଗୋଲାର ଧକ୍କାରେ ଛିଟି ହୋଇ ଗୋଟାଏ ବାକ୍ସ ସନ୍ଧିରେ ପଡ଼ିଯାଇ ଥିଲା । ତାର ଅବସ୍ଥା ବିଶେଷ ଭଲ ନ ଥିଲା । ତାକୁ ତଳକୁ ଆଣି ଦେଖା ଗଲା, ତା ମୁଣ୍ଡଟା ଫାଟି ଯାଇଛି । ସେ ଏ ଯାତ୍ରା ସମ୍ଭାଳିବା କଠିନ । ଅର୍ଡାନ ତାକୁ ଗୋଟିଏ ଖଟିଆରେ ଶୁଆଇ ଥୋଡ଼ାଏ ପାଣି ପିଆଇ ଦେଲେ । ସେ କେତେକ ପରିମାଣରେ ଆରାମ ଅନୁଭବ କରି ପୁଣି ଶୋଇ ପଡ଼ିଲା ।

ଏହା ପରେ ଯାତ୍ରୀମାନେ ଚନ୍ଦ୍ର ଓ ପୃଥିବୀକୁ ଲକ୍ଷ୍ୟ କରିବାକୁ ଲାଗିଲେ । ପୃଥିବୀର ଅସ୍ପଷ୍ଟ ଆଲୋକିତ ପରିଧି ପୂର୍ବ ସନ୍ଧ୍ୟା ଅପେକ୍ଷା ବହୁତ ଶ୍ରେଷ୍ଠ ଜଣାଗଲା । ତଥାପି ଚନ୍ଦ୍ର ତୁଳନାରେ ତାର ବୃହତ୍ ଭୀଷଣ ରୂପେ ବଡ଼ ଦେଖା ଯାଉଥିଲା ।

ଅର୍ଡ଼ାନ୍ ପୃଥିବୀକୁ ସଫା ରୂପେ ଦେଖି ନ ପାରି ବଡ଼ ବ୍ୟସ୍ତ ହୋଇଥିଲେ । ତାହା ସୂର୍ଯ୍ୟାଲୋକରେ ଆଲୋକିତ ହେଉଥିଲେ ତାର ସ୍ଥଳ ଓ ଜଳ ଭାଗ କେଡ଼େ ରମଣୀୟ ଦେଖାଯାଉଥାନ୍ତା । ମହାଦେଶ ସବୁ ଚକ୍ ଚକ୍ କରୁଥାନ୍ତା ଏବଂ ସମୁଦ୍ର ସବୁ କଳା ରଙ୍ଗରେ ରଞ୍ଜିତ ହୋଇଥାନ୍ତା । ଯେଉଁ ମେରୁ ଅଞ୍ଚଳମାନଙ୍କରେ ମନୁଷ୍ୟର ଆଖି ଏ ପର୍ଯ୍ୟନ୍ତ ସ୍ଥିର ହୋଇ ରହିପାରି ନାହିଁ, ତାକୁ ମଧ୍ୟ ସେମାନେ ଦେଖି ପାରିଥାନ୍ତେ । ଏହା ଶୁଣି ବାର୍ବିକେନ୍ କହିଲେ, "ତା ହେଲେ ଚନ୍ଦ୍ର ଦେହରେ ଅମାନ୍ଧକାର ଘୋଟି ଯାଇଥାନ୍ତା । ଆମ୍ଭେମାନେ ଆମ ଲକ୍ଷ୍ୟ ବିଷୟରେ ବେଶି ମନଯୋଗୀ ହେବା ଉଚିତ । ଯାହାକୁ ଛାଡ଼ି ଆସିଲେଣି ତା ବିଷୟରେ ଏତେ ମନଦେବା ଆବଶ୍ୟକ ନାହିଁ ।" ନିକୋଲ୍ କହିଲେ , "ସେ କଥା ଠିକ୍, ବାର୍ବିକେନ୍ ! ଆମେ ଚନ୍ଦ୍ରରେ ପହଞ୍ଚି ଗଲେ ପୃଥିବୀକୁ ଭଲ ରୂପେ ଦେଖିବାକୁ ଯଥେଷ୍ଟ ସମୟ ପାଇବା ।"

ଏହା ପରେ ସେମାନେ ଖାନା ଖାଇବାକୁ ବସିଲେ । ନାନା-ବିଧ ଭକ୍ଷ୍ୟଭୋଜ୍ୟରେ ଖାନା ଟେବୁଲ୍ ଭରିଗଲା । ସେମାନେ ମନ ଭରି ପେଟ୍ ପୂରି ଖୁବ୍ ଖାଇଲେ, ଖୁବ୍ ପିଇଲେ । ଏଥିରେ ସେମାନଙ୍କ ମନର ଫୁର୍ତ୍ତି ଖୁବ୍ ବଢିଗଲା । ସେତେବେଳକୁ ଅଠଟା ସମୟ । ପୃଥିବୀର ଛାଇ ଅପସାରିତ ହୋଇଗଲା ମାତ୍ରେ ତଳ ଝରକା ବାଟେ ସୂର୍ଯ୍ୟାଲୋକ ଗୋଲା ଭିତରେ ଆସି ପଡ଼ିଲା । ସେମାନେ ସୂର୍ଯ୍ୟକୁ ଦେଖି

ମୁଗ୍ଧ ହୋଇଗଲେ । ଗୋଲାର ଅଭ୍ୟନ୍ତର ଚନ୍ଦ୍ରାଲୋକରେ ଶୀତଳ ହେବା ସଙ୍ଗେ ସଙ୍ଗେ ସୂର୍ଯ୍ୟାଲୋକରେ ଉତ୍ତପ୍ତ ହେବାକୁ ଲାଗିଲା । ଏପରି ଶୀତୋଷ୍ଣତାର ସମତା ଗୋଲା ଭିତରେ ପୂର୍ଣ୍ଣ ରୂପେ ରକ୍ଷିତ ହେବାରୁ ସେମାନଙ୍କ ମନର ଆନନ୍ଦ ବହୁପରିମାଣରେ ବଢ଼ିଗଲା । ଏ ଅବସ୍ଥା ସେମାନଙ୍କ ସ୍ୱାସ୍ଥ୍ୟ ଉପରେ ମଧ୍ୟ ଅସାଧାରଣ ପ୍ରଭାବ ବିସ୍ତାର କଲା ।

ସେମାନେ ସୂର୍ଯ୍ୟାଲୋକରେ ଗୋଲାର ଅଭ୍ୟନ୍ତର ଭଲରୂପେ ଦେଖି ନେଲେ । ତା ଭିତରେ ୫୪ ବର୍ଗ ଫୁଟ ଖୋଲା ଜାଗା ଥିଲା । ତାହା ମଧ୍ୟ ଜିନିଷପତ୍ରରେ ବିଶେଷ ଖିନ୍ନ ହୋଇ ନ ଥିବାରୁ ସେମାନଙ୍କ ଚଳାଚଳ ପାଇଁ ବହୁତ ଜାଗା ମିଳୁଥିଲା । ସେମାନେ ଭୂଇଁରେ ଗୁଳିଲା ପରି ତା ଭିତରେ ଚଳାଚଳ ହେଉ ଥିଲେ । ଜିନିଷ ପତ୍ରର ମଧ୍ୟ କୌଣସି ଅଭାବ ନ ଥିଲା । ଦୁଇମାସ ପାଇଁ ଖାଦ୍ୟ ଓ ଜଳ ତାଙ୍କ ପାଖରେ ମହଜୁତ ଥିଲା । ସେମାନଙ୍କ ମନରେ ଗୋଟାଏ ଭୟ ଏହୁ ଯେ, ଯଦି ସେମାନେ ଚନ୍ଦ୍ର ଦେହରେ ଥିବା ଗୋଟାଏ ମରୁଭୂମିରେ ପହଞ୍ଚି ଯାନ୍ତି, ତା ହେଲେ ବିଶେଷ ଅସୁବିଧା ଭୋଗିବାକୁ ପଡ଼ିବ । ତଥାପି ସେମାନଙ୍କର ଆଶା ହେଉ ଥିଲା ଯେ ଚନ୍ଦ୍ର ଦେହରେ ବାୟୁ ଓ ଜଳ ଭରି ରହିଛି । ଖାଦ୍ୟ ମଧ୍ୟ ପ୍ରଚୁର ମିଳି ପାରିବ । ସେମାନେ ସେ ଅଞ୍ଚଳକୁ ଯାଇ ନିଜ ନିଜର ସବୁ ସୁବିଧା କରି ନେଇ ପାରିବେ ।

ନିଶ୍ୱାସ ବାୟୁପାଇଁ ସେମାନେ ଯେଉଁ ଯନ୍ତ୍ର ସାଙ୍ଗରେ ଆଣିଥିଲେ ତାହା ଅଦ୍ଭୁତ ପ୍ରକାରେ କାର୍ଯ୍ୟ କରୁଥିଲା । ଅତି ଉଚ୍ଚସ୍ତରକୁ ଯାଇ ତାର ଶକ୍ତି ବହୁତ ବୃଦ୍ଧି ପାଇଲା । ସେମାନେ ସେଥିପାଇଁ ବିଶେଷ ଆରାମ ଉପଭୋଗ କରୁଥିଲେ ।

ସେମାନେ ବହୁତ ଯନ୍ତ୍ରପାତି, ବହୁତ ମଞ୍ଜି, ବହୁତ ବୃକ୍ଷ ଓ ଖୋଲା ଉପକରଣ ଓ ଅନେକ ଜିନିଷ ସାଙ୍ଗରେ ଆଣିଥିଲେ । ତାହା ଗୋଲ୍ ଦେହରେ ବିଭିନ୍ନ ସ୍ଥାନରେ ଖଞ୍ଜା ହୋଇଥିଲା । ସୂର୍ଯ୍ୟାଲୋକ ସାହାଯ୍ୟରେ ଏମାନେ ତାହାସବୁ ପରୀକ୍ଷା କରି ଦେଖିଲେ ଯେ ସେ ସବୁ ଠିକ୍‌ଅଛି । ଗୋଲ୍ ଅଘାତରେ କିଛି ନଷ୍ଟ ହୋଇ ଯାଇନାହିଁ । ତାପରେ ସେମାନେ ଆଣିଥିବା ହାବେଲୀ ବାଣସବୁ ଦେଖିଲେ । ତାହାସବୁ କୌଣସି କ୍ଷତ ନହୋଇ ଖୁବ୍ ଯତ୍ନରେ ରଖାଯାଇଥିଲା । ଗୋଲ୍ ଆକର୍ଷଣର ସମସ୍ଥାନ ପାର ହୋଇ ଯେତେବେଳେ ଚନ୍ଦ୍ରର ଆକର୍ଷଣ ପ୍ରଭାବରେ ତା ଅଡ଼କୁ ଟାଣି ହୋଇଯିବ, ତାର ସେ ପତନର ବେଗକୁ କମାଇବାକୁ ଯାଇ ଏମାନେ ହାବେଲୀ ଛାଡ଼ିବେ । ତାହା ସବୁ ଗୋଲ୍‌ର ପତନ ବେଗକୁ ଅନେକ ପରିମାଣରେ କମାଇ ଦେବ ।

ଏହାସବୁ ଦେଖିସାରି ସେମାନେ ପର୍ଯ୍ୟବେକ୍ଷଣ କାମରେ ଲାଗିଲେ । ଏକା ଦୃଶ୍ୟ ଚାରିଆଡ଼େ ବ୍ୟାପି ରହିଥିଲା । ନଭୋମଣ୍ଡଳର ସମସ୍ତ ଅଂଶ ତାରକାବଳୀରେ ଭର୍ତ୍ତି ହୋଇ ଯାଇଥିଲା ଏବଂ ସମୁଜ୍ଜ୍ୱଳ ଜ୍ୟୋତିଷ୍କପୁଞ୍ଜ ନିଜ ନିଜ ଶାନ୍ତ, ସ୍ନିଗ୍ଧ ଶୋଭାରାଶିରେ ଦର୍ଶକମାନଙ୍କ ମନ-ନୟନ ହରଣ କରୁଥିଲେ । ଏକ ତରଫରେ ସୂର୍ଯ୍ୟ ପ୍ରକୃତର ବିରାଟ ନିଆଁଗଦା ପରି ଆକାଶର କଳାପର୍ଦ୍ଦା ଦେହରେ ଶୋଭା ପାଉଥିଲେ । ଅନ୍ୟ ତରଫରେ ଚନ୍ଦ୍ର ସୂର୍ଯ୍ୟର ଉତ୍ତପ୍ତ କିରଣରାଶି ନିଜଠାରେ ପ୍ରତିଫଳିତ କରି ବିଶାଳ ତାରକାପୁଞ୍ଜ ମଧ୍ୟରେ ଅଚଳ ଭାବରେ ପଡ଼ିରହିଥିଲେ । ଆଉ ଗୋଟାଏ ଅଂଶରେ ପୃଥିବୀ ରଜତ ପରିଧି ମଧ୍ୟରେ ଗୋଟାଏ ବିରାଟ ଚନ୍ଦ୍ରପରି ଅବସ୍ଥିତ ଥିଲା ଏବଂ ଅସୀମ ଆକାଶର ମଧ୍ୟଭାଗରେ ଗୋଟାଏ ରାକ୍ଷସ ବିବର ପରି

ଦେଖା ଯାଉଥିଲା । ଗୋଟାଏ ଗୋଟାଏ ପ୍ରକାଣ୍ଡ ନୀହାରିକା ଖଣ୍ଡ ବିଶାଳ ବରଫ ପର୍ଦ୍ଦାପରି ଆକାଶର ଅନନ୍ତ ଉଚ୍ଚ ପ୍ରଦେଶରୁ ଅନନ୍ତ ନିମ୍ନ ଦେଶ ପର୍ଯ୍ୟନ୍ତ ବ୍ୟାପି ଏଣେ ତେଣେ ଭାସି ବୁଲୁଥିବାପରି ଦେଖାଯାଉଥିଲା । ଅସଂଖ୍ୟ ତାରକାଗୁମ୍ଫିତ ବିଶାଳ ଛାୟାପଥ ଗୋଟାଏ ଗୋଟାଏ ପ୍ରକାଣ୍ଡ ବର୍ତ୍ତୁଳ ମୁଦ୍ରିକାପରି ଅସୀମ ବ୍ୟୋମପଥକୁ ଆବୃତ କରି ତାରକା ରୂପକ ଅସଂଖ୍ୟ ଧୂଳିକଣା ଉଡ଼ାଇଲା ପରି ଦେଖା-ଯାଉଥିଲା । ସୂର୍ଯ୍ୟ ତା ମଧ୍ୟରେ ଗୋଟାଏ ଅତି ବିଶାଳ ତାରକାପରି ସୁଶୋଭିତ ହେଉଥିଲେ ।

ଯାତ୍ରୀମାନେ ଏସବୁ ଅଭିନବ ଦୃଶ୍ୟାବଳୀ ମଧ୍ୟରେ ଏତେ ତନ୍ମୟ ହୋଇ ପଡ଼ିଲେ ଯେ, ସେମାନେ ତହିଁରୁ ଆଖି ଫେରାଇ ପାରିଲେ ନାହିଁ କିମ୍ବା ସେମାନଙ୍କର କୌଣସି ବାକ୍‌ଶକ୍ତି ଜାଗିପାରିଲା ନାହିଁ । ସେମାନେ ଏ ଦୃଶ୍ୟାବଳୀକୁ ବ୍ୟାଖ୍ୟା କରିବାକୁ ଭାଷା ପାଇଲେ ନାହିଁ । ଗୋଟାଏ ଅଜ୍ଞାତ ଚେତନା ସେମାନଙ୍କ ପ୍ରାଣରେ ଖେଳିଗଲା । ବହୁବେଳପରେ ବାର୍ବିକେନ୍ ଟିକିଏ ଜାଗ୍ରତ ହୋଇ ଏ ସମସ୍ତ ଅନୁଭୂତ ତାଙ୍କ ନୋଟ୍ ବହିରେ ଟିପିଦେଲେ । ତହିଁରେ ସେ ପ୍ରତି ଘଣ୍ଟାର ଅନୁଭୂତ ଅଲଗା ଟିପି ଆସୁଥିଲେ ।

ବାରଘଣ୍ଟା ପରେ ପୃଥିବୀରେ ଯେତେବେଳେ ରାତି ହୁଏ, ସେହି ସମୟକୁ ହିସାବ କରି ସେମାନେ ରାତିଭୋଜନ କଲେ । ପ୍ରାକୃ ଯଥାର୍ଥରେ ଏହା ସେମାନଙ୍କ ପକ୍ଷରେ ରାତି ନଥିଲା । ତହିଁରେ ଖା ପା ଖାଇସାରି ସେମାନେ ଗାଢ଼ନିଦ୍ରାରେ ଅଭିଭୂତ ହୋଇଲେ । କୌଣସି ଦୁର୍ଘଟଣା ଘଟି ନ ଥିବାରୁ ସେମାନେ ଖୁବ୍ ଶାନ୍ତି, ଖୁବ୍ ଆନନ୍ଦ ଅନୁଭବ କରୁଥିଲେ । ସୁତରାଂ ନିଦ୍ରାରେ ବାଧା ଦେବାକୁ କୌଣସି ଘଟଣା

ଘଟି ନ ଥିଲା । ଗୋଲକ ନାଳର ଗତି ସଙ୍ଗେ ସଙ୍ଗେ ଅନନ୍ତ ବ୍ୟୋମ ଭିତରେ ନାଳର ଗୋଟିଏ ପଥ ଅଙ୍କିତ କରି ଅଗ୍ରସର ହେଲା ।

---

—ଦୁଇ—

## ଘୁରୁଚର ହିସାବ

ସେମାନଙ୍କ ପକ୍ଷରେ ରାତି ବା ଦିନ ବୋଲି ଗୋଟାଏ କିଛି ନଥିଲା । ସେମାନଙ୍କ ଗୋଲକର ନିମ୍ନ ଅଂଶ ସୂର୍ଯ୍ୟାଲୋକରେ ସବୁବେଳେ ଆଲୋକିତ ହେଉଥିଲା ଏବଂ ଉପର ଅଂଶ ଚନ୍ଦ୍ରର ଶୀତଳ କିରଣରେ ପ୍ଲାବିତ ହେଉଥିଲା । ସୁତରାଂ ସେମାନେ ଏକ ସମୟରେ ଦିନ ଓ ରାତି ଉପଭୋଗ କରୁଥିଲେ ।

ସେମାନଙ୍କର ଏତେ ଦୀର୍ଘ ଓ ଗାଢ଼ ନିଦ୍ରାର କାରଣ ଏହି ଯେ, ଗୋଲକ ଯଦିଓ ଅତି ତୀକ୍ଷ୍ଣ ବେଗରେ ଗତି କରୁଥିଲା, ତଥାପି ସେମାନେ ତାର ଅଭ୍ୟନ୍ତରରେ ରହି ତାହା ଆଦୌ ଅନୁଭବ କରୁନଥିଲେ । ଗୋଲକ ବରାବର ସ୍ଥିର, ଅଚଳ ବୋଲି ସେମାନଙ୍କୁ ପ୍ରତୀତ ହେଉଥିଲା । ସେମାନଙ୍କର ମୁହୁର୍ମୁହୁ ସ୍ଥାନ ପରିବର୍ତ୍ତନ ହେଉଥିଲେ ମଧ୍ୟ ଅସୀମ ଶୂନ୍ୟରେ ତାହା ଧରିବା ଅସମ୍ଭବ । ପୃଥିବୀବାସୀ ଘଣ୍ଟାକେ ୬୮ ହଜାର ମାଇଲ ବେଗ ମଧ୍ୟରେ ଯାହା ରହିଛନ୍ତି, ସେମାନେ କଣ ତାହା ଅନୁଭବ କରୁଛନ୍ତି ? ବିଶ୍ୱବାସୀ ଜୀବମାନେ ଯେଉଁ ନିଦ୍ରା ଉପଭୋଗ କରନ୍ତି, ତାହା ତୀକ୍ଷ୍ଣ ବେଗ ପକ୍ଷରେ ଗୋଟାଏ ବିଶ୍ରାମ ଛଡ଼ା ଅନ୍ୟ କିଛି ନୁହେଁ । ସେତିକି ଛଡ଼ା ଅନ୍ୟ କୌଣସି ପାର୍ଥିବ ଗତି ସେମାନେ ଅନୁଭବ କରି ପାରନ୍ତି

ନାହିଁ । ଶରୀର ବିଶ୍ରାମ ନେଉଥିବା ବେଳେ ଗୋଟାଏ ବାହ୍ୟଶକ୍ତି ତାକୁ ଗତିଶୀଳ କରି ଦେଉ ନ ଥିଲେ ସେ ଜଡ଼ ବିଶ୍ରାମରୁ ମୋଟେ ଜାଗ୍ରତ ହୁଅନ୍ତା ନାହିଁ । ଗତିଶୀଳ ଥିଲାବେଳେ ବାଟରେ କୌଣସି ପ୍ରତିବନ୍ଧକ ଘଟୁ ନ ଥିଲେ ସେ କେବେହେଁ ଶାନ୍ତ ହୁଅନ୍ତା ନାହିଁ । ପ୍ରକୃତିର ବିଧାନ ଅତି ବିଚିତ୍ର ଓ ଜୀବର ରକ୍ଷାପାଇଁ ବିସ୍ମୟକର କୌଶଳ ।

ବାର୍ବିକେନ୍ ଓ ତାଙ୍କ ସହଯାତ୍ରୀମାନେ ଏତେବଡ଼ ବେଗବାନ୍ ଗୋଲାଭିତରେ ରହି ମଧ୍ୟ ନିଜକୁ ନିଶ୍ଚଳ ମନେ କରୁଥିଲେ । ସେମାନଙ୍କ ଦୃଷ୍ଟିରେ ଚନ୍ଦ୍ର କ୍ରମେ କ୍ରମେ ବଡ଼ ଓ ପୃଥିବୀ କ୍ରମେ କ୍ରମେ ଛୋଟ ହୋଇ ଯାଉ ନ ଥିଲେ ସେମାନେ ମନେ କରନ୍ତେ ଯେପରି ସେମାନେ ଅନନ୍ତ ଶୂନ୍ୟରେ ସ୍ଥିର ନିଶ୍ଚଳ ହୋଇ ରହିଛନ୍ତି ।

ଡିସେମ୍ବର ୬ ତାରିଖ ସକାଳେ ସେମାନେ ଗୋଟିଏ ଅତି ମଧୁର ଶବ୍ଦରେ ଉଠିପଡ଼ିଲେ । ଅର୍ଡାନ୍ ଆଗ ଉଠି ଉପର ଖୋପକୁ ଉଠିଯାଇ ଗୋଟାଏ ଜାଗାରେ ହାତ ବୁଲାଇ ବୁଲାଇ କହିଲେ, "ଆରେ, ଚୁପ୍ କର; ତୁ କଣ ମୋର ସବୁ ପ୍ଲାନ୍ ଭଣ୍ଡୁର କରି ଦେବୁ କି ?"

ନିକୋଲ୍ ଉଠିପଡ଼ି ପଚାରିଲେ, "ଗୋଟାଏ କୁକୁଡ଼ା ଡାକିଲା କି ?"

ଚଞ୍ଚଳ ଅର୍ଡାନ୍ କହିଲେ, "ନା, ନା, ତୁମ୍ଭଙ୍କୁ ଉଠାଇବା ପାଇଁ ମୁଁ ସେମିତି ଗୋଟାଏ ଶବ୍ଦ କରିଥିଲି ।"

ଏହା କହିଲେ ସେ ସେହିପରି ଗୋଟାଏ ଶବ୍ଦ କଲେ । ବାର୍ବିକେନ୍ ଓ ନିକୋଲ୍ ଏହା ଶୁଣି ହସି ହସି ଗଡ଼ିଗଲେ । ଏ କଥାକୁ ବୁଝିବା

ପାଇଁ ଅର୍ଡାନ୍ ଆଉ ଗୋଟାଏ କଥା ଆଣି ପକାଇଲେ । ସେ ବାର୍କିକେନ୍‌ଙ୍କୁ ପଚାରିଲେ, "କେମ୍ବ୍ରିଜ୍ ମାନମନ୍ଦିରର ବୈଜ୍ଞାନିକ ମାନେ ଯେଉଁ ହିସାବ ଦେଇଥିଲେ, ଯେଉଁ ହିସାବ ଉପରେ ନିର୍ଭର କରି ଏହି ଗୋଳା ଚାଲୁଛି, ସେ ହିସାବ ତୁମେ କରି ପାରୁଥାନ୍ତ ?" ବାର୍କିକେନ୍ କହିଲେ, "ଅନାୟାସରେ, ନିକୋଲ ଓ ମୋ ପକ୍ଷରେ ଏ ହିସାବ କିଛି ବଡ଼ ନୁହେଁ ।" ଏହା କହୁଁ କହୁଁ ସେ ଗୋଟାଏ କାଗଜରେ ଅନେକ ଅଙ୍କ କଷି ପକାଇଲେ । ନିକୋଲ୍ ତାହା ମନୋନିବେଶ ସହକାରେ ଦେଖି 'ଠିକ୍ ଠିକ୍' ବୋଲି କହୁଥିଲେ । ହିସାବ ଶେଷରେ ବାର୍କିକେନ୍ ଦେଖାଇ ଦେଲେ ଯେ ତାଙ୍କ ହିସାବ ମାନମନ୍ଦିରର ହିସାବ ସଙ୍ଗେ ଖାପ୍ ଖାଉଛି । ମାତ୍ର ସେ ବୈଜ୍ଞାନିକ ମାନେ ଏହି ହିସାବର ଭାର ନେଇଥିବାରୁ ବାର୍କିକେନ୍ ଏତେ କଷ୍ଟ ସ୍ୱୀକାର କରିବାକୁ ଚାହିଁଲେ ନାହିଁ । ଅର୍ଡାନ୍‌ଙ୍କର ହିସାବ ବିଷୟରେ ବହୁତ ପାଣ୍ଡିତ୍ୟ ଥିଲା । ସେ ସାମାନ୍ୟ ଗୋଟାଏ ମିଶାଣରେ ଘଣ୍ଟେ ଲାଗି ସୁଦ୍ଧା ଶେଷରେ ଠିକ୍ କରି ପାରନ୍ତି ନାହିଁ । ବାର୍କିକେନ୍‌ଙ୍କ ଏ ହିସାବ ଦେଖି ତାଙ୍କ ଆଖିରୁ ଜୁଳୁଜୁଳିଆ ପୋକ ମାଳ ମାଳ ବାହାରିଲେ ।

ନିକୋଲ୍ ସେ ହିସାବ ପରୀକ୍ଷା କରୁ କରୁ ସେଥିରୁ ଗୋଟିଏ ନୂଆ ତଥ୍ୟ ଆବିଷ୍କାର କଲେ । ସେ କହିଲେ, "ଗୋଳା ବାୟୁମଣ୍ଡଳ ଭେଦ କରି ଆସିଲାବେଳେ ଘାତ ପ୍ରତିଘାତ ଜନିତ ତାର ବେଗରେ ଯେଉଁ ହ୍ରାସ ହୋଇଅଛି, ତାହା ସେମାନେ ହିସାବରେ ଦେଖାଇ ନାହାନ୍ତି । ଆମେ ଗୋଳାର ହ୍ରାସ ବେଗରେ ଗତି କରୁଛୁଁ । ମୋ ମତରେ ଆମେ ଚନ୍ଦ୍ର ପର୍ଯ୍ୟନ୍ତ ଯାଇ ପାରିବା ନାହିଁ ।

ବାର୍ବିକେନ୍ ଏଥିରେ ବିସ୍ମିତ ହୋଇ ସେ ହିସାବକୁ ଅନ୍ୟଭାବରେ ପରୀକ୍ଷା କରି କହିଲେ, "ସେମାନେ ଗୋଳାର ମୌଳିକ ବେଗ ସେକେଣ୍ଡରେ ୧୨ ହଜାର ଗଜ ବୋଲି ଯାହା ମୋଟାମୋଟି ଠିକ କରି ଦେଇଛନ୍ତି, ସେଥିରେ ସେମାନେ ଅନେକ ଅପେକ୍ଷିତ ହିସାବ ଛାଡ଼ି ଦେଇଛନ୍ତି । ଗୋଳା ସମସ୍ଥାନରେ ପହଞ୍ଚିଲା ମାତ୍ରେ ତାର ବେଗ ଅନେକ ହ୍ରାସ ହୋଇଯିବ । ମାତ୍ର ସଙ୍ଗେ ସଙ୍ଗେ ଚନ୍ଦ୍ରର ଆକର୍ଷଣ ପ୍ରଭାବ ପଡ଼ିଲେ ତାହା ପୁଣି ବୃଦ୍ଧି ପାଇବ । ସଙ୍ଗେ ସଙ୍ଗେ କ୍ଷତିପୂରଣ ହୋଇଯିବ ।

ନିକୋଲ୍ "ତା ହେଲେ ମଧ୍ୟ ମୋର ମନେ ହେଉଛି, ଆମେ ଚନ୍ଦ୍ରରେ ନ ପଡ଼ି ପୁଣି ପୃଥିବୀକୁ ଫେରି ଆସିବା । ଆମେ ଅଧା ବାଟ ସୁଦ୍ଧା ଯାଇ ପାରିବା ନାହିଁ ।"

ସମସ୍ତେ ପରସ୍ପରକୁ ଚାହିଁ ବିସ୍ମିତ ହେଲେ । ସେମାନଙ୍କ ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗିଲା । ହିସାବକୁ ଯେତେଥର ଦେଖିଲେ, ସେତେଥର ନିର୍ଭୁଲ ଜଣା ପଡ଼ିଲା । ସେମାନେ ଅବାକ ହୋଇଗଲେ ଓ ଖାନା ଖାଇବା କଥା ଏକବାର ଭୁଲି ଗଲେ । ବାର୍ବିକେନ ଝଲା ବାଟେ ବାହାରକୁ ଚାହିଁଲେ ଏବଂ ନିକୋଲ ହିସାବ ଉପରେ ପୁଣି ଧ୍ୟାନ ଦେଲେ । ଆର୍ଡାନ୍ ଖାଲି ଅଭିଶାପ ରଶିମାନମଧର ପ୍ରତି ଡାଲବାଟର ଲାଗିଲେ । ପାଖରେ ଥିଲେ ସେ ମେମ୍ବରମାନଙ୍କୁ ପିସ୍ତଲ ଧରି ଶୁଆଇ ଦେଇ ଥାନ୍ତେ ।

ହଠାତ୍ ନିକୋଲଙ୍କ ମୁଣ୍ଡରେ ଗୋଟାଏ ଭାବ ଖେଳିଗଲା । ସେ କ୍ରନୋମିଟରରୁ ସମୟ ଦେଖି ହିସାବ କରି କହିଲେ, "ବର୍ତ୍ତମାନ ସକାଳ ସାତଟା । ଆମେ ରାସ୍ତାରେ ବତିଶ ଘଣ୍ଟା ଆସିଲୁଣି । ଏହା ଅର୍ଦ୍ଧପଥରୁ ଅଧିକ ନିଶ୍ଚୟ । କାହିଁ ତ ଆମେ ପଡ଼ିଯାଇ ନାହୁଁ ?"

ବାର୍ବିକେନ୍‌ଙ୍କ ମୁଣ୍ଡରେ ଏ କଥା ଠିକ୍ ଭଲ ଧରିଲା । ସେ ଗୋଟାଏ କମ୍ପାସ୍ ଧରି ପୃଥିବୀର ଦୂରତା ମାପିଲେ । ତା ପରେ ବସିପଡ଼ି ମୁଣ୍ଡରୁ ଝାଳ ପୋଛି କାଗଜରେ ହିସାବ କରିବାରେ ଲାଗିଲେ । ନିକୋଲ୍ ସେ ହିସାବକୁ ଅଭିନିବେଶ ସହକାରେ ଦେଖୁଥିଲେ । ଶେଷରେ ବାର୍ବିକେନ କହିଲେ, "ନା, ଆମେ କେବେହେଁ ପଡ଼ିଯାଉ ନାହୁଁ । ଆମେ ବର୍ତ୍ତମାନ ପୃଥିବୀଠାରୁ ଏକଲକ୍ଷ ପଚିଶ ହଜାର ମାଇଲ ଦୂରରେ । ଗୋଳା ତୋପରୁ ବାହାରିଲା ବେଳେ ୧୨ ହଜାର ଗଜ ହିସାବରେ ଥିଲେ ସେଇଁଠାରେ ଅଟକି ଯାଇଥାନ୍ତା । ବର୍ତ୍ତମାନ ସେଠାରୁ ବହୁତ ଦୂରକୁ ଚାଲି ଆସିଲଣି । ଆମେ ବରବର ଉଠୁଛୁ ।"

ନିକୋଲ୍ କହିଲେ, "ତାହା ଠିକ । ଆରମ୍ଭରେ ଗୋଳାର ବେଗ ୧୨ ହଜାର ଗଜରୁ ନିଶ୍ଚୟ ବେଶୀଥିଲା । ପୃଥିବୀଠାରୁ ୫୦୦୦ ମାଇଲ ଦୂରରେ ଘୂରୁଥିବା ଦ୍ୱିତୀୟ ଚନ୍ଦ୍ରକୁ ଆମେ କପରି ତେର ମିନିଟ ମଧ୍ୟରେ ଦେଖିଲେଁ, ତାହା ମୁଁ ବେଶ ଭାବି ପାରୁଛି ।"

ବାର୍ବିକେନ୍ କହିଲେ, "ସେ କଥା ଠିକ୍ । ଗୋଳା ଉଠିବା ସଙ୍ଗେ ସଙ୍ଗେ ପାଣିତକ ବାହାରି ଯିବାରୁ ଏହା ଅନେକ ପରିମାଣରେ ହାଲୁକା ହୋଇଗଲା । ଆଃ ! ନିକୋଲ୍ ! ଆମେ ରକ୍ଷା ପାଇ ଗଲେଇଁ ।"

ଆର୍ଡାନ୍ ହସି ହସି କହିଲେ, "ଯେବେ ରକ୍ଷା ପାଇ ଗଲେଇଁ, ଝଣ୍ଟେବ ପେଟକୁ ଅନ୍ନ ଖାଲି କରି ଲାଭ କଣ ? ଅଲେକ୍ଜେଣ୍ଡ୍ରା ହିସାବ ଦାଉରୁ ତ ରକ୍ଷା ମିଳିଗଲା ।"

ତା ପରେ ସେମାନେ ଅଯଥା ଭୟରୁ ରକ୍ଷାପାଇ ମନ ଖୁସିରେ ଖାଇ ବସିଲେ । ଏ ଖାନାରେ ତାଙ୍କର ଯେଉଁ ତୃପ୍ତି ମିଳିଲା, ତାହା ସେ ପୂର୍ବରୁ ଅନୁଭବ କରିନଥିଲେ । ଖାନାବେଳେ ସେମାନଙ୍କ ଭିତରେ ବହୁତ କଥା ଖୁସି ବାସିରେ ପଡ଼ିଲା । ଅର୍ଜାନ୍ କହିଲେ, "ଆମ ସାଙ୍ଗରେ ତାସ, ପଶା, ନ୍ୟାସ୍ବଲ ପାଇଁ ସବୁ ଅସିଛୁ । ଗୁଡ଼ାଏ ଶୁସ୍କ ଅଙ୍କରେ ନ ଲଗି ସେଥିରୁ କିଛି ବ୍ୟବହାର କଲେ ହୁଅନ୍ତା ନାହିଁକି ?

ବାର୍ଟିକନ୍ ପଚାରିଲେ, "ସେଥିରୁ ଗୁଡ଼ାଏ ତାହିଁକି ସାଙ୍ଗରେ ଆଣିଛ ?"

ଅର୍ଜାନ୍—"ଚନ୍ଦ୍ରଲୋକ ବାସୀଙ୍କି ଖୁସି କରିବାକୁ ।"

ବାର୍ଟିକନ୍—"ଚନ୍ଦ୍ରଲୋକ ବାସୀମାନେ କଣ ଏ ଖେଳ ଆଗରୁ ଜାଣି ନାହାନ୍ତି ? ଯେଉଁ ଚନ୍ଦ୍ର, ପୃଥିବୀଠାରୁ ବହୁ ଲକ୍ଷ ବର୍ଷ ପ୍ରାଚୀନ, ତାର ଅଧିବାସୀମାନେ କଣ ଆମ୍ଭ ପୃଥିବୀ ବାସୀଙ୍କଠାରୁ ବହୁ ଗୁଣରେ ଅଧିକ ଉନ୍ନତ ନୁହଁନ୍ତି ? ପ୍ରାଚୀନତା ହେତୁ ସେମାନଙ୍କ ଅଭିଜ୍ଞତା ନିଶ୍ଚୟ ବେଶି ହୋଇଥିବ । ସେମାନଙ୍କ ଭିତରେ ଅଧିକ ଉନ୍ନତ ଦାର୍ଶନିକ, ଜ୍ୟୋତିର୍ବିଦ, ବୈଜ୍ଞାନିକ, ଚିତ୍ରଶିଳ୍ପୀ, କବି ପ୍ରଭୃତି ଥିବେ । ସେମାନେ ଆମଠାରୁ କୌଣସି ଗୁଣରେ ନ୍ୟୂନ ନ ଥିବେ । ନିଶ୍ଚୟ ଖୁବ୍ ଉନ୍ନତ ଜୀବ ସେଠାରେ ଥିବେ । ଆମେ ସେମାନଙ୍କଠାରୁ ଶିଖିବା ପାଇଁ ଅନେକ ମାଲ ମସଲା ପାଇବା ।"

ଅର୍ଜାନ—"ତା' ହେଲେ ଆମେ ଯେପରି ତାଙ୍କ ଅଡ଼କୁ ଚୋଲ ଛୁଉଁଛୁ, ସେମାନେ ଆମ ଅଡ଼କୁ ସେହିପରି ଚୋଲ ଛୁଉଁ ନାହାନ୍ତି ?"

ନିକୋଲ୍—"ସେମାନଙ୍କ ପକ୍ଷରେ ଗୋଲ୍ଫ ଖେଳିବା ବେଶି ସହଜ। କାରଣ ସେମାନଙ୍କର ବାୟୁମଣ୍ଡଳ ଖୁବ ଲଘୁ; ଆକର୍ଷଣ ବେଗ ଛଅଗୁଣ କମ୍।"

ବାର୍ବିକେନ୍—"ସେମାନେ ଯେ ଏପରି ଗୋଲ୍ଫ ଖେଳୁ ନ ଥିବେ, ତାର ପ୍ରମାଣ କଣ? ପୃଥିବୀରେ ଜୀବ ସୃଷ୍ଟି ହେବାର ବହୁ ଲକ୍ଷ ବର୍ଷ ପୂର୍ବେ ଚନ୍ଦ୍ରରେ ଜୀବସୃଷ୍ଟି ହୋଇଥିଲା। ସେମାନେ ସେ ସମୟରେ ଗୋଲ୍ଫ ଖେଳୁଥିବେ। ପୃଥିବୀକୁ ଆସି ପର୍ଯ୍ୟବେକ୍ଷଣ କରିଯାଇଥିବେ।"

ଆର୍ଡାନ—"ସେ ଗୋଲ୍ଫଟା ତ ପୁଣି ଆସନ୍ତା।"

ବାର୍ବିକେନ—"ସେ ଗୋଲ୍ଫ କାଳକ୍ରମେ ଜଳସାତ୍ ହୋଇ ଯାଇଥିବ। ତୁମେ ତ ଜାଣ ଅଟ୍‌ଲାଣ୍ଟିସ୍ ମହାଦେଶ କାଳକ୍ରମେ ଅଟଲାଣ୍ଟିକ ସାଗରରେ ପରିଣତ ହୋଇଛି ଏବଂ ବିରାଟ ଜନସ୍ଥାନ-ବହୁଳ ମହାଦେଶମାନଙ୍କରେ ଆଜି ପ୍ରଶାନ୍ତ ମହାସାଗର ଲହରୀମାଳା ଖେଳାଉଛି। କିଏ କହିପାରେ, ସେ ସବୁ ଦେଶରେ ଗୋଲ୍ଫ ପଡ଼ି ନ ଥିବ?"

ଆର୍ଡାନ—"ଧନ୍ୟ ତୁମ୍ଭେମାନେ। ପ୍ରତ୍ୟେକ ପ୍ରଶ୍ନ ପାଇଁ ତୁମ୍ଭମାନଙ୍କର ଉତ୍ତରମାଳା ସଜିଲ୍ ହୋଇଅଛି। ତୁମ୍ଭ ଜ୍ଞାନକୁ ମୋର ପ୍ରଣାମ।"

ସେମାନଙ୍କର ଖାନାପିନା ଶେଷରେ ଡାଏନା ନାମକ କୁକୁରକୁ ଖାଇବାକୁ ଦିଆଗଲା। ସେ ଗୋଟାଏ ବେଶିଗିଲା ଚେହେରା ଗ୍ଲାସ ଖାନା ଖାଇ ପୁଣି ଯାଇ ଶାନ୍ତରେ ଶୋଇଲା। ତା'ପରେ ଆର୍ଡାନ ଅନ୍ୟ କୁକୁର ପ୍ରତି ଦୃଷ୍ଟି ଦେଲେ। ଓସ ମୁଣ୍ଡରେ ଗୁରୁତର ଅଘାତ

ପାଇଥିବାର ଅତଳରୁ ଲେଖାଅଛି । ସେ କେତେବେଳେ ମରିଯାଇଥିଲା, ତାହା ଏମାନେ ଜାଣିପାରି ନ ଥିଲେ । ଅର୍ଡ୍ଗାନ ତାର ମୃତଦେହ ପଦାକୁ କାଣିଅଣି ବହୁତ ଦୁଃଖିତ ହେଲେ ।

ମୃତ ଦେହକୁ ଅଉ ଅଧିକକାଳ ଏହା ଭିତରେ ରଖିଲେ ଭିତରର ବାୟୁ ନଷ୍ଟ ହୋଇଯିବ । ତେଣୁ ଝରକାର କାଚ ଖୋଲି ତାକୁ ପଦାକୁ ଫିଙ୍ଗିଦେବା ଦର୍କାର । ନିକୋଲ ସାହେବ ଏପରି ପ୍ରସ୍ତାବ କରିବାରୁ ବାର୍ବିକେନ ଅନେକ ସମୟ ଭାବି ଶେଷରେ ତହିଁରେ ଏକମତ ହେଲେ ଏବଂ କାଚକୁ ଖୋଲି ବନ୍ଦ କରିଦେବାକୁ ଯେପରି ମୁହୂର୍ତ୍ତେ ବିଳମ୍ବ ନ ହୁଏ, ସେଥିପାଇଁ ସାବଧାନ ହେବାକୁ କହିଲେ । ବିଳମ୍ବ ହେଲେ ବାହାରର ଥଣ୍ଡାହାୱା ଭିତରେ ପ୍ରବେଶ କରିଯିବ ଏବଂ ଭିତରର ଅମ୍ଳଜାନ ବାଷ୍ପକୁ ଦୂଷିତ କରିଦେବ । ସେ ଅଞ୍ଚଳର ଅମ୍ଳଜାନ ବାଷ୍ପ ଖୁବ ସୂକ୍ଷ୍ମ ଓ ମନୁଷ୍ୟର ବ୍ୟବହାର ପକ୍ଷେ ନିତାନ୍ତ ଅନୁପଯୁକ୍ତ । ସେ ବାଷ୍ପ ଭିତରେ ପଶିଲେ ଶ୍ୱାସ୍ ବାହାର କ୍ରିୟା ବନ୍ଦ ହୋଇଯିବ । ଯାତ୍ରୀମାନେ ନିଃଶ୍ୱାସରେ କଷ୍ଟ ଅନୁଭବ କରିବେ । ଦ୍ୱିତୀୟତଃ ବାହାର ଶୂନ୍ୟ ଯେଉଁ ପରିମାଣରେ ଥଣ୍ଡା, ତାହା ଗୋଟାଏ ହାଡ଼ର ରକ୍ତ ଜମାଟ କରି ତାକୁ ଧୂଳି କରି ଦେବାକୁ ଗୁର ସେକେଣ୍ଡରୁ ଅଧିକ ସମୟ ଲାଗିବ ନାହିଁ । ସୂର୍ଯ୍ୟ ଯେଉଁ ଉତ୍ତାପ ଦେଉଛି, ତାହା ଏ ବିରାଟ ଥଣ୍ଡାକୁ ଲେଶମାତ୍ର ଉତ୍ତପ୍ତ କରିପାରୁ ନାହିଁ । ଏ ଅଞ୍ଚଳରେ ପବନ ନାହିଁ, ଖାଲି ଶୂନ୍ୟ । ତହିଁରେ ସୂର୍ଯ୍ୟକିରଣ ସିଧା ପ୍ରବେଶ କରି ପାରେନାହିଁ । ତେଣୁ ସବୁଆଡ କେବଳ ଗୋଟାଏ ମଇଳା ଆଲୋକରେ ପୂର୍ଣ୍ଣ । ନୁହେଁ ଆଲୋକ, ନୁହେଁ ଅନ୍ଧାର, ତେଣୁ ଏପରି ଥଣ୍ଡା ମନୁଷ୍ୟ ପକ୍ଷରେ କଳ୍ପନା କରିବା ଅସମ୍ଭବ । ସୂର୍ଯ୍ୟ ଯଦି ପୃଥିବୀରୁ ଉଭେଇ ଯାଆନ୍ତେ,

ତେବେ ପୃଥିବୀରେ ଯେଉଁ ଥଣ୍ଡା ବ୍ୟାପି ଯାଆନ୍ତା, ବର୍ତ୍ତମାନ ଏ ଅଞ୍ଚଳରେ ପ୍ରାୟ ସେହି ଥଣ୍ଡା ।

ବାର୍ବିକେନଙ୍କର ଏପରି ହେତୁବାଦ ଅତି ଯୁକ୍ତିପୂର୍ଣ୍ଣ । ନିକୋଲ ତହିଁରେ ଏକମତ ହୋଇ କହିଲେ, "ଅବଶ୍ୟ ସୂର୍ଯ୍ୟ ଲିଭିଯିବା ଭୟ ଆମ୍ଭମାନଙ୍କର କେବେହେଁ ଘଟିବ ନାହିଁ ।"

ଅର୍ଡାନ—'କିଏ ନାହିଁ କହିବ ? ଧର, ସୂର୍ଯ୍ୟ ଲିଭିଯାଇ ନ ଗଲେ, ପୃଥିବୀ କୌଣସି କାରଣରୁ ସୂର୍ଯ୍ୟଠାରୁ ଅପସରି ଗଲେ ? ଦେଖ, ୧୮୬୧ ରେ ପୃଥିବୀ ଗୋଟିଏ ବିରାଟ ଧୂମକେତୁର ଲାଞ୍ଜରେ ପଡ଼ି ଯାଇଥିଲା । ଧର, ସେହିପରି ବା ସୂର୍ଯ୍ୟଠାରୁ ଅଧିକ କ୍ଷମତାବାନ ଗୋଟାଏ ଧୂମକେତୁ ଆସିଗଲା । ପୃଥିବୀ ତା ଆକର୍ଷଣରେ ପଡ଼ି ସହିତ ତାର ଗୋଟାଏ ଉପଗ୍ରହ ପାଲଟି ଯିବ, ତେବେ ସେ ତ ଆଉ ସୌରଜଗତ ମଧ୍ୟରେ ରହି ପାରିବ ନାହିଁ କିମ୍ବା ସୂର୍ଯ୍ୟର ଆଲୋକ ପାଇ ପାରିବ ନାହିଁ । ସୂର୍ଯ୍ୟଠାରୁ ଅସୀମ ଦୂରକୁ ଚାଲିଗଲେ ତାର ପ୍ରଭାବ ଆଉ କ'ଣ ରହିବ ?"

ବାର୍ବିକେନ—"ଏପରି ଅବଶ୍ୟ ଘଟିପାରେ; କିନ୍ତୁ ତୁମେ ଯେପରି ସନ୍ଦେହ କରୁଛ, ସେପରି ଫଳ କେବେହେଁ ଘଟି ଯାଇବ ନାହିଁ ।"

"କିପରି ?"

"ତା ହେଲେ ମଧ୍ୟ ଆମ ଭୂମଣ୍ଡଳରେ ଶୀତ ଓ ଉତ୍ତାପ ସମପରିମାଣରେ ରହିବ । ଏପରି ହିସାବ କରାଯାଇଛି ଯେ, ୧୮୬୧ରେ ଧୂମକେତୁ ସହିତ ପୃଥିବୀକୁ ଅସୀମ ଦୂରକୁ ଟାଣି ନେଇଥାନ୍ତା, ତେବେ

ଆମେ ଚନ୍ଦ୍ରକିରଣରୁ ପାଉଥିବା ଉତ୍ତାପର ଷୋଳଗୁଣ ଅଧିକ ଉତ୍ତାପ ତହିଁରୁ ପାଆନ୍ତି । ଅଙ୍କେଶମାନେ ବିଶେଷ ପାର୍ଥକ୍ୟ ଅନୁଭବ କରି ପାରନ୍ତି ନାହିଁ ।”

“ସତେ ?”

“ହଁ, ମୁଁ ଅନ୍ୟ ପ୍ରକାରେ ବୁଝାଇ ଦେଉଛି, । ପୃଥିବୀ ନିଜର ଭ୍ରମଣ ପଥରେ ଯେତେବେଳେ ସୂର୍ଯ୍ୟର ଅତି ନିକଟବର୍ତ୍ତୀ ହୁଏ, ସେତେବେଳେ ଗ୍ରୀଷ୍ମକାଳୀନ ଉତ୍ତାପର ୨୮ ହଜାର ଗୁଣ ଅଧିକ ଉତ୍ତାପ ସଂଗ୍ରହ କରେ । ଏହି ଭୀଷଣ ଉତ୍ତାପ ପଡ଼ୁଥିଲେ ମାତ୍ରକେ ପାର୍ଥିବ ବସ୍ତୁ ସବୁ କାଟପରି ଉତ୍ତପ୍ତ ହୋଇଯାଏ, ଜଳ ଶୁଖି ବାଷ୍ପରେ ପରିଣତ ହୁଏ । ସେ ବାଷ୍ପ ଏତେ ଘନ ଆବରଣରେ ପୃଥିବୀକୁ ଢାଙ୍କି ପକାଏ ଯେ ସୂର୍ଯ୍ୟ କିରଣ ତହିଁରେ ପ୍ରତିହତ ହୁଏ । ପୃଥିବୀ ଥଣ୍ଡା ହୋଇଯାଇ ଶୀତ ଉଷ୍ଣ ଅବସ୍ଥା ସମପରିମାଣରେ ଉପଭୋଗ କରେ ।”

“ଗ୍ରହମାନଙ୍କ ବ୍ୟବଧାନ ବା ଶୂନ୍ୟମଣ୍ଡଳରେ ସାଧାରଣତଃ କେତେ ଉତ୍ତାପ ଅଛି ବୋଲି ସ୍ଥିର ହୋଇଅଛି ?”

“ପୂର୍ବେ ଲୋକେ ବିଶ୍ୱାସ କରୁଥିଲେ ଯେ, ଏ ଉତ୍ତାପ ଅତି କ୍ଷୀଣ । ତାପମାନ ଯନ୍ତ୍ରରେ ପରୀକ୍ଷା କରି ଦେଖାଗଲା ଯେ, ଏ ଉତ୍ତାପ ଶୂନ୍ୟବିନ୍ଦୁରୁ ଲକ୍ଷ ଲକ୍ଷ ଗୁଣ କମ । ମାତ୍ର ଏବେ ବହୁପରୀକ୍ଷାପରେ ପଣ୍ଡିତେ ଅଭ୍ରାନ୍ତ ନିଷ୍ପତ୍ତି ହୋଇଅଛି ଯେ ଏ ସବୁ ସ୍ଥାନରେ ଉତ୍ତାପର ପରିମାଣ ଶତାଂଶର ୭୦ ଡିଗ୍ରୀ । ଏହା ମେରୁ ପ୍ରଦେଶର ଉତ୍ତାପ ସଙ୍ଗେ ସମାନ ।”

ନିକୋଲ୍ ଯେତେବେଳେ ବାହାର ଉତ୍ତାପ ପରୀକ୍ଷା କରିବାକୁ ପ୍ରବୃତ୍ତ ହେବାରୁ ବାର୍ବିକେନ୍ ତାଙ୍କୁ ବାରଣ କରି କହିଲେ, “ଏଠାରେ

ଗୋଲ ସୂର୍ଯ୍ୟ ଉତ୍ତାପରେ ଅଧିକ ଗରମ ହୋଇ ଯାଉଛି, ତେଣୁ ଏଠାରେ ଠିକ୍ ମାପ ମିଳିବ ନାହିଁ । ଆମେ ଚନ୍ଦ୍ରରେ ପହଞ୍ଚିଲେ ମାତ୍ରକେ ଏ ଉତ୍ତାପ ସହଜରେ ମାପି ପାରିବା । କାରଣ ଚନ୍ଦ୍ରର ବହୁତ ଅଂଶ ପନ୍ଦର ଦିନରୁ ଅଧିକ ସୂର୍ଯ୍ୟାଲୋକ ପାଇପାରେ ନାହିଁ । ସେ ସ୍ଥାନର ଉତ୍ତାପ ମାପିଲେ ଠିକ୍ ହିସାବ ମିଳିବ । ଆମେ ବର୍ତ୍ତମାନ ଶୂନ୍ୟରେ ଉଡୁଛୁ ।"

ଅର୍ଜ୍ଜୁନ—"ଶୂନ୍ୟ କାହିଁକି କହୁଛ ? ଏହାର ଅର୍ଥ କଣ ?"

ବାର୍ତ୍ତିକେନ—"ଶୂନ୍ୟର ଅର୍ଥ ବାୟୁଶୂନ୍ୟ ପ୍ରଦେଶ ।"

ଅର୍ଜ୍ଜୁନ୍—"ବାୟୁ ପରିବର୍ତ୍ତେ ଆଉ କଣ କିଛି ଏଥିରେ ନାହିଁ ?"

ବାର୍ତ୍ତିକେନ—"ଅଛି, ଇଥର ।"

ଅର୍ଜ୍ଜୁନ—"ଇଥର୍ କଅଣ ?"

ବାର୍ତ୍ତିକେନ—"ଇଥର୍ ହେଉଛି ଅସଂଖ୍ୟ କ୍ଷୁଦ୍ର ପରମାଣୁ-ମାନଙ୍କର ସମଷ୍ଟି । ଏ ପରମାଣୁ ସବୁ ପରସ୍ପରଠାରୁ ଅଭିନ୍ନ ହେଲେ ହେଁ ଆକାର ବିବେଚନାରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ବସ୍ତୁ । ଗ୍ରହମାନଙ୍କର ପରସ୍ପର ସଙ୍ଗେ ସୌର ଦୂରତ୍ୱ ଥିଲେହେଁ ପ୍ରତ୍ୟେକେ ଯେପରି ପରସ୍ପରଠାରୁ ବିଭିନ୍ନ; ଏମାନେ ସେହିପରି । ଏମାନେ ମଧ୍ୟ ସୃଷ୍ଟି ପ୍ରକ୍ରିୟାରେ ଗୋଟିଏ ଗୋଟିଏ ଅଙ୍ଗ ହୋଇ ସ୍ଥିର ହୋଇ ଅଛନ୍ତି । ଏହି ପରମାଣୁମାନେ ସତତ କମ୍ପନଶୀଳ ଓ ସତତ ପରସ୍ପର ସଙ୍ଗେ ବାଜିବା ଫଳରେ ଆଲୋକ ଓ ଉତ୍ତାପ ଚହିଁରୁ ଜାତ ହୁଏ । ଏପରି ଘାତପ୍ରତିଘାତ ଫଳରେ ସେମାନଙ୍କ ମଧ୍ୟରେ ପ୍ରତି ସେକେଣ୍ଡରେ ଛଅବଶହ ନବଶ ଲକ୍ଷ କୋଟିବାର କମ୍ପନ ହୁଏ ।"

ଅର୍ଡାନ—"ସ୍ପନ୍ଦନର ଭରଣ ଲକ୍ଷ କୋଟି ଥର ? ବୈଜ୍ଞାନିକମାନେ ଏ କମ୍ପନକୁ ହିସାବ କରି ପାରିଛନ୍ତି ? ବନ୍ଧୁ ବାର୍ବିକେନ୍ ! ବୈଜ୍ଞାନିକମାନଙ୍କର ଏ ହିସାବ କାନ ଭିତରକୁ ଯାଇ ପାରୁଛି, ମାତ୍ର ମନ ଭିତରକୁ ଯାଇପାରୁ ନାହିଁ ।"

ବାର୍ବିକେନ୍—"ସେମାନଙ୍କର ତ ପୁଣି ଗୋଟାଏ ହିସାବ ରହିବା ଉଚିତ ?"

ଏହାପରେ ସେମାନେ ମଲ୍ଲ କୁକୁରକୁ ବାହାରକୁ ଫିଙ୍ଗିବାର ଆୟୋଜନ କଲେ । ଅର୍ଡାନ କୁକୁରକୁ ଧରି ଡାହାଣ ପଟ ଝରକା ପାଖରେ ଠିଆ ହୋଇ ରହିଲେ । ନିକୋଲ୍ ଖୁବ୍ କୌଶଳରେ ଅତି ସାବଧାନରେ କାଚ କବାଟକୁ ଅଧା ଖୋଲି ଦେବା ସଙ୍ଗେ ସଙ୍ଗେ ଅର୍ଡାନ କୁକୁରକୁ ବାହାରକୁ ଫିଙ୍ଗିଦେଲେ । ନିକୋଲ୍ ପଲକ ମାତ୍ରକେ କାଚ କବାଟ ବନ୍ଦ କରି ଦେଇ ପେଚ ସବୁ ଶକ୍ତ କରି ଅଣ୍ଟି ଦେଲେ । ତେଣୁ ଭିତର ପବନ ବାହାରକୁ ଚାଲିଯିବାର କୌଣସି ଭୟ ରହିଲା ନାହିଁ ।

---

—ପାଞ୍ଚ—

## ନାନାଦି ପ୍ରଶ୍ନୋତ୍ତର

ପାର୍ଥିବ ହିସାବ ଅନୁସାରେ ତା ୪ ଡିସେମ୍ବର ସକାଳ ପାଞ୍ଚଟା ବେଳେ ସେମାନେ ବିଛଣା ଛାଡ଼ିଲେ । ସେମାନଙ୍କ ଯାତ୍ରାପାଇଁ ମୋଟ ସମୟ ଧାର୍ଯ୍ୟ ହୋଇଥିଲା, ସେଥିରୁ ୫୪ ଘଣ୍ଟା ସେମାନେ ଅତିକ୍ରମ କଲେ । ଏହା ମୋଟ ସମୟର ଅର୍ଦ୍ଧାଂଶରୁ ପାଞ୍ଚ ଘଣ୍ଟା

ଷୋଳଶ ମିନଟ୍ ଅଧିକ । ସେମାନେ ଏହି ସମୟ ଭିତରେ ଦୂରତାର ଦଶ ଭାଗରୁ ସାତଭାଗ ଅତିକ୍ରମ କରିଥିଲେ । ଏ ବିଶେଷତ୍ୱ ଗୋଲା ଗତିର କ୍ରମହ୍ରାସ ଯୋଗୁଁ ଘଟିଥିଲା ।

ସେମାନେ ଜଳକବାଟୀ ଖୋଲି ସେତେବେଳେ ପୃଥିବୀ ଆଡ଼କୁ ଚାହିଁଲେ, ସେତେବେଳେ ତାହା ଗୋଟିଏ କୃଷ୍ଣ ବିନ୍ଦୁ ରୂପେ ଦେଖା-ଯାଇ ସୂର୍ଯ୍ୟଙ୍କ କିରଣ ସମୁଦ୍ରରେ ବୁଡ଼ିଯାଇ ଥିଲା । ତାର ଯେଉଁ ଅଲୋ-କିତ ବଳୟ ଆଗରୁ ଦେଖାଯାଉଥିଲା, ତାହା ଆଉ ଦେଖାଗଲା ନାହିଁ । ପରଦିନ ଅର୍ଦ୍ଧ ରାତ୍ରରେ ସେତେବେଳେ ଚନ୍ଦ୍ର ପୂର୍ଣ୍ଣ ହୋଇଯିବ, ସେତେବେଳେ ପୃଥିବୀ ଅମାନ୍ଧକାରରେ ବୁଡିଯିବ । ଗୋଲା ଆକାଶର ଯେଉଁ ସ୍ଥାନରେ ଯେଉଁ ସମୟରେ ଚନ୍ଦ୍ରକୁ ଭେଟିବ, ଚନ୍ଦ୍ର ଠିକ ସେହି ସ୍ଥାନକୁ ଅଗ୍ରସର ହେଉଥିଲେ । କୃଷ୍ଣବର୍ଣ୍ଣ ଆକାଶ ମଣ୍ଡଳରେ ତାରାମାନେ ଚକ୍ ଚକ ହୋଇ ମନ୍ଥର ଗତି କରୁଥିବାର ଜଣା ଯାଉଥିଲେ, କିନ୍ତୁ ଅଧିକ ଦୂରରେ ଥିବାରୁ ସେମାନଙ୍କ ଆକୃତିରେ କୌଣସି ପରି-ବର୍ତ୍ତନ ଦେଖାଯାଉ ନଥିଲା । ପୃଥିବୀରୁ ସୂର୍ଯ୍ୟ ତାରାମାନେ ଯେତିକି ଦେଖାଯାନ୍ତି, ଗୋଲାରୁ ସେମାନେ ସେତିକି ଦେଖାଯାଉ ଥିଲେ । ମାତ୍ର ଚନ୍ଦ୍ର କ୍ରମେ କ୍ରମେ ବୃହତ୍ ଆକାରରେ ଦେଖାଯାଉଥିଲେ । ଏମାନଙ୍କ ନିକଟରେ ଶକ୍ତିଶାଳୀ ଦୂରବୀକ୍ଷଣ ନ ଥିବାରୁ ଏମାନେ ଚନ୍ଦ୍ରର ଉପରି ଭାଗର କୌଣସି ବସ୍ତୁ ଦେଖି ପାରୁ ନ ଥିଲେ ।

ସେମାନେ ନାନାବିଧ ଆଲୋଚନାରେ ସମୟ ଅତିବାହିତ କରୁ-ଥିଲେ ବିଶେଷ ଆଲୋଚନା ଚନ୍ଦ୍ରକୁ ନେଇ । ସେମାନେ ନିଜ ନିଜ ଜ୍ଞାନ ଭଣ୍ଡାରରୁ ଅନେକ ମୂଲ୍ୟବାନ ରତ୍ନ ବାହାର କରୁଥିଲେ । ବାର୍ବିକେନ ଓ ନିକୋଲ ପ୍ରତ୍ୟେକ କଥାର ଗୁରୁତ୍ୱ ଉପରେ ମନୋନିବେଶ କରୁଥିଲେ । ଆର୍ଡାନ କଳ୍ପନା ରାଜ୍ୟରେ ବହୁତ ଅଗ୍ରସର ହେଉ

ଥିଲେ । ଗୋଳା, ତାର ଅବସ୍ଥାନ, ତାର ବେଗ, କି ଦୁର୍ଘଟଣା ଘଟିପାରେ; ଚନ୍ଦ୍ର ଦେଶରେ ପହଞ୍ଚିବେଳେ କି କି ଉପାୟ କରାଯିବା ଉଚିତ, ଏ ସବୁ ଆଲୋଚନାର ବହୁଳ ବିଷୟ ଥିଲା ।

ଏ ସମୟରେ ଅର୍ଡାନ୍ ଗୋଟିଏ କୌତୁକ ପ୍ରଶ୍ନ କଲେ ଯେ, ଗୋଳା ଯେବେ ବାଟରେ ବନ୍ଦ ହୋଇ ଯାଆନ୍ତା, ତେବେ କି ଅବସ୍ଥା ଘଟନ୍ତା ? ଗୋଳାକୁ ଯେତେବେଳେ ଅସୀମ ବେଗ ଦିଆ ଯାଇଥିଲା, ତାର ବନ୍ଦ ହୋଇ ଯିବାର କୌଣସି କାରଣ ନଥିଲା ।" ତେବେ ଦ୍ୱିତୀୟ ଚନ୍ଦ୍ର ପରି ଗୋଟାଏ ଶକ୍ତି ଆକସ୍ମିକ ଭାବରେ ଆଗରେ ପଡ଼ିଗଲେ ଗୋଳା ତା ଉପରେ ପିଟି ହୋଇ ଅଚଳ ହୋଇ ଯିବାର କଥା । ମାତ୍ର ଅଚଳ ହୋଇଯିବା ସଙ୍ଗେ ସଙ୍ଗେ ତାର ଅଙ୍ଗ ସ୍ୱରୂପ ରହିବ ନାହିଁ । ତାହା ହଠାତ୍ ପୋଡ଼ି ଯାଇ ବାଷ୍ପରେ ପରିଣତ ହୋଇଯିବ । ଉଦାହରଣ ସ୍ୱରୂପ, ଗୋଟାଏ ଚଳନ୍ତା ରେଳଗାଡ଼ିର ଗତି ହଠାତ୍ ବନ୍ଦ କରି ଦେଲେ, ଡବାରୁ ନିଆଁ ବାହାରି ତାର ସବୁ ପୋଡ଼ି ଦିଅନ୍ତା । ସେଥିପାଇଁ ରେଳମାନଙ୍କରେ ବହୁଳ ଅବାନ୍ତର ଷ୍ଟୀଲ୍ ଦିଆ ଯାଇଥାଏ ।

ଅର୍ଡାନ୍ ଏହା ଶୁଣି କହିଲେ, "ଠିକ୍ କଥା । ମୁଁ ଯେବେ ଖୁବ୍ ଜୋରରେ ଧାଇଁ ଥାଏଁ ଓ ହଠାତ୍ ବନ୍ଦ ହୋଇ ଯାଏଁ, ମୋ ଦେହରୁ ବହୁତ ଝାଳ ବାହାରେ । ତା ନ ହେଲେ ମୁଁ ତ ବାଷ୍ପରେ ପରିଣତ ହୋଇ ଯାଉଥାନ୍ତି ?"

ବାର୍ବିକେନ୍ ଏ ଯୁକ୍ତି ଶୁଣି ଟିକିଏ ହସି ଦେଇ କହିଲେ; ଠିକ୍ ଉଦାହରଣ ଦେଲ ।"

ନିକୋଲ ପଚାରିଲେ, "ପୃଥିବୀର ଗତି ଯେବେ କୌଣସି କାରଣରୁ ବନ୍ଦ ହୋଇ ଯାଆନ୍ତା, ତେବେ ତାର କି ଦଶା ହୁଅନ୍ତା ?"

ବାର୍ବିକେନ୍—"ତାର ଉତ୍ତାପ ଏତେ ପରିମାଣରେ ବଢ଼ିଯାନ୍ତା ଯେ ସେ ଗୋଟାଏ ବାଷ୍ପରେ ପରିଣତ ହୁଅନ୍ତା ।"

ନିକୋଲ—"ଅଚ୍ଛା ପୃଥିବୀ ଯେବେ ସୂର୍ଯ୍ୟ ଦେହରେ ଯାଇ ପଡ଼ନ୍ତା, ତେବେ କଣ ହୁଅନ୍ତା ?"

ବାର୍ବିକେନ୍—"ଏପରି ହିସାବ ହୋଇଅଛି ଯେ ପୃଥିବୀର ଓଜନ ସଙ୍ଗେ ସମାନ ଓଜନର କୋଇଲାରେ ନିଆଁ ହେଲେ ତହିଁରୁ ଯେତେ ଉତ୍ତାପ ବାହାରିବ, ସୂର୍ଯ୍ୟରେ ପଡିଲା ମାତ୍ରକେ ସେତିକି ଉତ୍ତାପ ଜାତ ହେବ । ତାହା ପୃଥିବୀକୁ ବାଷ୍ପରେ ପରିଣତ କରିଦେବା ପାଇଁ ଯଥେଷ୍ଟ । ତେଣୁ ଯେ କୌଣସି ଗତିର ବେଗ ବନ୍ଦ ହୋଇଗଲେ ତହିଁରୁ ଉତ୍ତାପ ବାହାରେ । ଏଥିରୁ ଏପରି ଅନୁମାନ କରାଯାଉଛି ଯେ, ସୂର୍ଯ୍ୟ ଦେହରେ ପ୍ରତି ମୁହୂର୍ତ୍ତରେ ଅସଂଖ୍ୟ ଗ୍ରହପିଣ୍ଡ ଆସି ପଡ଼ୁଯାଇ ବାଷ୍ପୀଭୂତ ହୋଇ ଯାଉଛନ୍ତି । ସୂର୍ଯ୍ୟ ସେ ସମସ୍ତ ଉତ୍ତାପ ସଂଗ୍ରହ କରୁଛି । ହିସାବରୁ ଦେଖା ଯାଉଛି ଯେ, ଗୋଟିଏ ପିଣ୍ଡର ପତନରେ ତା ପରିମାଣର ଷୁବିହଜାର ଗୁଣ ଉତ୍ତାପ ଜାତ ହୁଏ ।

"ସୂର୍ଯ୍ୟର ଉତ୍ତାପ କେତେ ?"

"ସୂର୍ଯ୍ୟର ଷ୍ଟର ଉପରେ ସତର ମାଇଲ ବହଳରେ କୋଇଲା ଜମା କରି ତାକୁ ନିଆଁ କଲେ ଯେତେ ଉତ୍ତାପ ବାହାରିବ, ସୂର୍ଯ୍ୟର ମୌଳିକ ଉତ୍ତାପ ସେତିକି ।"

"ଏତେ ବଡ଼ ଉତ୍ତାପରେ ଅମ୍ଭେମାନେ ଦଗ୍ଧ ହୋଇ ଯାଉ ନାହୁଁ କାହିଁକି ?"

"ତାହା ହୋଇ ପାରେନା । ଯେଉଁ ବିଧାତାଙ୍କ ଅମୋଘ କରୁଣା ଏତେବଡ଼ ଉତ୍ତାପକୁ ବ୍ୟୋମରେ ଝୁଲାଇ ଦେଇଛନ୍ତି, ତାହା ପୁଣି ତାର ସଂହାର ପାଇଁ ଉପାୟ ଖଞ୍ଜି ଦେଇଛନ୍ତି । ପୃଥିବୀ ଗ୍ରହପୃଷ୍ଠର ବାୟୁମଣ୍ଡଳ ପୃଥିବୀ ଉପରେ ପଡ଼ୁଥିବା ଉତ୍ତାପର ଦଶଭାଗରୁ ଚାରିଭାଗ ଶୋଷଣ କରିଯାଏ । ବାକି ଛଅଭାଗରୁ ପାଞ୍ଚଭାଗ ଅଧେ ପୃଥିବୀର ଘୂର୍ଣ୍ଣନ ଫଳରେ ପ୍ରତିହତ ହୁଏ । ବାକି ଅଧେ ଯାହା ପୃଥିବୀ କୁ ଆସେ ତାର ଅର୍ଦ୍ଧାଧିକ ଭାଗ ସମୁଦ୍ର ଶୋଷି ନିଏ । ଆମ ପାଇଁ ଆଉ କେତେ ରହିଲା ଯେ ଆମେ ଦଗ୍ଧ ହୋଇ ଯିବା ? ବରଂ ସେ ଠିକ ଆମ ଜୀବନ ରକ୍ଷା ପାଇଁ ବଡ଼ ଆବଶ୍ୟକ । ସୃଷ୍ଟିର କୌଣସି ବସ୍ତୁ ଅପର ବସ୍ତୁର ଧ୍ୱଂସ ପାଇଁ ନୁହେଁ, ଗୋଟିଏ ନୂତନ ସୃଷ୍ଟିପାଇଁ ତାହା ଅଭି- ପ୍ରେତ ।"

"ତା ହେଲେ ପବନ ଆମକୁ କେବଳ ନିଶ୍ୱାସ ଯୋଗାଏ ନାହିଁ, ସୂର୍ଯ୍ୟର ବିରାଟ ଉତ୍ତାପରେ ଦଗ୍ଧ ହେବାରୁ ରକ୍ଷା କରେ ? ଅଚ୍ଛା, ବାର୍ବିକେନ୍ ! ତୁମେ କଣ ବିଶ୍ୱାସ କର, ଚନ୍ଦ୍ର ଗୋଟାଏ ପ୍ରାଚୀନ ଧୂମକେତୁ ?"

"ମୁଁ ଜାଣିନି କି, ବହୁ ଲୋକ ଏକଥା କହନ୍ତି । ଅତି ପ୍ରାଚୀନ ଜାତି ଅର୍କେଡ଼ିଅନ୍ ମାନେ ମତ ଦିଅନ୍ତି ଯେ ତାଙ୍କର ପୂର୍ବ ବଂଶଧର-ମାନେ ପୃଥିବୀରେ ଥିଲା ବେଳେ ଚନ୍ଦ୍ର ପୃଥିବୀର ଉପଗ୍ରହ ହୋଇ ନ ଥିଲା । ଏହି କଥା ଉପରେ ନିର୍ଭର କରି କେତେକ ପଣ୍ଡିତ ମତ ଦିଅନ୍ତି ଯେ ଚନ୍ଦ୍ର ଅତି ପ୍ରାଚୀନ କାଳରେ ଗୋଟାଏ ଧୂମକେତୁ ଥିଲା । ତାହା ପୃଥିବୀର ଆକର୍ଷଣ ସୀମାର ଅତି ନିକଟକୁ ଆସିଯିବାରୁ ଆଉ ସେ ଆକର୍ଷଣକୁ ଟପିଯାଇ ପାରିଲା ନାହିଁ ।

"ଏ ଅନୁମାନର କୌଣସି ସତ୍ୟତା ଅଛି ?"

"ଆଦୌ ନାହିଁ । ତା ହେଲେ ଚନ୍ଦ୍ରର ଗୋଟାଏ ଜ୍ୟୋତିର୍ମୟ ଲାଞ୍ଜ ଥାଆନ୍ତା ।"

ନିକୋଲ୍—"ଏପରି କଣ ହୋଇପାରେ ନା ଯେ, ସେହି ଧୂମକେତୁ ସୂର୍ଯ୍ୟର ଖୁବ ନିକଟବର୍ତ୍ତୀ ହୋଇଯିବାରୁ ତାର ଉତ୍ତାପ ଫଳରେ ଧୂମକେତୁ ଦେହରୁ ଉଠୁଥିବା ଅଲୋକମୟ ଗ୍ୟାସ୍ ବାଷ୍ପୀଭୂତ ହୋଇ ଉଡ଼ିଯାଇଛି ?"

"ଏପରି ହୋଇପାରେ । ମାତ୍ର ତାହା ସମ୍ଭବ ନୁହେଁ ।"

ଏହାପରେ ଅର୍ଡାନ୍ ଉପରେ ଥାଇକରି ଝରିକାରେ ଚନ୍ଦ୍ରକୁ ଦେଖିବାରେ ଲାଗିଲେ । ସେତେବେଳେ ସମୟ ୩ଟା । ନିକୋଲ୍ ଓ ବାର୍ବିକେନ ଅନ୍ୟ ଝରକାମାନଙ୍କରେ ଶୂନ୍ୟ ମଣ୍ଡଳକୁ ଲକ୍ଷ୍ୟ କଲେ । ତହିଁରେ କିଛି ନୂତନତ୍ୱ ପାଇଲେ ନାହିଁ । ଅର୍ଡାନ୍ ଉପରେ ଥାଇକରି ଓହ୍ଲାଇ ଆସି ପାର୍ଶ୍ୱ ଝରକା ଦେଖିବାରେ ଲାଗିଲେ । ହଠାତ୍ ତାଙ୍କ ଦୃଷ୍ଟି ଗୋଟାଏ ପଦାର୍ଥ ଉପରେ ପଡ଼ିଲା । "ଏଇଟା ତାହାହେଲେ କଣ" ବୋଲି ସେ ଚିତ୍କାର କଲେ । ବାର୍ବିକେନ୍ ତାଙ୍କ ନିକଟକୁ ଯାଇ ଦେଖିଲେ, ଗୋଟାଏ ମୋଟା ଜିନିଷ ତାଙ୍କ ଗୋଲଠାରୁ କେତେ ଗଜ ଦୂରରେ ଭାସୁଛି । ଗୋଲପରି ତାହା ନିଶ୍ଚଳ ବୋଧହେଲା । ମାତ୍ର ବାସ୍ତବରେ ତାହା ନିଶ୍ଚଳ ନଥିଲା । ଗୋଲ ଯେତେ ଜୋରରେ ଶୂନ୍ୟରେ ଭାସି ଯାଉଥିଲା, ସେ ପଦାର୍ଥ ସେତିକି ଜୋରରେ ତା ସଙ୍ଗେ ଭାସୁଥିଲା । ତାହା ଗୋଲର ଆକର୍ଷଣ ସୀମା ଭିତରେ ଥିଲା ।

ବହୁତ ପର୍ଯ୍ୟବେକ୍ଷଣ କରି ଶେଷରେ ସେମାନେ ସ୍ଥିର କଲେ, ସେଇଟା ତାଙ୍କ ମୃତ କୁକୁରର ଦେହ । ବାହାରର ଭୀଷଣ ଥଣ୍ଡାରେ ତାର ଅକୃତ ବିକୃତ ହୋଇ ଯାଇଥିଲା । କୁକୁର ଦେହର ସତ୍ତା ତାଠାରେ ନଥିଲା । ତାହା ଗୋଟାଏ କିଂଭୂତ କିମାକାର ପଦାର୍ଥରେ ପରିଣତ ହୋଇ ଗୋଲା ସଙ୍ଗେ ସଙ୍ଗେ ଉଡୁଥିଲା ।

---

## —ଛଅ—

## ସମସ୍ତେ ଅଜ୍ଞାନ

କୁକୁର ଦେହର ଏ ଗତିରୁ ସେମାନେ ସ୍ଥିର କଲେ ଯେ, ଏହିପରି ଯେତେ ଜିନିଷ ଗୋଲା ଭିତରୁ ବାହାରକୁ ଫିଙ୍ଗାହେବ, ତାହା ସବୁ ସେହିପରି ଗୋଲା ସଙ୍ଗେ ସଙ୍ଗେ ଗୁଳିବ ଏବଂ ଗୋଲା ବନ୍ଦ ହେଲେ ତାହା ବନ୍ଦହେବ । ଏହି ଆଲୋଚନାରେ ସମସ୍ତ ସନ୍ଧ୍ୟା ଅତିବାହିତ ହେଲା । କୌଣସି ଗୋଟାଏ ଅକସ୍ମିକ ଘଟଣାରେ ସେମାନେ ବିଚଳିତ ହେବାପରି ଲକ୍ଷଣ ସେମାନଙ୍କଠାରେ ଦେଖାଯାଉ ନଥିଲା । ଏଣେ ଗୋଲାର ଗତି ଅଳ୍ପେ ଅଳ୍ପେ କମି ଆସୁଥିଲେ ହେଁ ସେମାନେ ତାହା ଅନୁଭବ କରି ପାରିନଥିଲେ । ମାତ୍ର ଚନ୍ଦ୍ର କମେ ଖୁବ୍ ବଡ଼ହୋଇ ଉଠୁଥିଲା । ଏମାନେ ହାତ ବଢ଼ାଇଲେ ତାକୁ ଧରି ପକେଇବେ ବୋଲି ଭାବୁଥିଲେ ।

ପରଦିନ ଭୋର ପାଞ୍ଚଟା ବେଳେ ସେମାନେ ନିଦରୁ ଉଠି ପଡ଼ିଲେ । ଗଣନା ଠିକ ଥିଲେ ଏହି ଦିନ ସେମାନେ ଲକ୍ଷ୍ୟ ସ୍ଥାନରେ ପହଞ୍ଚିବାର କଥା । ସେହି ମଧ୍ୟ ରାତ୍ରିରେ ସେମାନେ ପୂର୍ଣ୍ଣ ଚନ୍ଦ୍ର-

ମଣ୍ଡଳରେ ପହଞ୍ଚି ସେମାନଙ୍କର ଐତିହାସିକ ଅଭିଯାନ ଶେଷ କରିବେ । ଚନ୍ଦ୍ରର ରଜତ ଧବଳ କିରଣ ଜାଲା ଭିତର ଦେଇ ଗୋଲା ଭିତରକୁ ଅଙ୍କାଡ଼ି ହୋଇ ପଡ଼ିଲା । ସେମାନେ ଚନ୍ଦ୍ରକୁ ଅଭି-ବାଦନ କରି ମୁଗ୍ଧ ହୋଇଗଲେ । ଚନ୍ଦ୍ର ଆକାଶରେ ଗର୍ବଭରେ ଭାସି ଯାଉଥିଲେ । ଆଉ କେତେକ ଘଣ୍ଟା ପରେ ସେ ଆକାଶର ଏପରି ଗୋଟାଏ ଅଂଶକୁ ଆସିବେ, ଯେଉଁଠାରେ ଗୋଲାଯାଇ ତାଙ୍କୁ ଭେଟିବ । ବାର୍ବିକେନ୍ ନିଜ ଗଣନା ଅନୁସାରେ ଠିକ୍ କରିଥିଲେ ଯେ ସେ ଚନ୍ଦ୍ରର ଉତ୍ତର ଗୋଲାର୍ଦ୍ଧରେ ଯାଇ ପହଞ୍ଚିବେ । ସେଠାରେ ପାହାଡ଼ ପର୍ବତ ବେଶି ନାହିଁ । ସମତଳ ଭୂମି ଗୁଡ଼ିଏ ଅଛି । ସୁତରାଂ ଜଳ ବାୟୁର ଅବସ୍ଥା ସେଠାରେ ଖୁବ ଭଲ ଏବଂ ଏମାନଙ୍କ ପକ୍ଷରେ ଅନୁକୂଳ ହେବ । ବିଶେଷତଃ ପର୍ବତ ଦେହରେ ଏମାନେ ଯେବେ ଯାଇ ପହଞ୍ଚିବେ, ତେବେ ଗୋଲା ଏପରି ଗଡ଼ା ଗଡ଼ିବ ଯେ, ତା ଭିତରେ ଏମାନଙ୍କ ଅବସ୍ଥା ସଙ୍କଟାପନ୍ନ ହୋଇଯିବ । ସମତଳ ଭୂଇଁରେ ଗଡ଼ିବାର ସମ୍ଭାବନା ନାହିଁ ।

ସେମାନଙ୍କ ଲକ୍ଷ୍ୟ ସାଧନର ସଫଳତା ବିଷୟରେ ଆଉ କୌଣସି ସନ୍ଦେହ ରହିଲା ନାହିଁ । କିନ୍ତୁ ବାର୍ବିକେନ୍ଙ୍କ ମୁଣ୍ଡରେ ଆଉ ଗୋଟାଏ ଚିନ୍ତା ଆସି ଖେଳିଗଲା । ତାହା ସେ ବନ୍ଧୁମାନଙ୍କୁ ଜଣାଇ ସେମାନଙ୍କ ମନର ଶାନ୍ତି ଭାଙ୍ଗିବାକୁ ଚାହିଁଲେ ନାହିଁ । ଗୋଲାର ଗତି ଉତ୍ତର ଗୋଲାର୍ଦ୍ଧ ଅଭିମୁଖୀ ହେଉଥିଲେ ହେଁ ତାହା ଟିକିଏ ତେର୍ଛା ଧରି ଯାଇଥିଲା । ଗାଣିତିକ ହିସାବ ଅନୁସାରେ ଗୋଲାକୁ ଚନ୍ଦ୍ର ବିମ୍ବର ମଧ୍ୟସ୍ଥଳକୁ ଲକ୍ଷ୍ୟ କରାଯାଇଥିଲା । ଯଦି ତାହା ସେଠାରେ ପହଞ୍ଚି ନପାରିବ, ତେବେ ବୁଝିବାକୁ ହେବ ଯେ, ତାହା ତେର୍ଛା ଧରି ଯାଉଛି । ଏହାର କାରଣ କଣ ? ଏପରି ତେର୍ଛା ଗତିର

ଫଳ କଣ ହେବ, ବାର୍ବିକେନ୍ ଆଦୌ ବୁଝିପାରୁନଥିଲେ। କାରଣ ସେପରି ହିସାବ ତାଙ୍କ ପାଖରେ ଆଦୌ ନଥିଲା । ସେ କେବଳ ଭାବୁଥିଲେ, ଗୋଲା ଚନ୍ଦ୍ରର ଉପରିଭାଗରେ ଯାଇ ପଡ଼ିବ । ତାହେଲେ ଏମାନଙ୍କ ଓହ୍ଲାଇବାରେ ସୁବିଧା ହେବ । ତାହା ହୋଇ ନପାରିଲେ ଗୋଲା ଲକ୍ଷ୍ୟଭ୍ରଷ୍ଟ ହୋଇ ଗ୍ରହମଣ୍ଡଳ ମଧ୍ୟରେ କୁଆଡ଼େ ଯେ ହଜି ହୋଇଯିବ, ତାର ସ୍ଥିରତା ନାହିଁ ।

ସେତେବେଳେ ଚନ୍ଦ୍ର ଥାଳପରି ଦେଖା ନ ଯାଇ ଅନେକ ପରିମାଣରେ ଗୋଲାକାର ଦେଖାଗଲା । ସୂର୍ଯ୍ୟାଲୋକ ସେଠାରେ ତେର୍ଛା ଭାବରେ ପଡ଼ୁଥିଲେ ବଡ଼ ପର୍ବତ, ବଡ଼ ଅଗ୍ନେୟଗିରି ଓ ଅନ୍ୟ ଉଚ୍ଚ ସ୍ଥାନସବୁ ବିଶେଷ ଭାବରେ ଦେଖା ଯାଉଥାନ୍ତା ଏବଂ ସମତଳ ଭୂମିସବୁ ଛାୟା ପଡ଼ି ବାରିହୋଇ ଜଣାଯାଉଥାନ୍ତା । ମାତ୍ର ତା ପରିବର୍ତ୍ତେ ସୂର୍ଯ୍ୟାଲୋକ ସିଧା ଭାବରେ ପଡ଼ିବାରୁ ଚନ୍ଦ୍ରର ପ୍ରତ୍ୟେକ ଅଂଶ ଉଜ୍ଜ୍ୱଳ କିରଣମାଳାରେ ଦେଦୀପ୍ୟମାନ ହୋଇ ଉଠିଲା । ଉଚ୍ଚନୀଚ ସ୍ଥାନସବୁ ସମତଳ ରୂପେ ଜଣା ପଡ଼ିଲା । ଚନ୍ଦ୍ରର ଯେଉଁ ଚିହ୍ନ ଆମ ପୃଥିବୀବାସୀଙ୍କି ଗୋଟିଏ ମନୁଷ୍ୟ ମୁହଁ ପରି ଦେଖାଯାଏ, ସେ ଚିହ୍ନ ସବୁ ଅଦ୍ଭୁତ ବଡ଼ ଓ ବିଶେଷ ଭାବରେ ଦେଖାଗଲା ।

ଯାତ୍ରୀମାନେ ଲକ୍ଷ୍ୟର ନିକଟବର୍ତ୍ତୀ ହେବାରୁ ଏ ନୂତନ ଜଗତକୁ ଅଭିନିବେଶ ସହକାରେ ଦେଖିବାରେ ଲାଗିଲେ । ସେମାନଙ୍କ କଳ୍ପନା କେତେବେଳେ ପର୍ବତ ଉପରେ ଘୂରୁଥିଲା, ପୁଣି କେତେବେଳେ ଖସିଯାଇ ଗହ୍ୱରମାନଙ୍କରେ ଧାଉଁଥିଲା । କେତେବେଳେ ସେମାନେ ଗୋଟାଏ ସମୁଦ୍ର ଦେଖିଲେ ବୋଲି ମନେ କରୁଥିଲେ, କେତେବେଳେ ଗୋଟାଏ ଗିରି ଝରଣାର ଶୀତଳ

କଲ ସେମାନଙ୍କ ଚକ୍ଷୁକୁ ଝଲସାଇ ଦେଉଥିଲା । ସେମାନେ ଯାହା ଯାହା ଦେଖୁଥିଲେ, ସଙ୍ଗେ ସଙ୍ଗେ ଟିପି ପକାଉଥିଲେ । ଯାହାର ଶେଷ ସମୟଟା ସେମାନଙ୍କୁ ଅସ୍ଥିର କରିଦେଲା । ସେମାନଙ୍କର ଗତି ଅତି ଧୀର ହୋଇ ଗଲଣି ବୋଲି ସେମାନେ ଯଦି ଅନୁଭବ କରି ପାରୁଥାନ୍ତେ, ତା ହେଲେ ସେମାନଙ୍କ ଅସ୍ଥିରତା ଅଧିକ ବେଶି ବଢ଼ି ଯାଇଥାନ୍ତା । ସେତେବେଳେ ଗୋଲାର ଗତି ଏତେ ଧୀର ଯେ, ତାହା ଶେଷ ଲକ୍ଷ୍ୟରେ ପହଞ୍ଚିବା ଅସମ୍ଭବ । କାରଣ ସେତେବେଳେ ଗୋଲାର ଓଜନ ବା ଭାର ବୋଲି ଗୋଟାଏ କିଛି ନ ଥିଲା । ଗୋଲାର ଓଜନ କ୍ରମ୍ କମି ଆସୁଥିଲା । ଅତି ଅଳ୍ପ ଦୂରରେ ଚନ୍ଦ୍ର ଓ ପୃଥିବୀ ଆକର୍ଷଣର ସମସ୍ଥାନରେ ପହଞ୍ଚିଲେ ଓଜନର ଗୋଟାଏ ନାମ ସୁଦ୍ଧା ରହିବ ନାହିଁ ।

ବାର୍ବିକେନ ଦକ୍ଷିଣପଟ ଝରକାବାଟେ ସୃହିଁ କୁକୁର ଦେହଟାକୁ ଦେଖିଲେ । ତାହା ସେହିପରି ଗୋଲା ସଙ୍ଗେ ସଙ୍ଗେ ଉଡ଼ୁଥିଲା । ମାତ୍ର ତାର ଗତି ସେ ଅନୁଭବ କରି ପାରିଲେ ନାହିଁ । ଭୂଇଁରେ ପଡ଼ିଥିଲେ ଯେପରି ଦେଖାଯାନ୍ତା, ସେଠାରେ ସେହିପରି ପଡ଼ିଥିବାର ଜଣାଗଲା । ଏ ଅବସ୍ଥା ଦେଖି ଆର୍ଡାନଙ୍କର ମନେହେଲା, ଆଗରୁ ବ୍ୟବସ୍ଥା କରିଯାଇଥିଲେ ସେ ବାହାରକୁ ଯାଇ ଇଥର ସମୁଦ୍ରରେ ଭାସୁଥାନ୍ତେ ଏବଂ ସୂର୍ଯ୍ୟ କିରଣରେ ସ୍ନାନ କରୁଥାନ୍ତେ । ଏଥିପାଇଁ ତାଙ୍କ ମନରେ ଟିକିଏ ଅବଶୋଷ ହେଲା । ବାର୍ବିକେନ ତାଙ୍କୁ ବୁଝାଇ ଦେଲେ ଯେ, ସେ ବାହାରୁ ନିଃଶ୍ୱାସ ପାଇଁ ପବନ ପାଇବେ ନାହିଁ । ତାଙ୍କ ଦେହରେ ଯେଉଁ ପବନ ଅଛି, ତାହା ବଢ଼ି ଯାଇ ତାଙ୍କ ଦେହକୁ ଫଟାଇ ଖଣ୍ଡ ଖଣ୍ଡ କରିଦେବ । ତାଙ୍କ ଦେହ କୁକୁର ଦେହପରି ଅକ୍ରିୟାଶିଳ ମାଦଳ ପରି ହୋଇଯିବ । ଏ ସମସ୍ତ

ଢାର୍ଯ ପାଇଁ ଏକ ମିନିଟରୁ ବେଶି ସମୟ ଲାଗିବ ନାହିଁ । ଅର୍ଡ୍ଡାନ୍ ଏହା ଶୁଣି ଅନେକ ପରିମାଣରେ ଆଶ୍ୱସ୍ତ ହୋଇ ଚୁପ୍ ହେଲେ ।

ଏହାପରେ ନିକୋଲ୍ ଗୋଟାଏ କଥା କହିଲେ, ଚନ୍ଦ୍ରକୁ ଯାଇ ସେମାନେ ପୃଥିବୀ କୁ ଫେରିବେ କପରି ? ଏ ବିଷୟରେ ଗୁଡ଼ାଏ କଥାବାର୍ତ୍ତା ଚାଲିଲା । ଚନ୍ଦ୍ରକୁ ନ ଯାଉଣୁ ପୃଥିବୀ କୁ ଫେରିବା ଚିନ୍ତା ହାସ୍ୟାସ୍ପଦ । ତଥାପି ତାହା ଗୋଟାଏ ଗୁରୁତର ବିଷୟ ବୋଲି ସ୍ଥିର ହେବାରୁ ବାର୍ବିକେନ ବୁଝାଇ ଦେଲେ ଯେ, ଚନ୍ଦ୍ର ଦେହରେ ଅବଶ୍ୟ ଲୁହା ବାରୁଦ ସବୁ ମିଳିବ । ତା ବଳରେ ଗୋଟାଏ ତୋପ ତିଆରି କରି ତହିଁରେ ଗୋଳକୁ ପୂରାଇ ଛାଡ଼ିଲେ ତାହା ପୃଥିବୀର ଆକର୍ଷଣ ବଳରେ ଫେରି ପାରିବ । ଚନ୍ଦ୍ରର ଆକର୍ଷଣ ଖୁବ୍ କମ ଥିବାରୁ ଗୋଳର ଗତରେ ବିଶେଷ ବେଗ ଦେବାକୁ ପଡ଼ିବ ନାହିଁ ।

ତା ପରେ ଅର୍ଡ୍ଡାନ ଚନ୍ଦ୍ରରୁ ପୃଥିବୀ ପର୍ଯ୍ୟନ୍ତ ସମ୍ବାଦ ଆଦାନ ପ୍ରଦାନର ବ୍ୟବସ୍ଥା କରି ନ ପାରି ବଡ଼ ଦୁଃଖିତ ହେଲେ । ଅଗ କଥା ପଡ଼ିଲା, ଆଗ୍ନେୟ ଗିରିରୁ ଯେଉଁ ଉଲ୍‌କା ସବୁ ଉଠିବ, ତହିଁରେ ଚିଠିପତ୍ର ବାନ୍ଧି ଛାଡ଼ିଦେଲେ ପୃଥିବୀରେ ତାହା ନିଶ୍ଚୟ ପହଞ୍ଚିବ । ଅର୍ଡ୍ଡାନ୍‌ଙ୍କର ଏପରି ପିଲାଳିଆ କଥାରେ ଦୁଇବନ୍ଧୁ ହସି ଉଠିଲେ । ତା ପରେ ଅର୍ଡ୍ଡାନ ଏ କଥାକୁ ସଂଶୋଧନ କରି ଆଉ ଗୋଟିଏ କଥା ବାହାର କଲେ । ସେମାନେ ଆସିଲାବେଳେ ପୃଥିବୀରୁ ତୋଟାଏ ତାର ଯେବେ ଗୋଳ ସଙ୍ଗେ ଲମ୍ବାଇ ଆଣିଥାନ୍ତେ , ତା ହେଲେ ଚନ୍ଦ୍ରରୁ ପୃଥିବୀ ପର୍ଯ୍ୟନ୍ତ ତହିଁରେ ସମ୍ବାଦ ଦିଆଯାଇ ପାରିଥାନ୍ତା । ଯଥା ସମୟରେ ଏଇଟା ତାଙ୍କ ମୁଣ୍ଡରେ ନଥିବାରୁ ସେ ବଡ଼ ବ୍ୟସ୍ତହେଲେ । ନିକୋଲ୍ ଏଥିରେ ପ୍ରତିବାଦ କରି କହିଲେ, "ଦୁଇଲକ୍ଷ ଅଠାବନ ହଜାର ମାଇଲ୍ ଲମ୍ବା ତାରର ଓଜନ କେତେ

କର୍ ନୁହେଁ ।" ଅର୍ଜୁନ କହିଲେ, "ସେଥିପାଇଁ ଅମେ ଗୋଲର ବେଗ ବଢ଼ାଇ ଥାଉ । ତୋପକୁ ଅଧିକ ବଡ଼ କରିଥାଉ ।" ଏହା କେତେଦୂର ଅସମ୍ଭବ ପ୍ରସ୍ତାବ,' ତାହା ବାର୍ବିକେନ ବୁଝାଇ ଦେଲେ । ଗୋଲ ଅସିଲବେଳେ ତାର ଦେହସାକ ଗୁଡ଼ାଇ ହୋଇଥାନ୍ତା ଏବଂ ଗୋଲର ଘର୍ଷଣ ଗତିକୁ ଅସ୍ତ୍ରେ ଅସ୍ତ୍ରେ ମାନ୍ଦା କରି ତାକୁ ପୃଥିବୀ ଅଡ଼କୁ ଟାଣି ନେଇଥାନ୍ତା ।

ଏପରି ଭାବରେ କଥାବାର୍ତ୍ତା ହେଉ ହେଉ ସେମାନଙ୍କ ମାନସିକ ଶକ୍ତି ହ୍ରାସ ହୋଇଗଲା ପରି ସେମାନଙ୍କୁ ଲାଗିଲା । ମସ୍ତିଷ୍କ ଅଉ ସେମାନଙ୍କ ଅଯ୍ତ୍ୱାଧୀନ ହୋଇ ରହିପାରିଲା ନାହିଁ । ସେମାନେ ମନେ କଲେ ଯେପରି ସମୟର ପରିବର୍ତ୍ତିତ ଅବସ୍ଥା ଏ କାଣ୍ଡ ଘଟାଇ ଅଛି । ଅଥବା ଚନ୍ଦ୍ରର ସାମୀପ୍ୟ ଏ ଅବସ୍ଥା ପାଇଁ ଦାୟୀ । ତା ନ ହେଲେ ଚନ୍ଦ୍ରର ଗୋଟାଏ ଗୁପ୍ତ ପ୍ରଭାବ ସେମାନଙ୍କ ଧମନୀରେ ତାର କ୍ରିୟା କରୁଛି, ଯାହା ଫଳରେ ମସ୍ତିଷ୍କ ବିକୃତ ହୋଇ ଯାଉଛି । ଗୋଟାଏ ଜଳନ୍ତା ଚୁଲି ଅଡ଼କୁ ମୁହଁ କରି ଠିଆ ହେଲେ ତାହା ଯେପରି ନାଲ୍ ହୋଇଯାଏ, ଏମାନଙ୍କ ମୁହଁ ସେହିପରି ନାଲ୍ ହୋଇଗଲା । ସେମାନଙ୍କ ନିଃଶ୍ୱାସ ଘନ ଘନ ବୋହିଲା । ଗଳିତ କମାର ଭାତିପରି ମୁହୁର୍ମୁହୁ ପଡ଼ିଲା ଉଠିଲା । ସେମାନଙ୍କ ଅଖିରୁ ଅଗ୍ନି ସ୍ଫୁଲିଙ୍ଗ ବାହାରିଲା । ସେମାନଙ୍କ ସ୍ୱର ବହୁତ ଉଚ୍ଚ ହୋଇ ପଡ଼ିଲା । ସୋଡ଼ା ବୋତଲର ଠିପି ଖୋଲି ଦେଲେ ତାର ଗ୍ୟାସ୍ ଯେପରି ଭସ୍ ଭସ୍ ହୋଇ ବାହାରି ପଡ଼େ, ସେମାନଙ୍କ କଥାସବୁ ସେପରି ବାହାରିଲା । ସେମାନଙ୍କ ହାବ ଭାବ ଅସ୍ଥିର ହୋଇପଡ଼ିଲା । ସେମାନେ ମନେ କଲେ, ଗୋଲ ଅଭ୍ୟନ୍ତରଟା ଯେପରି ଖୁବ୍ ଗ୍ରୀଷ୍ମ । ଅଉ ଏହିପରି ତଳଗୁଣ ଲାଗା

ସେମାନଙ୍କ ଚଳାଚଳ ପାଇଁ ଦରକାର । ସେମାନେ କିନ୍ତୁ ମନର ଏପରି ପରିବର୍ତ୍ତିତ ଅବସ୍ଥା ଲକ୍ଷ୍ୟ କରି ପାରୁଥିଲେ ।

ନିକୋଲ ଉତ୍ତେଜିତ ଭାବରେ କହିଲେ, "ଚନ୍ଦ୍ରରୁ ଆମେ ଫେରିବା କି ନା ମୁଁ ଏହା ଜାଣିପାରୁ ନାହିଁ । ଆମେ ସେଠାକୁ ଯାଉଛୁଁ କାହିଁକି ?"

ବାର୍ବିକେନ ସେହିପରି ଉତ୍ତେଜିତ ସ୍ୱରରେ ଜବାବ ଦେଲେ, "ସେଠାକୁ ଆମେ କାହିଁକି ଯାଉଛୁଁ ମୁଁ ଜାଣେ ନା ?"

ଅର୍ଡାନ୍ ଗୋଟାଏ ଘାଇଁ ଘାଇଁ ସ୍ୱରରେ ଖୁବ୍ ଜୋରରେ କହିଲେ, "କଣ ? ତୁମେ ଜାଣନା ?"

ବାର୍ବିକେନ୍ ଶିହକାର କରି କହିଲେ, "ନା, ମୋର ସେ ବିଷୟରେ କିଛି ଧାରଣା ନାହିଁ ।"

ଅର୍ଡାନ୍, "ତେବେ ମୁଁ ·ଜାଣେ ।"

ନିକୋଲ ଅର୍ଡାନଙ୍କ ବିରକ୍ତ ସ୍ୱରକୁ ସହି ନ ପାରି ଦାବି କଲେ, "କହ ତେବେ ।"

ଅର୍ଡାନ୍ ନିକୋଲଙ୍କ ହାତକୁ ଝିଙ୍କାଇ ଦେଇ ତେଜରେ କହିଲେ, "ମୋର ଇଚ୍ଛା ହେଲେ କହିବି, ନୋହିଲେ ନାହିଁ ।"

ବାର୍ବିକେନ୍ ଆଖିକୁ ନାଲ୍ ନାଲ୍ କରି ଭୟ ଦେଖାଇଲା ପରି ହାତ କରି କହିଲେ, "ତୁମ୍ଭକୁ ଇଚ୍ଛା କରିବାକୁ ହେବ । ଏହି

ଏକୀଚିକାପୂର୍ଣ୍ଣ ଅଭିଯାନ ପାଇଁ ତୁମ୍ଭେ ଆମ୍ଭକୁ ଟାଣି ଆଣିଛ । ଆମେ ଏହାର କାରଣ ଜାଣିବାକୁ ଚାହୁଁ ।"

କାପ୍‌ଟେନ୍ କହିଲେ, "ହଁ, ମୁଁ କାହିଁକି ଯାଉଛି, ମୁଁ ଜାଣିପାରୁ ନାହିଁ । ମୁଁ ଏହା ଜାଣିବାକୁ ଚାହେଁ ।"

ଅର୍ଡାନ୍ ଗର୍ବେ ଉପରକୁ ଡେଇଁପଡ଼ି କହିଲେ, "କାହିଁକି ? ଶୁଣିବ, କାହିଁକି ? ଯୁକ୍ତରାଷ୍ଟ୍ର ନାମରେ ଚନ୍ଦ୍ରକୁ ଦଖଲ କରିବାକୁ, ଯୁକ୍ତରାଷ୍ଟ୍ର ସଙ୍ଗେ ଆଉ ଗୋଟାଏ ଅଭିନବ ରାଷ୍ଟ୍ର ସଂଯୋଗ କରିବାକୁ, ଚନ୍ଦ୍ରଲୋକରେ ଉପନିବେଶ ସ୍ଥାପନ କରିବାକୁ, ତାକୁ ଚାଷ କରି, ତହିଁରେ ଲୋକସଂଖ୍ୟା ବଢାଇ ସେମାନଙ୍କୁ ପାର୍ଥିବ କଳା, ବିଜ୍ଞାନ, ଓ ଶିଳ୍ପ ବ୍ୟାପାରରେ ଉଦ୍‌ବୁଦ୍ଧ କରିବାକୁ, ଚନ୍ଦ୍ରଲୋକବାସୀମାନେ ଅସଭ୍ୟଥିଲେ ସେମାନଙ୍କୁ ସଭ୍ୟ କରିବାକୁ ଏବଂ ସେମାନଙ୍କ ଭିତରେ ଜାତୀୟ ଜାଗରଣ ନ ଥିଲେ ତହିଁରେ ସେମାନଙ୍କୁ ଶିକ୍ଷିତ କରି ତହିଁରେ ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ।"

ନିକୋଲ୍ ସମସ୍ତର ସେ ନିଶାରେ ଝାଙ୍କି ହୋଇ କହିଲେ, "ସେଠାରେ ଲୋକ ଥିଲେ ସିନା ?"

ଅର୍ଡାନ୍ "କିଏ କହିଲା ସେଠାରେ ଲୋକ ନାହାନ୍ତି ବୋଲି ?"

ନିକୋଲ୍ ଚିତ୍କାର କରି କହିଲେ, "ମୁଁ କହୁଛି ।"

ମାଇକେଲ୍ କହିଲେ, "କାପ୍‌ଟେନ୍ ! ଆଉଥରେ ଏପରି ଅପମାନଜନକ କଥା କହ ନାହିଁ । ମୁଣ୍ଡରେ ଖପୁରି ଉଡ଼ାଇ ଦେବି ।"

ଏହା କହୁ କହୁ ଉଭୟେ ପରସ୍ପରକୁ ମାରିବାକୁ ଉଦ୍ୟତ ହେଲେ । ସାମାନ୍ୟ କଥାବାର୍ତ୍ତାରୁ ଲଢେଇ ଅଡ଼ିକୁ ଅବସ୍ଥା ଗଲାଣି । ବାର୍ବିକେନ୍ ହଠାତ୍ ସେ ଦୁହିଁଙ୍କୁ ଛଡ଼ାଛଡ଼ି କରି ଦେଇ କହିଲେ, "ଥଣ୍ଡା ହୁଅ, ନିର୍ବୋଧ ! ସେଠାରେ ଲୋକ ନ ଥିଲେ ଆମେ ଲୋକ ହେବା ?"

ଅର୍ଡାନ ଭ୍ରୂକ୍ଷେପ ନ କରି ପରି କହିଲେ, "ହଁ; ଆମର ସେଥିରେ କଣ ଅଛି ? ଚନ୍ଦ୍ରବାସୀଙ୍କ ବିଷୟରେ ମୁଣ୍ଡ ଘୂରାଇବା କି ଦର୍କାର ?"

ନିଚୋଲ୍,"ଚନ୍ଦ୍ରରାଜ୍ୟ ଆମର । ଆମେ ତିନିଜଣ ସେଠାରେ ଗଣତନ୍ତ୍ର ଗଢ଼ିବା ।"

ଅର୍ଡାନ୍—"ମୁଁ ହେବି କଂଗ୍ରେସ୍ ।"

ନିଚୋଲ୍—"ମୁଁ ହେବି ଶାସନ ପରିଷଦ ।"

ଅର୍ଡାନ୍—"ବାର୍ବିକେନ ସଭାପତି ! ମୁଁ କଂଗ୍ରେସ, ତାଙ୍କୁ ମନୋନୀତ କଲି ।"

ନିଚୋଲ୍ ଚିତ୍କାର କରି—"ଜୟ, ସଭାପତି ବାର୍ବିକେନଙ୍କର ଜୟ ।"

ଏହାପରେ ସଭାପତି ଓ ପରିଷଦ ଯାଙ୍କୀ ଜାତୀୟଗୀତ ବଡ଼ ପାଟିରେ ଗାଇଲେ । କଂଗ୍ରେସ୍ ଫ୍ରାନ୍ସର ଜାତୀୟ ଗୀତ ଉଚ୍ଚ ସ୍ୱରେ ମିଶେଇଲେ । ଗୋଟାଏ ହରିବୋଲିଆ ଅବସ୍ଥା ହେଲା । ତାପରେ

ସେମାନେ ପାଗଲ ପରି ଗୁଡ଼ାଏ ନାଚଲେ, ଡେଇଁଲେ । କୁକୁଡ଼ା ଗୁଡ଼ାକ ତା ଭିତରେ ଜଡ଼ କୁଲିଲେ । ସେମାନେ ବି ପାଗଳ । କୁକୁରଟା ମଧ୍ୟ ପାଗଳ । ଏହା ପରେ ଯାତ୍ରୀମାନଙ୍କ ଘୃଣ ଭ୍ରିପଣ୍ଡ ଅନ୍ଦୋଳିତ ହେଲା । ନିଶ୍ୱାସରେ ବିଶେଷ ଜ୍ୱାଳା ବୋଧ ହେଲା । ସେମାନେ ହତଜ୍ଞାନ ହୋଇତଳେ ପଡ଼ିଗଲେ ।

---

—ସାତ—

## ଉଭୟ ମାଧ୍ୟାକର୍ଷଣର ମିଳନ ସ୍ଥାନ

ଏପରି କେତେ ମିନିଟ୍ ଅଜ୍ଞାନ ଅବସ୍ଥାରେ ପଡ଼ିରହିବା ପରେ ନିକୋଲଙ୍କର ପ୍ରଥମେ ଚେତନା ଫେରି ଅସିଲା । ସେ ଦ ଘଣ୍ଟା ପୂର୍ବେ ଖାନା ଖାଇ ଥିଲେ ମଧ୍ୟ କେତେ ଦିନ ହେଲା କିଛି ଖାଇ ନଥିଲା ପରି ତାଙ୍କୁ ଲାଗିଲା ଓ ଭାରି ଭୋକ ହେଲା । ତାଙ୍କର ସମସ୍ତ ଅବୟବ, ମସ୍ତିଷ୍କ ଓ ପାକସ୍ଥଳୀ ଖୁବ୍ ଉତ୍ତେଜିତ ହୋଇ ଉଠିଲେ । ସେ ଅର୍ଡ୍ଜାନଙ୍କୁ କିଛି ଖାନା ମାଗିଲେ । ମାତ୍ର ଅର୍ଡ୍ଜାନ୍ ତାଙ୍କ ପରି ଅଚେତ ଥିବାରୁ କୌଣସି ଜବାବ ଦେଲେ ନାହିଁ । ତେଣୁ ସେ ନିଜେ ଥୋଡ଼ାଏ ଗୁ ପ୍ରସ୍ତୁତ କରି କିଛି ପିଠାଖାଇବାକୁ ମନସ୍ଥ କଲେ ଏବଂ ସଙ୍ଗେ ସଙ୍ଗେ ଗ୍ୟାସ୍ ଜାଳିବାକୁ ଉଠିଅସିଲା ମାଇଲେ ।

ମାତ୍ର କି ଅଶ୍ଚର୍ଯ୍ୟ କଥା ! ଗ୍ୟାସ୍ ବତୀଟା ଅତି ଉଜ୍ଜ୍ୱଳ ତେଜରେ ଅଗରୁ ଜଳୁଥିଲା । ବିଜୁଳି ଆଲୁଅପରି ଗୋଟାଏ ଆଲୁଅର ବନ୍ୟା ତା ଦେହରୁ ସ୍ୱରଅଡ଼େ ଛୁଟିଥିଲା । ଏହା ଦେଖି ନିକୋଲଙ୍କ ମନରେ ଗୋଟାଏ ଭାବ ଖେଳିଗଲା । ତାଙ୍କ ଦେହର ଏବେ ବିଶୃଙ୍ଖଳା,

ତାଙ୍କ ନୈତିକ ଓ ଜ୍ଞାନ ଶକ୍ତିର ଏପରି ଅସ୍ୱାଭାବିକ ବ୍ୟତିକ୍ରମ ଓ ଅତିରିକ୍ତ ଅଲ୍ଲେକ, ଏ ସମସ୍ତର ହେତୁକରଣ ସେ ଚିହ୍ନିକରି ଭୁଲି ନେଲେ । ଅତିରିକ୍ତ ଅମ୍ଳଜାନ ବାଷ୍ପର ଏ ସବୁ ଫଳ ।

ପବନ ଯନ୍ତ୍ର ଅଡ଼କୁ ଟିକିଏ ତଳପଡ଼ି ସେ ଦେଖିଲେ, ବୋତାମ ଖୋଲି ଯାଇଛି ଏବଂ ଯନ୍ତ୍ର ଭିତରୁ ଅପର୍ଯ୍ୟାପ୍ତ ପରିମାଣରେ ବର୍ଣ୍ଣହୀନ, ସ୍ୱାଦହୀନ ଓ ଗନ୍ଧହୀନ ବାଷ୍ପ ବାହାରୁଛି । ଏହା ପ୍ରାଣୀ ପକ୍ଷରେ ଅତିଶୟ ଉତ୍ତେଜନକ । ତାହା ଭଲ ଅବସ୍ଥାରେ ଥିଲେ, ଶାରୀରିକ ଯନ୍ତ୍ରମାନଙ୍କର ବିଶୃଙ୍ଖଳା ଘଟାଇ ଦିଏ । ଅର୍ଡାନ୍ ଅସାବଧାନତାବଶତଃ ବୋତାମ ବନ୍ଦ କରି ନ ଥିଲେ ।

ନିକୋଲ୍ ପଲକମାତ୍ରକେ ସେ ବୋତାମ ବନ୍ଦ କରି ଦେଲେ । ତଦ୍ୱାରା ଅଭ୍ୟନ୍ତରର ପବନଟା କ୍ରମଶଃ କ୍ରମଶଃ ବଦଳିଗଲା । ଅଉ କିଛି ସମୟ ଏପରି ରହିଥିଲେ ଯାତ୍ରୀମାନେ ପୋଡ଼ି ଯାଇଥାନ୍ତେ ।

ପବନ ପ୍ରାକୃତିକ ଅବସ୍ଥାକୁ ଅଳ୍ପ ଅଳ୍ପ ପ୍ରାୟ ଘଣ୍ଟାଏ ଲାଗିଗଲା । କ୍ରମେ କ୍ରମେ ସେମାନେ ସୁସ୍ଥ ହୋଇ ଉଠିଲେ । ଅସ୍ତେ ଅସ୍ତେ ସେମାନଙ୍କ ନିଶା ଛୁଟିଗଲା । ଅର୍ଡାନ୍ ତାଙ୍କ ଅସାବଧାନତାର କଥା ବୁଝିପାରି ବ୍ୟଥିତ ହେଲେ । ଏତେ ଘନ ଗୋଲକଟା ଭିତରେ ରହି ରହି ଯେଉଁ ମାନସିକ ବିକୃତି ଘଟି ଯାଇଥିଲା, ତହିଁରୁ ସେମାନେ ମୁକ୍ତି ପାଇଲେ ବୋଲି ବଡ଼ ହସି ଉଠିଲେ ।

ଏ ସମୟରେ ବାର୍ବିକେନ୍ ପଚାରିଲେ, "ସେ ଗଣ୍ଡଗୋଳ ବେଳେ ସୁଡ଼ାଏ କୁକୁଡ଼ା କୁଆଡ଼ୁ ଅସି ଉଡ଼ୁଥିଲେ ?"

ଅର୍ଡାନ୍ କହିଲେ, "ମୁଁ ସେଗୁଡ଼ିକ ସଙ୍ଗରେ ଆଣିଛି । ତୁମ୍ଭ-ମାନଙ୍କୁ ଗୁପ୍ତ କରିଥିଲି । ଚନ୍ଦ୍ରରେ ପହଞ୍ଚିଲେ ମୁଁ ସେଗୁଡ଼ିକୁ ଛାଡ଼ି ଦେଇଥାନ୍ତି । ତୁମ୍ଭେ ଦେଖି ବିସ୍ମିତ ହୋଇଥାନ୍ତ । ମାତ୍ର ସେ ସୁଯୋଗ ଘଟିଲା ନାହିଁ ।" ଏହା କହି ସେ କୁକୁଡ଼ା ଗୁଡ଼ିକୁ ଏଠାରୁ ସେଠାରୁ ସଂଗ୍ରହ କରି ତାଙ୍କ ଖୋପରେ ନେଇ ରଖିଦେଲେ ।

ଏହାପରେ ଭ୍ରମଣକାରୀ ଗୋଲା ଅଭ୍ୟନ୍ତରର ଶୃଙ୍ଖଳା ସବୁ ସଜାଡ଼ିବାରେ ଲାଗିଲେ । ଏଥି ସଙ୍ଗେ ସଙ୍ଗେ ସେମାନେ ଗୋଟାଏ ଅଭିନବ ଅନୁଭୂତିର ସମ୍ମୁଖୀନ ହେଲେ । ସେମାନେ ପୃଥିବୀ ଛାଡ଼ିବା ଦିନଠାରୁ ଏ ପର୍ଯ୍ୟନ୍ତ ଗୋଲା ଓ ତା ଅନ୍ତର୍ଗତ ଜିନିଷ ସହ ନିଜର ଓଜନ ହ୍ରାସ କ୍ରମେ କ୍ରମେ ଅନୁଭବ କରୁଥିଲେ । ମାତ୍ର ସେମାନେ ଗୋଲା ଭିତରେ ଥିବାରୁ ସେତେ ବୁଝିପାରୁ ନ ଥିଲେ । ମାତ୍ର ଏପରି ଗୋଟାଏ ସ୍ଥାନରେ ସେମାନେ ପହଞ୍ଚିଲେ ଏହି ଅବସ୍ଥା ଉତ୍ତମରୂପେ ବୁଝିପାରିବେ । କୌଣସି ଓଜନଯନ୍ତ୍ର, ସେର, ଷଣା, ତରାଜୁ ମଧ୍ୟ ଏ ଓଜନ ଧରି ପାରିବ ନାହିଁ । କାରଣ ସେର, ଷଣା, ତରାଜୁର ଓଜନ ମଧ୍ୟ ଏଥି ସଙ୍ଗେ କମିଯିବ ।

ସେତେବେଳେ ଗୋଲା ଆସି ସେହି ଅବସ୍ଥାରେ ପହଞ୍ଚିଲା । ସେ ସ୍ଥାନ ପୃଥିବୀ ଓ ଚନ୍ଦ୍ରର ଆକର୍ଷଣର ସମସ୍ଥାନ । ଗୋଲା ପୃଥିବୀଠାରୁ ଯେତିକି ଯେତିକି ଦୂରକୁ ଗଲା, ପାର୍ଥିବ ଆକର୍ଷଣ ସେତିକି କମିବାକୁ ଲାଗିଲା ଏବଂ ଚନ୍ଦ୍ରର ଆକର୍ଷଣ ଆରମ୍ଭ ହେଲା । ଏହାପରେ ଗୋଲା ଏପରି ଗୋଟାଏ ଜାଗାରେ ପହଞ୍ଚିବ, ଯେଉଁଠାରେ ଉଭୟ ଆକର୍ଷଣର ଜୋର କମିଯିବ । ଗୋଲାର କୌଣସି ଓଜନ ରହିବ ନାହିଁ । ଚନ୍ଦ୍ର ଓ ପୃଥିବୀ ଉଭୟର କଳେବର ସମାନ ଥିଲେ, ଉଭୟଙ୍କ ଦୂରତାର ମଧ୍ୟସ୍ଥାନରେ ଏ ଅବସ୍ଥା ଘଟନ୍ତା, ମାତ୍ର

ଚନ୍ଦ୍ରଠାରୁ ପୃଥିବୀର କଳେବର ବହୁଗୁଣ ବେଶି ଥିବାରୁ ପୃଥିବୀଠାରୁ ୨,୩୪,୩୪୨ ମାଇଲ୍ ଦୂରରେ ଏ ଅବସ୍ଥା ଘଟିଲା ।

ଏ ଅବସ୍ଥାରେ ଯେଉଁ ପଦାର୍ଥର ମୌଳିକ ବେଗ ନଥିବ ବା ନିଜର ଗତି ନଥିବ, ତାହା ଏଠାରେ ପଡ଼ିଲେ କୁଆଡ଼କୁ ଯାଇନପାରି ଅଚଳ ହୋଇଯିବ ଏବଂ ଅନନ୍ତ କାଳ ଯାଏ ଉଭୟ ଆକର୍ଷଣରେ ପଡ଼ିଥିବ । ଗୋଲାର ମୌଳିକ ବେଗ ନଥିଲେ ତାହା ଏପରି ହେବାର କଥା ।

ଅବସ୍ଥା ଏହିପରି । ଏ କଥା ବାର୍ବିକେନ ତାଙ୍କ ବନ୍ଧୁମାନଙ୍କୁ ବୁଝାଇ ଦେଲେ । ସେମାନଙ୍କ ଆଗ୍ରହ ଖୁବ ବଢ଼ିଲା । ଓଜନବିହୀନ ଦେଶରେ ସେମାନେ କି ଅଦ୍ଭୁତ ଭୋଗ କରିବେ ତାହା ଜାଣିବାକୁ ବିଶେଷ ବ୍ୟାକୁଳ ହେଲେ । ସେଦିନ ଠିକ ଏଗାରଟା ବେଳେ ନିକୋଲ ଗୋଟିଏ ଗ୍ଲାସ ଉପରୁ ତଳକୁ ପକାଇ ଦେବାରେ ତାହା ତଳେ ନପଡ଼ି ଶୂନ୍ୟରେ ଝୁଲି ରହିଲା । ସଙ୍ଗେ ସଙ୍ଗେ ଭିତରର ଯାବତୀୟ ଜିନିଷ, ଯନ୍ତ୍ରପାତି, ବୋତଲ, ସ୍ୱସ୍ଥାନରୁ ଉଠିଯାଇ ଶୂନ୍ୟରେ ଝୁଲିଲେ । ଆର୍ଡାନ କୁକୁରକୁ ଉପରକୁ ଟେକି ଛାଡ଼ି ଦିଅନ୍ତେ, ସେ ଆଉ ପଡ଼ି ନ ଯାଇ ଶୂନ୍ୟରେ ଝୁଲି ରହିଲା ।

ସାହେବମାନେ ଘୋର ବିସ୍ମୟରେ ବୁଡ଼ିଯିବା ସଙ୍ଗେ ସଙ୍ଗେ ନିଜ ନିଜ ଦେହରେ କୌଣସି ଓଜନ ଥିଲାପରି ବୁଝି ପାରିଲେ ନାହିଁ । ସେମାନଙ୍କ ଦେହ ଶୂନ୍ୟରେ ଭାସିଲାପରି ଲାଗିଲା । ବୈଜ୍ଞାନିକମାନେ କଳ୍ପନା ବଳରେ ଏକଥା ପ୍ରକାଶ କରିଥିଲେ । ମାତ୍ର ଏମାନେ ନିଜେ ଅନୁଭବ କଲେ । ଆର୍ଡାନ୍ କୌତୂହଳ ବଶତଃ ଉପରକୁ ଟିକିଏ ଡେଇଁ ପଡ଼ିଲେ । ମାତ୍ର ସେ ପଡ଼ି ନ ଯାଇ ଝୁଲି ରହିଲେ ।

ଅନ୍ୟ ସାହେବମାନେ ମଧ୍ୟ ସେହିପରି ଉପରକୁ ତେଇଁ ଝୁଲିବାକୁ ଲାଗିଲେ । ସେମାନଙ୍କ କୌତୂହଳ ଅସାଧାରଣ ରୂପେ ବୃଦ୍ଧି ପାଇଲା ।

ଅର୍ଡ୍ଡାନଙ୍କୁ ଏ ଅବସ୍ଥା ଭାରି ଭଲ ଲାଗିଲା । ସେ ଆନନ୍ଦରେ ଏଣେ ତେଣେ କଲବଲ ହୋଇ ପଡ଼ିଲେ । ବାର୍ବିକେନ ତାଙ୍କୁ ବୁଝାଇ ଦେଲେ ଯେ, ସେମାନେ ଏହି ସମାକର୍ଷଣ ଅଂଶ ପାର ହୋଇଗଲା ମାତ୍ରକେ ଚନ୍ଦ୍ରର ଆକର୍ଷଣ ବଳରେ ତା ଆଡ଼କୁ ଟାଣି ହୋଇଯିବେ । ସେତେବେଳେ ଗୋଲାର ତଳଭାଗ ଚନ୍ଦ୍ର ଆଡ଼କୁ ଢଳି ପଡ଼ିବ । ସେମାନେ ଏପରି ମୃଦୁ ଭାବରେ ଘୂରିଯିବେ ଯେ, ତାହା କେହି ଲକ୍ଷ୍ୟ କରି ପାରିବେ ନାହିଁ । ଏ ସମୟଟିକର ସଦ୍‌ବ୍ୟବହାର ପାଇଁ ଅର୍ଡ୍ଡାନ ଅନେକ କୌତୁକ କ୍ରିୟା ବାହାର କଲେ । ସୋଡ଼ା ଓ ସେରି ବୋତଲସବୁ ଖୋପମାନଙ୍କରୁ ବାହାର କରି ଶୂନ୍ୟରେ ଛାଡ଼ିଦେଲା ମାତ୍ରକେ ତାହା ସବୁ ଝୁଲି ରହିଲେ । କପ୍‌ମାନ ମଧ୍ୟ ସେପରି ଛାଡ଼ିଲେ । ସବୁ ସେପରି ଝୁଲି ରହିଲେ । ତା ପରେ ଛୁରୀ, କଣ୍ଟା, ବହି, ପେନ୍‌ସିଲ ଓ ଅନେକ ଛୋଟଛୋଟ ପଦାର୍ଥ ମଧ୍ୟ ଶୂନ୍ୟରେ ଝୁଲାଇ ଦେଲେ । ସେମାନଙ୍କର ଝୁଲା ଓ ଦୋଳାୟମାନ ଅବସ୍ଥା ଯାତ୍ରୀମାନଙ୍କ ମନରେ ବଡ଼ ଆନନ୍ଦ ଦେଲା । ଏ ଆନନ୍ଦ କୌଣସି ଲୋକ ତା ଜୀବନରେ ପାଇବା ଅସମ୍ଭବ । ମାଧ୍ୟାକର୍ଷଣ ନାହିଁ, ଯାହା ତଳେ ପକାଇ ଦେବ; ବାୟୁପ୍ରବାହ ନାହିଁ, ଯାହା କୁଆଡ଼େ ଉଡ଼ାଇ ନେବ । ଏ ଅବସ୍ଥାର ଗୋଟିଏ ଉଦାହରଣ ସେମାନେ ପୃଥିବୀବାସୀଙ୍କି ଦେବା ଅସମ୍ଭବ ।

ଆକର୍ଷଣର ଏ ପ୍ରଭାବ ଘଣ୍ଟାଏରୁ ବେଶି ସମୟ ରହିଲା ନାହିଁ । ଯାତ୍ରୀମାନେ ତେତେବେଳେ ଅଲକ୍ଷରେ ଗୋଲା ଭୂମିରେ ଠିଆ ହୋଇ

ଯାଇଥିଲେ ଏବଂ ଉଜ୍ଜଳ ସବୁ ଭୁମିରେ ଥୁଆ ହୋଇ ଯାଇଥିଲା, ତାହା ସେମାନେ ଆଦୌ ବୁଝିପାରି ନ ଥିଲେ । ସେତେବେଳେ ଗୋଲାର ଅଗ୍ରଭାଗ ଚନ୍ଦ୍ରଆଡ଼କୁ ସାମାନ୍ୟ ଖସି ଯାଇଥିଲା ଏବଂ ତଳ ଅଂଶ ପୃଥିବୀ ଆଡ଼କୁ ସେହି ପରିମାଣରେ ହଟି ଯାଇଥିଲା । ମାତ୍ର ସେମାନେ ଖାଲି ଆଖିରେ ଏ ଅବସ୍ଥାର ପରିବର୍ତ୍ତନ ଲକ୍ଷ୍ୟ କରିପାରୁ ନ ଥିଲେ । ଏଣିକି ଗୋଲା ପ୍ରତି ଚନ୍ଦ୍ରର ଆକର୍ଷଣ ଆରମ୍ଭ ହେଲା ଏବଂ ପୃଥିବୀର ଆକର୍ଷଣ ଛାଡ଼ିଗଲା । ଏମାନେ ବୁଝିପାରୁ ନ ଥିଲେ ମଧ୍ୟ ଚନ୍ଦ୍ରରେ ଗୋଲାର ପତନ ମୃଦୁ ଭାବରେ ଆରମ୍ଭ ହେଲା । ଅବିଳମ୍ବେ ଏ ଗତି ବୃଦ୍ଧି ପାଇବ ଏବଂ ଗୋଲାର ତଳଭୁମି ଚନ୍ଦ୍ର ଆଡ଼କୁ ଓ ଅଗ୍ରଭାଗ ପୃଥିବୀ ଆଡ଼କୁ ଚଳିଯିବ । ଆଉ ଏଣିକି ସଫଳତାରେ ବାଧା ଦେବାକୁ କିଛି ନ ଥିଲା । ଏଥିପାଇଁ ବାର୍ବିକେନଙ୍କ ମନରେ ସେଉଁ ଆନନ୍ଦ ଜାତ ହେଲା, ତହିଁରେ ନିକୋଲ ଓ ଆର୍ଡାନ୍ ଖୁବ୍ ଆଗ୍ରହରେ ଯୋଗ ଦେଲେ ।

ଆକର୍ଷଣର ସମସ୍ଥାନ ସମ୍ବନ୍ଧରେ ସେମାନଙ୍କ ମଧ୍ୟରେ ବହୁତ ଯୁକ୍ତିତର୍କ ପଡ଼ିଲା । ଆର୍ଡାନ୍‌ଙ୍କ ମଧୁର କଳ୍ପନାସବୁ ସମସ୍ତଙ୍କଠାରୁ ବଳି ପଡ଼ିଲା । ସେ ଖୁସିରେ ଚିତ୍କାର କରି କହିଲେ, "ଆଃ ! ପୃଥିବୀରେ ଥାଇ ମଧ୍ୟ ପୃଥିବୀର ଏ ଆକର୍ଷଣରୁ ଯେବେ ଆମେ ମୁକ୍ତ ହୋଇ ପାରନ୍ତେଇଁ, ତେବେ ଜୀବନରେ ବହୁତ ଉନ୍ନତି ଆମର ହୁଅନ୍ତା । ଜଣେ ଆଜୀବନ ବନ୍ଦୀ ଜେଲଖାନାରୁ ମୁକ୍ତ ହେଲାପରି ଆମକୁ ଲାଗନ୍ତା । କାର୍ଯ୍ୟକର ହାତ ଗୋଡ଼ କ୍ଳାନ୍ତ ହୋଇ ଯିବାର ଭୟ ଆଉ ରହନ୍ତା ନାହିଁ । କେବଳ ହାତ ଗୋଡ଼ ହଲାଇ ପୃଥିବୀ ଉପରେ ଉଡ଼ି ବୁଲିବା ପାଇଁ ଗୁଡ଼ିଏ ଲୋକ ଆମମାନଙ୍କର, ଦୈହିକ ଶକ୍ତି ୧୫୦ ଗୁଣ ବୃଦ୍ଧି ପାଇବା ଆବଶ୍ୟକ ବୋଲି ଅନେକେ ହିସାବ କରିଅଛନ୍ତି । ମାତ୍ର

ଆକର୍ଷଣ ବେଗ ନ ଥିଲେ କେବଳ ଇଚ୍ଛା କଲା ମାତ୍ରକେ ଆମେ ଆକାଶକୁ ଉଡ଼ି ଯାଉଥାନ୍ତୁ । ପାରସରୁ ଏକା ନିଶ୍ୱାସରେ ଉଡ଼ି ଯାଇ ନିଉୟର୍କରେ ପଡ଼ୁଥାନ୍ତୁ ।”

ନିକୋଲ ହସି ହସି କହିଲେ, “ତା’ ହେଲେ ତ ଜଗତର ସାମାଜିକ ପରିସ୍ଥିତି ମୁହୂର୍ତ୍ତକେ ବଦଳି ଯାଆନ୍ତା ।”

ମାଇକେଲ କହିଲେ, “ତା’ ହେଲେ ଚାଲ ଏ ଓଜନକୁ ଧ୍ୱଂସ କରିବା । ଭାରି ହୋଇ ଆଉ କିଛି ରହିବ ନାହିଁ । କେନ୍, ସ୍କ୍ରୁଜାକ୍, ଜିଇଣ୍ଡ୍ରଲସ୍, ଜ୍ୟାକ୍ ପ୍ରଭୃତି କୌଣସି ଯନ୍ତ୍ର ଆଉ ଦରକାର ପଡ଼ିବ ନାହିଁ ।

ବାର୍ବିକେନ୍ କହିଲେ, “ ଭଲ କଥା କହିଲ ! ଯଦି କୌଣସି ଜିନିଷର ଓଜନ ନ ଥିବ, ସେ ଜିନିଷ ଆଉ ସ୍ୱସ୍ଥାନରେ ରହି ପାରିବ ନାହିଁ । ଏପରି କି ଟୋପି ଆଉ ତୁମ ମୁଣ୍ଡ ଉପରେ ରହି ପାରିବ ନାହିଁ । ଘରର ଇଟା ପଥର ଖଣ୍ଡମାନ ଓଜନ ଅଭାବରେ ସ୍ୱସ୍ଥାନରେ ନ ରହିବାରୁ ଘରଟିଏ ଆଉ ତୋଳାଯାଇ ପାରିବ ନାହିଁ । ଜାହାଜ ଆଉ ସମୁଦ୍ରରେ ଭାସି ପାରିବ ନାହିଁ । ସାଗରରୁ ଉଠୁଥିବା ଚାଳକଛି ସମ ତରଙ୍ଗରାଶି ଆକର୍ଷଣ ଅଭାବରେ ଆକାଶକୁ ଉଡ଼ିଯିବେ ଏବଂ କିନାକେତେ ପରେ ସାଗର ଶୁଷ୍କ ହୋଇଯିବ । ଶେଷରେ ଯେଉଁ ମେଘ ଖଣ୍ଡମାନ ଓ ବାୟୁରାଶି ଆମ୍ଭମାନଙ୍କୁ ଅବିରତ ରକ୍ଷା କରୁଛନ୍ତି, ତାହା କେବଳ ଆକର୍ଷଣ ପ୍ରଭାବରେ ନଚେତ୍ ସେମାନେ ମହାଶୂନ୍ୟରେ ଲୀନ ହୋଇ ଯାଆନ୍ତେ ।”

ଅର୍ଡାନ୍ ଟିକିଏ ଦୁଃଖ କରି କହିଲେ, ‘ବାର୍ବିକେନ ! ତୁମେ ଖାଲି ସବୁବେଳେ ଏହିପରି ଭୟାବହ କଥାଗୁଡ଼ାଏ କହ ଏବଂ ଖାଣ୍ଟି ସତ୍ୟଗୁଡ଼ାଏ କହି ମନର ମଧୁର କଳ୍ପନାସବୁ ଭାଙ୍ଗି ଦୂନା କରିଦିଅ ।

ବାର୍ବିକେନ୍ ଟିକିଏ ମୃଦୁହସା ଦେଇ କହିଲେ, "ମାତ୍ର ଚନ୍ଦ୍ରରେ ଆକର୍ଷଣର ଜୋର ଏତେ ବେଶି ନୁହେଁ । ପୃଥିବୀରେ ଜିନିଷର ଓଜନ ଯେତେ, ଚନ୍ଦ୍ରରେ ତା'ର ଛଅ ଭାଗରୁ ଭାଗେ ।"

ଆର୍ଡ଼ାନ୍—"ଏ କଥା କଣ ଆମେ ବୁଝି ପାରିବା ?"

ବାର୍ବିକେନ୍—"ନିଶ୍ଚୟ ! ଆମର ୪୦୦ ପାଉଣ୍ଡ ବା ୨୦୦ ସେର ଓଜନର ଜିନିଷ ସେଠାରେ ୭୦ ପାଉଣ୍ଡ ବା ୩୦ ସେର ହେବ ।"

ଆର୍ଡ଼ାନ—"ଆମ ଦେହର ଓଜନ କମି ଯିବ ନାହିଁ ତ ?"

ବାର୍ବିକେନ—"ନା, ତା ହେବ ନାହିଁ । ତେବେ ତୁମେ ପୃଥିବୀରେ ଏକ ଗଜ ଡେଇଁଲେ ସେଠାରେ ଛଅ ଗଜ ଡେଇଁ ପାରିବ ।"

ନିକୋଲ୍—"ନିଶ୍ଚୟ ! ଆଉ ଗୋଟିଏ ଅଧିକ କଥା ଏହି ଯେ, ଗ୍ରହର ଆକୃତି ଅନୁସାରେ ମନୁଷ୍ୟର ଆକୃତି ହେଉଥିବାରୁ ଚନ୍ଦ୍ର-ବାସୀଙ୍କ ଉଚ୍ଚତା ଏକ ଫୁଟରୁ ବେଶି ହେବ ନାହିଁ ।"

ଆର୍ଡ଼ାନ୍—"ତାହେଲେ ଲିଲିପୁଟିଆ ଗୁଡ଼ାଏ ! ମୁଁ ଗଲେ ସେଠାରେ ଗଲିଭର ବନିବି ? ତାହେଲେ ସୌର ଲୋକରେ ଭ୍ରମଣ କଲେ ଏହି ସୁଯୋଗ ମିଳିବ ।"

ବାର୍ବିକେନ—"ତୁମେ ଯଦି ଗଲିଭର ହେବାକୁ ଚାହଁ, ତେବେ ପୃଥିବୀଠାରୁ ଛୋଟ ଛୋଟ ଗ୍ରହ ବୁଧ, ଶୁକ୍ର, ମଙ୍ଗଳ ଏହି-ମାନଙ୍କୁ ଦେଖିବା ଦରକାର; କିନ୍ତୁ ବଡ଼ ବଡ଼ ଗ୍ରହ ବୃହସ୍ପତି, ଶନି, ଇନ୍ଦ୍ର, ( ଇଉରେନସ୍) ବରୁଣ (ନେପ୍‌ଚ୍ୟୁନ୍), ଏମାନଙ୍କୁ ଦେଖିବାକୁ

ଇଚ୍ଛା କର ନାହିଁ । ତାହେଲେ ତୁମେ ସେଠାରେ ଲମ୍ବ ପ୍ରଷ୍ଠିଅ ପାଲଟି ଯିବ ।"

ଅର୍ଜୁନ—"ସୂର୍ଯ୍ୟଲୋକକୁ ଗଲେ ?"

ବାର୍କେନ—"ସେଠାରେ ସବୁଠି ସୂର୍ଯ୍ୟର ଘନତ୍ୱ ପୃଥିବୀର ଘନତ୍ୱଠାରୁ ଚାରିଗୁଣ କମ୍, ତଥାପି ତା'ର ପରିମାଣ ପୃଥିବୀଠାରୁ ୧୩୨୪ ହଜାର ଗୁଣ ବେଶି ଏବଂ ଆକର୍ଷଣ ସତେଇଶ ଗୁଣ ବେଶି । ଏହି ଅନୁପାତରେ ସେଠାରେ ଜଣେ ଲୋକର ଉଚ୍ଚତା ଦୁଇଶହ ଫୁଟରୁ କମ୍ ହେବ ନାହିଁ ।"

ଅର୍ଜୁନ—"ତା ତୁଳନାରେ ଆମେ ଗୋଟିଏ ଗୋଟିଏ ବାମନ । ଅଚ୍ଛା, ଆମେ ସୂର୍ଯ୍ୟଲୋକକୁ ଗଲେ ସବୁ କିଛି ଗୁଳାଗୁଳି ସାଙ୍ଗରେ ନେଇ, ତେବେ ସେ ରାକ୍ଷସମାନଙ୍କୁ ଆକ୍ରମଣ କରି ପାରିବୁ ।"

ବାର୍କେନ—"ମନ୍ଦ ନୁହେ । ତେବେ ତୁମ ଗୁଳି ଗୁଳାର ସେଠାରେ କୌଣସି ଫଳ ହେବ ନାହିଁ । ତାହା ଛାଡ଼ିଲେ ମିନିଟକ ମଧ୍ୟରେ ତଳେ ପଡ଼ିଯିବ । କାରଣ ସେହି ବିଶାଳ ଗ୍ରହରାଜ ଦେହରେ ଆକର୍ଷଣର ଜୋର ଏତେ ବେଶି ଯେ, ସବୁଦିନ ପାଉଣ୍ଡ ଓଜନର ଜିନିଷ ସେଠାରେ ୧୯୩୦ ପାଉଣ୍ଡ ହେବ । ତୁମ ଟୋପିର ଓଜନ ୨୦ ପାଉଣ୍ଡ ହେବ ଏବଂ ସିଗାରେଟର ଓଜନ ଅଧପାଉଣ୍ଡ ହେବ । ତୁମେ ସୂର୍ଯ୍ୟଲୋକରେ ଯେବେ ଯାଇ ପଡ଼ିବ, ତେବେ ତୁମ ଓଜନ ୫୦୦୦ ପାଉଣ୍ଡ ହୋଇଯିବ । ତୁମେ ଆଉ ଉଠି ପାରିବ ନାହିଁ ।"

ଅର୍ଜୀନ—"ତାହେଲେ ମୁଁ ଗୋଟାଏ ଜେନ୍ ସାଙ୍ଗରେ ନେବ । ଏକ କପ୍ ଟି ମୋ ତୁଣ୍ଡକୁ ନେବାପାଇଁ ଜେନ୍ ଦରକାର ହେବ ।"

ସମସ୍ତେ ଏହା ଶୁଣି ହସି ଉଠିଲେ ।

---

—୪୦—

## ଚେଷ୍ଟାର ପରିଣାମ

ଗୋଲ ନିଜ ଜୋର୍‌ରେ ସମାକର୍ଷଣ ମଣ୍ଡଳ ନିଶ୍ଚୟ ପାର ହେବ ଓ ଲକ୍ଷ୍ୟ ସ୍ଥାନରେ ନିଶ୍ଚୟ ପହଞ୍ଚିବ, ଏ ବିଷୟରେ ବାର୍ବିକେନ୍‌ଙ୍କର କୌଣସି ସନ୍ଦେହ ନ ଥିଲା । ତେଣୁ ଏହା କେବେହେଁ ପୃଥିବୀକୁ ଫେରି ଯିବ ନାହିଁ କିମ୍ବା ସମାକର୍ଷଣ ମଣ୍ଡଳରେ ଅଚଳ ହୋଇ ପଡ଼ିବ ନାହିଁ । କେବଳ ଏତିକି ଭାବିବାର ବିଷୟ ଥିଲା, ଏହା ଉପରି ଚନ୍ଦ୍ରର ଆକର୍ଷଣ ପାଇ ଲକ୍ଷ୍ୟ ସ୍ଥଳରେ ଯାଇ ପହଞ୍ଚିବ । ଚନ୍ଦ୍ରର ଆକର୍ଷଣ ଯଦିଓ ଛଅଗୁଣ କମ, ତଥାପି ଛବିଶ ହଜାର ମାଇଲ ଦୂରରୁ ଆକୃଷ୍ଟହୋଇ ତା ଦେହରେ ପଡ଼ିବା କିଛି ସହଜ କଥା ନୁହେ । ଏପରି ଭୟଙ୍କର ପତନ ପାଇଁ ଆଗରୁ ସତର୍କ ରହିବା ଉଚିତ । ସେଥିପାଇଁ ଦୁଇଟି ଉପାୟ କରାଯାଇ ପାରେ । ପ୍ରଥମରେ ପତନର ଧକ୍କାକୁ ଉପରି ଦବାଇବାକୁ ହେବ ଓ ଦ୍ୱିତୀୟରେ ସେ ଧକ୍କାର ଜୋରକୁ ଉପରି ଅନ୍ୟ ଦଗକୁ ଘୁରାଇ ଦିଆଯିବ । ତାହେଲେ ଧକ୍କା ବିଶେଷ କ୍ଷତି କରି ପାରିବ ନାହିଁ ।

ଧକ୍କା ଦବାଇବା ପାଇଁ ଅଉ କୌଣସି ପ୍ରତିକାର ସେ ଅବସ୍ଥାରେ କରାଯାଇ ପାରିବ ନାହିଁ । କାରଣ ଯାତାବେଳେ ଯେଉଁ

ଚଳନ୍ତି ପାଣିର ଗଦା ସେ ବ୍ୟବହାର କରିଥିଲେ, ଆଜି ତାହା ଗୋଲା ଭିତରେ ନ ଥିଲା । କେବଳ କାଠର ସଚଳ ଫର୍ମଟି ଥିଲା । ପାଣି ନ ଥିଲେ ସେ ଫର୍ମର କୌଣସି ମୂଲ୍ୟ ନାହିଁ । ତେଣୁ ଏ ସମୟରେ ଧକ୍କାକୁ ସମ୍ଭାଳିବା କଳ୍ପନା କରିସାରି ପାରିଲା ନାହିଁ । କେବଳ ତା' ଭିତରେ ଥିବା ଯେଉଁ ଲୁହାର ସ୍ପ୍ରିଙ୍ଗ୍ ସବୁ ଭାଙ୍ଗି ରୁଜି ଯାଇଥିଲା, ସେଗୁଡ଼ିକ ସଜାଡ଼ି ଖଞ୍ଜିରଖିଲେ ଏବଂ ତା ଉପରେ କାଠର ଥାଳଟି ଯୋଡ଼ିଦେଲେ ଚନ୍ଦ୍ରର ଧକ୍କାକୁ ସେ ସମ୍ଭାଳିପିବ ବୋଲି ଆଶା-କଲେ । ତେଣୁ ତନ୍ନହେଁ ସେ କାମରେ ଲାଗିଗଲେ । ଖୁବ୍ କମ୍ ସମୟ ଭିତରେ କାମଟି ହୋଇଗଲା ।

ମାତ୍ର ଏଥିରୁ ଆଉ ଗୋଟିଏ ନୂତନ ଅସୁବିଧା ଜାତହେଲା । ଯେଉଁ ତଳ ଝଳା କବାଟଦେଇ ସେମାନେ ପୃଥିବୀକୁ ଦେଖୁଥିଲେ ଏବଂ ଏଣିକି ଗୋଲାର ତଳଭାଗ ଚନ୍ଦ୍ର ଆଡ଼କୁ ଢଳିପଡ଼ିଲେ ତାକୁ ପୂର୍ଣ୍ଣ ଭାବରେ ଦେଖି ପାରିବେ ବୋଲି ଭାବିଥିଲେ, ତାହା ଏହାଦ୍ୱାରା ଅବରୁଦ୍ଧ ହୋଇଗଲା । ଯାହାହେଉ ସେ ପର୍ଯ୍ୟବେକ୍ଷଣ ତ୍ୟାଗ କରିବାକୁ ସେମାନେ ବାଧ୍ୟହେଲେ । ଅବଶ୍ୟ ପାର୍ଶ୍ୱ କବାଟ ସାହାଯ୍ୟରେ ସେମାନେ ଚନ୍ଦ୍ରକୁ ଭଲ ଭାବରେ ଦେଖିପାରିବେ ବୋଲି ଆଶା କଲେ ।

ଏ କାର୍ଯ୍ୟ ଶେଷ ହେବାକୁ ଘଣ୍ଟାଏ ଲାଗିଗଲା । ଦ୍ୱିପ୍ରହର ସମୟରେ କାର୍ଯ୍ୟ ଶେଷକରି ବାର୍ବେନ ଗୋଲା କୁଆଡ଼କୁ ଚାଲିଛି, ତାହା ଲକ୍ଷ୍ୟ କରିବାରେ ଲାଗିଲେ । ତାହା ସେପର୍ଯ୍ୟନ୍ତ ଆଶାନୁରୂପ ଚାଲି ନ ଥିଲା; କିନ୍ତୁ ଚନ୍ଦ୍ରସଙ୍ଗେ ସମାନ୍ତର କରି ଗୋଟିଏ ପଥରେ ଗତିକଲା ପରି ବୋଧ ହେଉଥିଲା । ବିମଳ ଚନ୍ଦ୍ର ସ୍ନିଗ୍ଧ ଆଲୋକ-

ମାଳାରେ ପ୍ରଶାନ୍ତ ନକ୍ଷେତ୍ରବକ୍ଷକୁ ଉଦ୍ଭାସିତ କରି ମନୋହର ଶୋଭା ସୃଷ୍ଟି କରୁଥିଲେ । ବିଧାତାଙ୍କ ବିରାଟ ଅଗ୍ନେୟ ଗୋଲକ ବିପରୀତ ଦିଗରୁ ଚନ୍ଦ୍ରକୁ ନିଜର ଅଗ୍ନିମୟ କିରଣରାଶିରେ ବୁଡ଼ାଇ ଦେଉଥିଲେ । ମାତ୍ର ଏ ଅବସ୍ଥା ଯାତ୍ରୀମାନଙ୍କ ପକ୍ଷରେ ବଡ଼ ଉଦ୍‌ବେଗର କାରଣ ହେଲା ।

ଆମ୍ବା ସଭାରେ ନିକୋଲ୍‌ଙ୍କୁ ଅର୍ଡାନ ଜବାବ ଦେଇଥିଲେ ଯେ, ଚନ୍ଦ୍ରରେ ପଡ଼ିବା ପୂର୍ବରୁ ସେ ହାଉଇମାନ ଛାଡ଼ି ଗୋଲାପତନର ବେଗକୁ ବହୁପରିମାଣରେ କମାଇ ଦେଇ ପାରିବେ । ବାର୍ବିକେନ୍ ସେଥିପାଇଁ କୋଡ଼ିଏଟା ପର୍ଯ୍ୟନ୍ତ ହାଉଇ ବାଣ ଲମ୍ବା ବାକ୍ସରେ ପୂରାଇ ଆଣି ଥିଲେ । ତାହା ସେମାନେ ତଳ ଜଳାକବାଟି ପଟେ ସଜାଇ ରଖିଲେ । ଯଥା ସମୟରେ ସେଗୁଡ଼ିକ ଗୋଟାକ ପରେ ଗୋଟାଏ ଚନ୍ଦ୍ର ଅଭିମୁଖରୁ ଛାଡ଼ିବେ । ତା'ହେଲେ ପତନର ବେଗ ବହୁତ କମିଯିବ । ଏ କାମ ଶେଷ କରି ସେମାନେ ଅବସ୍ଥାକୁ ଖାଲି ଅପେକ୍ଷା କରି ରହିଲେ ।

ଏ ମଧ୍ୟରେ ଗୋଲା ଚନ୍ଦ୍ରର ଖୁବ୍ ନିକଟବର୍ତ୍ତୀ ହେଲା । ଚନ୍ଦ୍ରର ଆକର୍ଷଣ ପ୍ରଭାବ ତା ଉପରେ ସମ୍ପୂର୍ଣ୍ଣରୂପେ ପଡ଼ିଲା । ମାତ୍ର ଗୋଲାର ତଳଭାଗ ଚନ୍ଦ୍ରଅଡ଼କୁ ନ ରହି ବରାବର ତେର୍ଚ୍ଛା ରହିଲା । ଗୋଲାର ଜୋର ଓ ଚନ୍ଦ୍ରର ଆକର୍ଷଣ ବେଗ, ଏ ଉଭୟଙ୍କ ମିଳନରେ ଗୋଟାଏ ନୂତନ ଶକ୍ତି ଜାତ ହେଲା, ଯଦ୍ଦ୍ୱାରା ଗୋଲା ଗୋଟାଏ ସ୍ୱତନ୍ତ୍ରପଥ ଧରି ଗତି କଲାପରି ସୂଚନା ଦେଖାଗଲା । ବାର୍ବିକେନଙ୍କ ଉଦ୍‌ବେଗ ଏଥିରେ କାହିଁକି କ'ଣ । ଅନ୍ତତଃ ଗ୍ରହ ମଣ୍ଡଳରେ ଏପରି ଗୋଟାଏ ଅଭିନବ ଶକ୍ତି ଅଛି ବୋଲି ସେ ଆଗରୁ କଳ୍ପନା କରିପାରି ନ ଥିଲେ । ଗୋଲା ସମ୍ବନ୍ଧରେ ସେ ମୋଟେ ତିନୋଟି କଥା ଅନୁମାନ କରିଥିଲେ । ପ୍ରଥମରେ, ଗୋଲା ଚନ୍ଦ୍ରରେ ପଡ଼ିବ, ନଚେତ୍ ପୃଥିବୀକି ଫେରି

ଆସିବ, ଅଥବା ସମାକର୍ଷଣ ଅଞ୍ଚଳରେ ଅଚଳ ଅବସ୍ଥାରେ ପଡ଼ିଯିବ । କିନ୍ତୁ ଏପରି ଗୋଟାଏ ଚତୁର୍ଥ କଥାର ସମ୍ଭାବନା, ଯାହା ବିଧାତାଙ୍କ ଅଶେଷ କରୁଣାରେ ପୂର୍ଣ୍ଣ, ତାହାକୁ କିଏ କଳ୍ପନା କରି ପାରିବ ?

କଠୋରହଣ୍ଡଲ୍ସ ବାର୍ବିକେନ ଓ ତାଙ୍କ ସଙ୍ଗୀମାନେ ଏହି ଅଭାବନୀୟ ଅବସ୍ଥାର ସମ୍ମୁଖୀନ ହେବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟାକଲେ । ଗୋଲାର ଗତି ବିଷୟରେ ସେମାନଙ୍କ ଭିତରେ ନାନାବିଧ ଯୁକ୍ତିତର୍କ ଚାଲିଲା । ତୋପ ମୁହଁ ସମକୋଣରେ ନ ଥିଲା, ବାରୁଦର ଜୋର ବେଶି ହେଲା, ସେମାନଙ୍କର ବାଟରେ ଅଳ୍ପ ଅଳ୍ପ ବହୁ ବିଳମ୍ବ ଘଟିଲା, ଏପରି ଅନେକ ଯୁକ୍ତି ନିକୋଲ୍ ସାହେବ କଲେ । ମାତ୍ର ବାର୍ବିକେନ ତାହା କିଛି ମାନିଲେ ନାହିଁ । ସମସ୍ତ ଠିକ୍ ଭାବରେ ଚାଲିଛି ବୋଲି ସେ ଦୃଢ଼ଭାବରେ ମତଦେଲେ । ଶେଷରେ ଅର୍ଡାନ ନିଷ୍ପତ୍ତି କରି-ଦେଲେ ଯେ, ସେମାନଙ୍କର ଗତି ଯେତେବେଳେ ଆରମ୍ଭ ହୋଇଛି, ତାହା ନିଶ୍ଚୟ କୌଣସିଠାରେ ଶେଷ ହେବ । ତାହା ଚନ୍ଦ୍ରଦେହରେ ହେଉ ବା ଅନ୍ୟ କୌଣସି ଗ୍ରହରେ ହେଉ । ବାର୍ବିକେନ କିନ୍ତୁ ଭବିଷ୍ୟତ ପାଇଁ ବ୍ୟାକୁଳ ହେଉ ନ ଥିଲେ । ବହୁ ଆୟାସସାଧ୍ୟ, ବହୁ ହିସାବ ଗଣନାରେ ସମାଧାନ ଗୋଲାର ଅବସ୍ଥା ଏପରି ହାଙ୍କ ହେଲା, ଏଥିପାଇଁ ତାଙ୍କ ଦୁର୍ଭାବନାର ସୀମା ରହିଲା ନାହିଁ ।

ଏ ମଧ୍ୟରେ ଗୋଲା ଚନ୍ଦ୍ରକୁ ପାର୍ଶ୍ୱରେ ରଖି ବସିକରି ଚାଲିଲା । ଚନ୍ଦ୍ରର ଅନେକ ଚିହ୍ନକୁ ଲକ୍ଷ୍ୟ କରି ବାର୍ବିକେନ ହିସାବ କରି ଦେଖିଲେ ଯେ, ଗୋଲା ଚନ୍ଦ୍ରଠାରୁ ସମାନ ଦୂରରେ ବସିକରି ଚାଲିଛି । ତେଣୁ ଗୋଲା ଯେ ଚନ୍ଦ୍ରରେ ପଡ଼ିନାହିଁ, ଏହା ତାଙ୍କର

ବଳିଷ୍ଠ ପ୍ରମାଣ । ଗୋଲାଠାରୁ ଚନ୍ଦ୍ରର ଦୂରତା ମୋଟେ ଛଅ ହଜାର ମାଇଲ । ତେଣୁ ଏହି ଦୂରତାରେ ରହି ମଧ୍ୟ ଗୋଲା ଚନ୍ଦ୍ରର ପାର୍ଶ୍ୱରେ ଘୂରୁ ଘୂରୁ ତାର ନିକଟବର୍ତ୍ତୀ ହୋଇଯାଇ କୌଣସିଠାରେ ପଡ଼ିଯିବାର ସମ୍ଭାବନା ଅବଶ୍ୟ ଥିଲା ।

ଯାତ୍ରୀମାନେ ଆଉ ଏ ଅବସ୍ଥାରେ କିଛି ନ କରି ପାରି କେବଳ ଚନ୍ଦ୍ରର ଉପରିଭାଗକୁ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । ସୂର୍ଯ୍ୟ କିରଣ ସଂପାତରେ ତାର ସମସ୍ତ ଅଂଶ ଝଲମଲ ହେଉଥିବାରୁ ଉଚ୍ଚ ନୀଚ ସମସ୍ତ ସ୍ଥାନ ସମତଳ ଦେଖା ଯାଉଥିଲା । ସେମାନେ ସଂନ୍ଧ୍ୟା ୮ଟା ପର୍ଯ୍ୟନ୍ତ ଏହି ଅବସ୍ଥା ବରାବର ଲକ୍ଷ୍ୟ କଲେ । ଚନ୍ଦ୍ର ତାଙ୍କୁ ଏତେ ବଡ଼ ଦେଖାଯାଉଥିଲା ଯେ, ଆକାଶର ଅଧା ତା ମଣ୍ଡଳ ଦ୍ୱାରା ଢାଙ୍କି ହୋଇ ପଡ଼ୁଥିଲା । ସେତେବେଳକୁ ଚନ୍ଦ୍ରଠାରୁ ସେମାନଙ୍କ ଦୂରତା ମୋଟେ ୨୧୦୦ ମାଇଲ । ସେତେବେଳେ ଗୋଲାର ଗତି ସେକେଣ୍ଡକେ ୨୦୦ ଗଜ କିମ୍ବା ଘଣ୍ଟାକେ ପ୍ରାୟ ୫୧୦ ମାଇଲ । କେନ୍ଦ୍ରାପସାରଣୀ ଶକ୍ତି (centripetal force) ପ୍ରଭାବରେ ଗୋଲାର ତଳ ଭାଗ ଚନ୍ଦ୍ର ଆଡ଼କୁ ତଳ ପଡ଼ୁଥାଏ । ମାତ୍ର କେନ୍ଦ୍ରାପସାରଣୀ ଶକ୍ତି (certrifugal force) ତହିଁରେ ଗୁରୁତର ଭାବରେ ବାଧା କରୁଥାଏ । ତେଣୁ ଏପରି ସମ୍ଭାବନା ହେଲା ଯେ, ଗୋଲା ସରଳ-ରେଖାରେ ଗତି କରୁଥିଲେ ମଧ୍ୟ କୌଣସିଠାରେ ବକ୍ର ଗତି କରିବା ସମ୍ଭବ ।

ବାର୍ବିକେନ ତାଙ୍କ ଅମୀମାଂସିତ ପ୍ରସଙ୍ଗକୁ ମୀମାଂସା କରିବା ପାଇଁ ବରାବର ଲାଗିପଡ଼ିଲେ । ଘଣ୍ଟାକୁ ଘଣ୍ଟା ନିଷ୍ଫଳରେ ଛୁଟିବାକୁ ଲାଗିଲା । ଗୋଲା ଚନ୍ଦ୍ରର ଅତ୍ୟନ୍ତ ନିକଟକୁ ଗଲା । ମାତ୍ର ତାହା ଚନ୍ଦ୍ରକୁ ସ୍ପର୍ଶ କରି ପାରିବ ନାହିଁ ବୋଲି ସଫା ଜଣା ପଡ଼ି ଗଲା ।

ବାର୍ବିକେନ ତାଙ୍କ ସନ୍ଦେହର ଗୋଟାଏ ମୀମାଂସା କରି ବନ୍ଧୁମାନଙ୍କୁ ବୁଝାଇ ଦେଲେ ଯେ, ବାଟରେ ଅସ୍ୱୁ ଅସ୍ୱୂ ପ୍ରଥମ ଦିନ ସେମାନେ ଯେଉଁ ଦ୍ୱିତୀୟ ଚନ୍ଦ୍ରର ସମ୍ମୁଖୀନ ହୋଇଥିଲେ, ତାହାଦ୍ୱାରା ଗୋଲାର ଗତି ସାମାନ୍ୟ ଭାବରେ ପ୍ରଭାବିତ ହେବାରୁ ଏପରି ଅବସ୍ଥା ଜାତ ହୋଇଅଛି । ୨, ୫୨, ୦୦୦ ମାଇଲ ଦୂରତାରେ ଏ ପ୍ରଭାବ କିଛି କମ୍ ନୁହେଁ ।

---

—ନଅ—

## ଚନ୍ଦ୍ର ପର୍ଯ୍ୟବେକ୍ଷଣ

ଗୋଲା ଲକ୍ଷ୍ୟ ଭ୍ରଷ୍ଟ ହେବାର ଯେଉଁ କାରଣ ବାର୍ବିକେନ ବାହାର କଲେ ତାହା ଯଥାର୍ଥ । ତାହା ଯେତେ ସାମାନ୍ୟ ଓ ନଗଣ୍ୟ ହେଲେ ମଧ୍ୟ ଏତେଦୂର ପଥରେ ଗୋଲାର ଗତିରେ ସେ ପ୍ରଭାବ ବିସ୍ତାର କରିବ, ତାହା କିଛି କମ୍ ନୁହେ । ତେଣୁ ଗୋଲା ଲକ୍ଷ୍ୟଭ୍ରଷ୍ଟ ହେବା ସ୍ୱାଭାବିକ । ଏତେ ବଡ଼ ବୈଜ୍ଞାନିକଙ୍କ ଚେଷ୍ଟା ଶେଷରେ ଏପରି ଗୋଟାଏ ଗତି ଧରିବ ବୋଲି କିଏ ଜାଣିଥିଲା ? ଗୋଟାଏ କୌଣସି ଅପ୍ରତ୍ୟାଶିତ କାରଣ ନ ଘଟିଲେ ଏହା ଯେ ଚନ୍ଦ୍ରରେ ଯାଇ ପଡ଼ିବ, ଏପରି ଆଶା କରାଯାଇ ପାରିଲା ନାହିଁ । ତେଣୁ ଯାତ୍ରୀମାନେ ଭାବିଲେ ଯେ, ସେମାନେ ଚନ୍ଦ୍ରମଣ୍ଡଳର କରେ କରେ ଯାଇ ଅନେକ ଅନାବିଷ୍କୃତ ତଥ୍ୟ ସଂଗ୍ରହ କରି ପାରିବେ ଓ ତଦ୍ୱାରା ଆତ୍ମପ୍ରସାଦ ଉପଭୋଗ କରିବେ । ଏ ଧାରଣା ସେମାନଙ୍କ ମନରେ ବହୁତ ଆନନ୍ଦ ଦେଲା, ମାତ୍ର ସେମାନଙ୍କର ଭବିଷ୍ୟତ ଅବସ୍ଥା ସମ୍ବନ୍ଧରେ ସେମାନେ କୌଣସି କଳ୍ପନା କରି ପାରିଲେ ନାହିଁ । ଗୋଲାଁଭିତରେ

ସଞ୍ଚିତ ଥିବା ଅମ୍ଳଜାନ ବାଷ୍ପ ସରିଗଲେ ସେମାନେ କ'ଣ କରିବେ ? ଆଉ ଦିନ କେତେଟା ପରେ ସେମାନେ ଅନନ୍ତଶାୟୀ ହୋଇ ଗୋଲକ ଭିତରେ ପଡ଼ିଯିବେ ଏବଂ ସେମାନଙ୍କ ଲୀଳାଖେଳା ସବୁ ସାଙ୍ଗ ହେବ । ଏହା ସତ୍ତ୍ୱେ ସେମାନେ ବଞ୍ଚିରଲେ, ଯେଉଁ ଟିକକ ସମୟ ସେମାନେ ପାଇବେ, ସେହି ଟିକକ ମଧ୍ୟ ଚନ୍ଦ୍ରର ଭୌଗୋଳିକ ଓ ଅକୃତିଗତ ପର୍ଯ୍ୟବେକ୍ଷଣରେ ବ୍ୟୟ କରିବେ ।

ସେତେବେଳକୁ ଚନ୍ଦ୍ରଠାରୁ ଗୋଲକର ଦୂରତା ମୋଟେ ୨୦୦ ମାଇଲ୍ । ଏ ଦୂରତାରୁ ସେମାନେ ଚନ୍ଦ୍ରରେ ଯାହା ଦେଖିବାକୁ ପାଉଥିଲେ, ପୃଥିବୀର ଲୋକେ ଶକ୍ତିଶାଳୀ ଦୂରବୀକ୍ଷଣ ସାହାଯ୍ୟରେ ତା'ଠାରୁ ଢେର ଅଧିକ ପରିଷ୍କାର ଭାବରେ ଦେଖି ପାରୁଥିଲେ । ଲର୍ଡରସ୍‌ଙ୍କ ଦୂରବୀକ୍ଷଣଯନ୍ତ୍ର ସାହାଯ୍ୟରେ ଲୋକେ ଚନ୍ଦ୍ରକୁ ୪୮ ମାଇଲ ଦୂରରେ ଦେଖି ପାରୁଥିଲେ । ଲଙ୍ଗସ୍‌ପୀକ୍‌ରେ ଯେଉଁ ବିରାଟ ଦୂରବୀକ୍ଷଣ ଯନ୍ତ୍ର ବାର୍ବିକେନ ସ୍ଥାପନ କରିଥିଲେ, ତାହା ଚନ୍ଦ୍ରକୁ ମୋଟେ ଛଅମାଇଲ ଭିତରକୁ ନେଇ ଆସି ପାରୁଥିଲା ।

ତେଣୁ ୨୦୦ ମାଇଲ ଦୂରସ୍ଥ ଚନ୍ଦ୍ରର ଉପର ଭାଗର ଦୃଶ୍ୟାବଳି କେତେ ପରିଷ୍କାର ଦେଖାଯାଇ ପାରେ ? ଚନ୍ଦ୍ରରେ ଯେଉଁ ଖାଲି ଅଂଶସବୁ ଦେଖି ଲୋକେ ସମୁଦ୍ର ବୋଲି ସ୍ଥିର କରିଛନ୍ତି, ତାହା ଏମାନେ ଆଦୌ ଠିକ୍ କରି ପାରିଲେ ନାହିଁ । ସୂର୍ଯ୍ୟର ତୀବ୍ରୋଜ୍ଜ୍ୱଳ କିରଣ ସମ୍ପାତରେ ଉଚ୍ଚ ଜିନିଷସବୁ ଆଦୌ ଜଣା ପଡ଼ୁ ନ ଥିଲା । ପାଣି ଭିତରେ ବା ଗୋଟାଏ ପ୍ରକାଣ୍ଡ କାଚରେ ସୂର୍ଯ୍ୟ କିରଣ ପଡ଼ିଲେ ତାର ପ୍ରଖର ଉଜ୍ଜ୍ୱଳ କିରଣ ଆଡ଼କୁ ଯେପରି ଚାହିଁ ହୁଏ ନାହିଁ, ଚାହିଁ ଚାହିଁ ଆଖି ହଠାତ୍ ବୁଜି ହୋଇଯାଏ, ଏମାନଙ୍କ ଦୃଷ୍ଟି ସେହିପରି ଚନ୍ଦ୍ର ଆଡ଼କୁ ଚାହିଁଲାମାତ୍ରେ ବୁଜି ହୋଇ ଯାଉଥିଲା ।

ତେବେ ଚନ୍ଦ୍ର ସେମାନଙ୍କୁ ଗୋଟାଏ ବିରାଟ ଅଣ୍ଡା ପରି ଓ ତା'ର ଗୋଟାଏ ଛୋଟ ଅଗ୍ରଭାଗ ପୃଥିବୀ ଅଡ଼କୁ ବଳି ଥିଲା ପରି ପରବର୍ତ୍ତୀ ଜଣାଗଲା । ସୌର ଜଗତର ଗୋଟାଏ ଅଙ୍ଗରୂପେ ଗଠିତ ହେବା ପୂର୍ବରୁ ତାହା କେବଳ ଗୋଟାଏ ବାଷ୍ପର ସମଷ୍ଟି ଥିଲା ଏବଂ ଅନନ୍ତ ଶୂନ୍ୟରେ ପ୍ରବଳ ବିକ୍ରମରେ ଘୂରୁଥିଲା । ଯେତେବେଳେ ତା'ର ଅଙ୍ଗ ଗଠନ ଆରମ୍ଭ ହେଲା, ସେତେବେଳେ ତାହା ତରଳ ହୋଇ ପଡିଲା ଓ ତାର ଘୂର୍ଣ୍ଣନରେ ମନ୍ଥରତା ଆସିଲା । ଏହି ଅବସ୍ଥାରେ ସେ ପୃଥିବୀର ଆକର୍ଷଣ ଭିତରକୁ ଆସିଲାମାତ୍ରକେ ସେହି ପ୍ରଭାବରେ ଅଣ୍ଡା ଆକାର ଧାରଣ କଲା । ତେଣୁ ଗୋଟିଏ ଉପଗ୍ରହରେ ପରିଣତ ହେବାରୁ ତାର ସ୍ୱାଭାବିକ ଗୋଲତ୍ୱ ରକ୍ଷାକରି ପାରିଲା ନାହିଁ । ତାର ଭାର କେନ୍ଦ୍ର ତା ଅଙ୍ଗର କେନ୍ଦ୍ରଠାରୁ ଅଟକୁ ବଳି ଗଲା । ତେଣୁ ବୈଜ୍ଞାନିକମାନେ ମତ ଦେଇଛନ୍ତି ଯେ, ଚନ୍ଦ୍ରଦେହର ସମସ୍ତ ଜଳ ଓ ବାୟୁରାଶି ତାର ବିପରୀତ ଦିଗକୁ ଟାଣି ହୋଇ ଯାଇଛି । ସେ ଅଂଶ ପୃଥିବୀ ପୃଷ୍ଠରୁ ଆଦୌ ଦେଖା ଯାଏ ନାହିଁ ।

ଚନ୍ଦ୍ରର ସେହି ପ୍ରାଚୀନ ଗଠନ ଖୁବ କମ୍ ସମୟ ପାଇଁ ଦେଖାଗଲା । ତୁରନ୍ତ ଅଦ୍ଭୁତ ଜିନିଷ ଦେଖାଗଲା । ଗୋଲାର ଆରମ୍ଭ ବେଗ ଠାରୁ ଚନ୍ଦ୍ରର ବେଗ ଖୁବ କମ୍ ବୋଧହେଲା । ତେବେ ତାହା ଏକ୍ସପ୍ରେସ୍ ଗାଡ଼ିର ନଅଗୁଣ ବେଗ ସଙ୍ଗେ ସମାନ ହୋଇପାରେ । ଗୋଲାର ଏ ତେର୍ଚ୍ଛାଗତିରୁ ଅର୍ଡାନ୍ ଆଶାକଲେ ଯେ, ସେ ଚନ୍ଦ୍ରକୁ ଯେଉଁଠାରେ ହେଲେ ସ୍ପର୍ଶ କରିବେ । ସେ ଚନ୍ଦ୍ରର ମୋଟେ ନିକଟବର୍ତ୍ତୀ ହେବେ ନାହିଁ, ଏପରି ଆଶା କରିପାରିଲେ ନାହିଁ; ମାତ୍ର ବାର୍ବିକେନ କୌଣସି ଆଶାର ସୂଚନା ଦେଇ ନ ଥିଲେ ।

ଗୋଲା ଚନ୍ଦ୍ରର ଯେଉଁ ଅଂଶର ନିକଟବର୍ତ୍ତୀ ହେଉଥିଲା, ତାହା ଉତ୍ତର ଗୋଲାର୍ଦ୍ଧ । ଏଠାରେ ବିଶାଳ ସ୍ଥଳଖଣ୍ଡମାନ ଥିଲା ଏବଂ ଗୋଟାଏ ଗୋଟାଏ ପର୍ବତ ଏଣେ ତେଣେ ଠିଆ ହୋଇଥିଲା ।

ଅର୍ଦ୍ଧରାତ୍ର ସମୟକୁ ଚନ୍ଦ୍ର ପୂର୍ଣ୍ଣତା ପ୍ରାପ୍ତ ହେଲା । ସେମାନଙ୍କ ଗତିରେ ବିଶୃଙ୍ଖଳା ଘଟି ନ ଥିଲେ, ସେମାନେ ସେହି ସମୟରେ ଚନ୍ଦ୍ରଦେହରେ ପଡ଼ିଥାନ୍ତେ । କ୍ୟାମ୍ବ୍ରିଜ୍ ମାନ ମନ୍ଦିର ଯେଉଁ ଅବସ୍ଥା ସେ ସମୟକୁ ଧାର୍ଯ୍ୟ କରିଥିଲେ ଠିକ୍ ସେହି ଅବସ୍ଥା ଘଟିଲା । ଗଣନା ଅନୁସାରେ ଚନ୍ଦ୍ର ପୃଥିବୀର ଖୁବ ନିକଟବର୍ତ୍ତୀ ହେଲା ଏବଂ ମସ୍ତକ ଉପରେ ଅବସ୍ଥିତ ରହିଲା । ସେତେବେଳେ ଜଣେ ଲୋକ ତୋପର ତଳ ଭାଗରେ ରହିଥିଲେ ଦେଖିଥାନ୍ତା, ଚନ୍ଦ୍ର କାପର ତୋପର ମୁହଁକୁ ଢାଙ୍କି ରହିଥିଲା ।

ଏହା କହିବା ବାହୁଲ୍ୟ ଯେ, ଡିସେମ୍ବର ତା ୫ ଓ ତା ୬ ରାତିରେ ଯାତ୍ରୀମାନେ ମିନିଟିଏ ପାଇଁ ବିଶ୍ରାମ ନେଇ ନ ଥିଲେ । ଗୋଟାଏ ନୂତନ ଭୂମଣ୍ଡଳର ଏତେ ପାଖରେ ରହି ସେମାନେ କପରି ବା ବିଶ୍ରାମ ନିଅନ୍ତେ ? କେବଳ ଦେଖିବା ଛଡ଼ା ସେମାନଙ୍କର ଆଉ କୌଣସି କାର୍ଯ୍ୟ ରହିଲା ନାହିଁ । ଭୂଲୋକର ଅତୀତ ଓ ବର୍ତ୍ତମାନର ପ୍ରତିନିଧି ସେମାନେ । ସାରା ଧରଣୀର ସମସ୍ତ ଭାବରାଶି ତାଙ୍କଠାରେ କେନ୍ଦ୍ରୀଭୂତ । ସମଗ୍ର ମାନବସମାଜ ଆଜି ସେମାନଙ୍କ ଚକ୍ଷୁ ଦେଇ ଚନ୍ଦ୍ର ରାଜ୍ୟ ଓ ତା'ର ନିଗୂଢ ତତ୍ତ୍ୱମାନ ଦେଖିବାକୁ ସମର୍ଥ ହୋଇଛନ୍ତି । ତାଙ୍କ ହୃଦୟରେ ଗୋଟାଏ ଅପୂର୍ବ ଭାବ ଖେଳିଗଲା । ସେମାନେ ନୀରବରେ ଏପଟ ସେପଟ ଅନାଇଁ ବାରେ ଲାଗିଲେ ।

ସେମାନେ ଯେଉଁ ମୁହୂର୍ତ୍ତରେ ଯାହା ଦେଖୁଥିଲେ, ବାର୍ବିକେନ ତାହା ସଙ୍ଗେ ସଙ୍ଗେ ଖାତାରେ ଟିପି ଦେଉଥିଲେ । ସ୍ପଷ୍ଟ ଦର୍ଶନ ପାଇଁ ସେମାନଙ୍କ ପାଖରେ ଦୂରବୀକ୍ଷଣ ଥିଲା ଓ ପର୍ଯ୍ୟବେକ୍ଷଣ ପାଇଁ ମାନଚିତ୍ର ଥିଲା । ଏହାଛଡ଼ା ସେମାନଙ୍କ ପାଖରେ ବଡ଼ କାଚମାନ ଥିଲା । ତା' ବଳରେ ସେମାନେ ଗୋଟାଏ ଜିନିଷକୁ ଶହେ ଗୁଣ ବଡ଼ ଆକାରରେ ଦେଖି ପାରୁଥିଲେ । ସକାଳ ୩ଟା ବେଳକୁ ଦୂରତା ମୋଟେ ଶହେ ମାଇଲ ରହିଲା । ଏ ଦୂରତା ମଧ୍ୟରେ ବାୟୁମଣ୍ଡଳ ଥିଲେ ତାହା ପର୍ଯ୍ୟବେକ୍ଷଣରେ ବାଧା ଦେଇ ପାରନ୍ତା ନାହିଁ ।

---

— ଦଶ —

## ଚାନ୍ଦ୍ରୀୟ ବିଜ୍ଞାନ

ଅଗଷ୍ଟ ଜଣାଯାଇଛି ଯେ ଗୋଲା ବରାବର ଉତ୍ତର ଗୋଲାର୍ଦ୍ଧ ଅଭିମୁଖେ ଗତି କରୁଥିଲା । ଗୋଲାର ଗତି ଟେଢ଼ା ହୋଇ ନ ଥିଲେ ତାହା ଚନ୍ଦ୍ରର ଯେଉଁ କେନ୍ଦ୍ର ବିନ୍ଦୁରେ ଯାଇ ପଡ଼ିଥାନ୍ତା, ସେମାନେ ବର୍ତ୍ତମାନ ସେଠାରୁ ବହୁଦୂରରେ । ସକାଳ ଚାରିଟାବେଳକୁ ସାତଟାବେଳେ । ଉତ୍ତର ମେରୁଠାରୁ ଗୋଲାର ଦୂରତା ସେତେବେଳେ ୮୭୦ ମାଇଲ । ସେମାନେ ନିକଟବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ଏ ଦୂରତା ଢେର କମିଯିବ ବୋଲି ବାର୍ବିକେନ ମନେ କଲେ । ମାତ୍ର ଟେଲିସ୍କୋପ୍ ବ୍ୟବହାର କରିବା ଦ୍ୱାରା ଏ ଦୂରତା ଚଉଦ ମାଇଲକୁ କମି ଆସିଲା । ଲଙ୍ଗସ୍‌ପୀକ୍‌ରେ ଥିବା ଟେଲିସ୍କୋପ୍‌ରେ ଏ ଦୂରତା ଆହୁରି କମିବାର କଥା । ମାତ୍ର ପୃଥିବୀର ବାୟୁମଣ୍ଡଳ ଦୃଷ୍ଟି ଦେଖାରେ ବରାବର ବାଧା ଦେଉଥିଲା । ତେଣୁ ବାର୍ବିକେନ ଗୋଲାରେ ରହି ନିଜ ଟେଲିସ୍କୋପ୍ ସାହାଯ୍ୟରେ ଆହୁରି ସୂକ୍ଷ୍ମ ଦର୍ଶନ କରି ପାରୁଥିଲେ ।

ସେ ବଡ଼ ଗମ୍ଭୀର ସ୍ୱରରେ ବନ୍ଧୁମାନଙ୍କୁ କହିଲେ, "ବନ୍ଧୁମାନେ ! ଆମେ କୁଆଡ଼େ ଯାଉଛୁ, ମୁଁ ଜାଣେନା, ପୁଣି ଆମେ ଆଉ ପୃଥିବୀ କୁ ଦେଖି ପାରିବା କି ନାହିଁ, ତାହା ମଧ୍ୟ କହି ପାରିବି ନାହିଁ । ଯାହା ହେଉ, ଚାଲ ଆମେ ଆମ କର୍ତ୍ତବ୍ୟ କରିଯିବା, ତାହା ହେଲେ ଆମ ସହଚରମାନଙ୍କ କାମରେ ଲାଗି ପାରେ । ଅନ୍ୟାନ୍ୟ ଦୂଷିତ ଚିନ୍ତାରୁ ମନକୁ ମୁକ୍ତ କରି ଚାଲ, ଆମେ ପର୍ଯ୍ୟବେକ୍ଷଣରେ ଲାଗିବା । ଆମ୍ଭେମାନେ ଜ୍ୟୋତିର୍ବିତ୍, ଏ ଗୋଲକଟି ଶୂନ୍ୟରେ ଆସମାନ ଜ୍ୟୋତିର୍ବିଜ୍ଞ ମାନମନ୍ଦିର ।" ଏହାପରେ ସେମାନେ ମନକୁ ଠିକ୍ କରି ସୂକ୍ଷ୍ମ ଦର୍ଶନରେ ଲାଗିଲେ ।

ଉତ୍ତରରେ ଯେଉଁ ମେଘ ସାଗର ଅଛି, ତାହାର ବିଷୟ ସେମାନେ ଭଲ ରୂପେ ଦେଖି ପାରିଲେ ନାହିଁ, କାରଣ ଦୂରତା ତାଙ୍କୁ ବିଶେଷ ବାଧା ଦେଉଥିଲା । ସେମାନେ ମନେ କଲେ, ତାହା ଜଳ-ପୂର୍ଣ୍ଣ ସାଗର ନ ହୋଇ ବାଲି ପୂର୍ଣ୍ଣ ମରୁଭୂମି ହୋଇ ପାରେ, ସେମାନେ ତାହା ପରେ ଦେଖିବାକୁ ଚେଷ୍ଟା କରିବେ; ନିଶ୍ଚେ ନିଶ୍ଚିତ ନ ହେଲେ ମତ ଦେବେ କିପରି ? ମେଘ ସାଗରକୁ ବୈଜ୍ଞାନିକମାନେ ସନ୍ଦେହରେ ନକ୍ସାରେ ଅଙ୍କିତ କରିଛନ୍ତି । ଯାତ୍ରୀମାନେ ମନେ କଲେ, ମେଘ ସାଗର ବୋଲି ଯାହାକୁ କୁହାଯାଉଛି, ତାହା ଅଗ୍ନେୟଗିରିମାନଙ୍କରୁ ଉତ୍ପନ୍ନ ଗଳିତ ଧାତୁର ବିରାଟ ଖଣ୍ଡ ଖଣ୍ଡ ସ୍ତୂପ ବୋଲି ଅନେକେ ଅନୁମାନ କରୁଛନ୍ତି । ଗୋଲା ତା'ର ନିକଟବର୍ତ୍ତୀ ହେଉଥିଲା ଏବଂ ସେ ସ୍ତୂପମାନଙ୍କର ଶୃଙ୍ଗ ସବୁ ସଫା ଜଣା ପଡ଼ୁଥିଲା । ସେମାନଙ୍କ ସମ୍ମୁଖରେ ଗୋଟାଏ ବଡ ପର୍ବତ ଆଲୋକରେ ଚକ୍ ଚକ୍ ହେଉଥିଲା ଏବଂ ସୂର୍ଯ୍ୟାଲୋକରେ ଏକବାରେ ବୁଡ଼ି ଯାଇଥିଲା ।

ସେ ପର୍ବତର ନାମ ଟୋପର କାଶସ୍ । ତାହା ୯ ଡଗ୍ରୀ ଅକ୍ଷାଂଶ ଓ ୨୦ ଡଗ୍ରୀ ଦ୍ରାଘିମା ମଧ୍ୟରେ ଅବସ୍ଥିତ ଥିଲା । ତା'ର ଉଚ୍ଚତମ ଶୃଙ୍ଗର ଉଚ୍ଚତା ଏଗାର ହଜାର ଫୁଟ । ଏ ପର୍ବତ ପୃଥିବୀ ଉପରୁ ମଧ୍ୟ ଦେଖାଯାଏ । ଜ୍ୟୋତିର୍ବିଦ୍‌ମାନେ ଏ ପର୍ବତକୁ ଅମାବାସ୍ୟା ପର ପ୍ରତିପଦା ଦିନ ଦେଖି ଏହାର ଶୃଙ୍ଗ ମାପ କରନ୍ତି । ଦକ୍ଷିଣ ଗୋଲାର୍ଦ୍ଧରେ ଏହା ପ୍ରଧାନ ଆଲୋକ ସ୍ତମ୍ଭ ପରି କାର୍ଯ୍ୟକରେ । ବୃଇଟା ସାଗର ମଧ୍ୟରେ ପ୍ରକାଣ୍ଡ ବତଘର ପରି ଦଣ୍ଡାୟମାନ ରହି ଉଭୟ ସାଗରକୁ ଉଜ୍ଜ୍ୱଳ ଅଲୋକମାଳାରେ ଭସାଇ ଦିଏ । ପୂର୍ଣ୍ଣଚନ୍ଦ୍ର ଦେହରେ ଯେଉଁ ଅତ୍ୟୁଜ୍ଜ୍ୱଳ ଦୁଇଟି ଅତ୍ୟନ୍ତ ଆଲୋକିତ ଅଂଶ ଦେଖାଯାଏ, ତାହା ଏହି ସାଗର ଦ୍ୱୟ ବୋଲି ପ୍ରତୀୟମାନ ହୁଏ । ଗତ ଗୋଟାକ ସମୟରେ ଗୋଲ ଗୋଟାଏ ବେଲୁନ୍ ପରି ଏହି ପ୍ରସିଦ୍ଧ ପର୍ବତ ଉପରେ ଝୁଲି ରହିଲା ।

ବାର୍ବିକେନ୍ ଏହି ପର୍ବତର ପ୍ରତ୍ୟେକ ଅଂଶ ଉତ୍ତମ ରୂପେ ଦେଖି ପାରିଲେ । ଏହା ଦେହରୁ ବଡ଼ଲ ଶୃଙ୍ଗ ଓ ଉପତ୍ୟକାସବୁ ତାହାର ବହୁଦୂରକୁ ବିସ୍ତୃତ ହୋଇଥିଲା । ତା ଦେହରେ ଅନେକ ନିର୍ବାପିତ ଆଗ୍ନେୟଗିରି ମଧ୍ୟ ଦେଖା ଯାଉଥିଲା । ଚନ୍ଦ୍ରର ଏହି ଗୋଲାର୍ଦ୍ଧରେ ଥିବା ଅନ୍ୟାନ୍ୟ ଆଗ୍ନେୟଗିରିପରି ଏହା ମଧ୍ୟ ଲିଭି ଯାଇଥିଲା । ଏ ସମୟରେ ଗୋଲ ଗୋଟାଏ ଅଗ୍ନିଗହ୍ୱର ଉପରେ ଝୁଲିଲା ପରି ଜଣାଗଲା । ସେଠାରୁ ପର୍ବତର ପରିଧି ଉତ୍ତମ ରୂପେ ଗୋଲାକାର ଦେଖା ଯାଉଥିଲା । ତା ପାଖରେ ଆଉ ଗୋଟାଏ ଗୋଲାକାର ବୃତ୍ତ ମଧ୍ୟ ଦେଖାଗଲା । ତା ମଧ୍ୟରେ ଧୂସର ବର୍ଣ୍ଣର ଗୋଟାଏ ପ୍ରକାଣ୍ଡ ଷେତ୍ର ପଡ଼ି ରହିଥିଲା । ତା' ଦେହରୁ ହଳଦିଆ ଆଲୋକ ବାହାରୁଥିଲା ।

ଏହା ପରେ ଗୋଲା ଆଉ ଥୋଡ଼ାଏ ଅଗ୍ରସର ହେବାରୁ ସେମାନେ ଅତି ଛୋଟ ଛୋଟ ଅସଂଖ୍ୟ ଶୈଳଶ୍ରେଣୀପୂର୍ଣ୍ଣ ଗୋଟାଏ ବିଶାଳ କ୍ଷେତ୍ର ଦେଖିବାକୁ ପାଇଲେ । ତା ମଧ୍ୟରେ ୧୨ ମାଇଲ୍ ଓସାରର ଅଳ୍ପ ଉଚ୍ଚ ଗୋଟିଏ ପର୍ବତ ଥିଲା । ଆଉ ଟିକିଏ ଦକ୍ଷିଣକୁ ଯାଇ ସେମାନେ ବହୁଦୂର ବିସ୍ତୃତ ଗୋଟାଏ ସମତଳ କ୍ଷେତ୍ର ଦେଖିଥିଲେ । ସେଥିରେ ଉଚ୍ଚା ବଡ଼ ସ୍ଥାନ ଥିଲା ପରି ଆଦୌ ବୁଝାଗଲା ନାହିଁ । ଏହାର ବିପରୀତ ଦିଗରେ ଉତ୍ତର ଆଡ଼କୁ ତରଳ ଦ୍ରବ୍ୟପୂର୍ଣ୍ଣ ଗୋଟାଏ ବିଶାଳକ୍ଷେତ୍ର ସେମାନେ ଦେଖିଲେ । ବାତ୍ୟାନ୍ଦୋଳିତ ସାଗର ବକ୍ଷ ପରି ତାହା ଭୀଷଣ ଭାବରେ ଅନ୍ଦୋଳିତ ହେଲାପରି ଦେଖାଯାଉଥିଲା ଏବଂ ହଠାତ୍ ପୁଣି ଜମାଟ ବାନ୍ଧି ଯାଉଥିଲା । ଏହି ସମସ୍ତ ଦୃଶ୍ୟର ଉପରଭାଗରେ ଅତି ଉଜ୍ଜ୍ୱଳ ଆଲୋକ ଲହଡ଼ି ଖେଳିଲା ପରି ଖେଳିଯାଇ ଚାରିଆଡ଼େ ବିଛୁରିହୋଇ ପଡ଼ୁଥିଲା । ଏହି ଅଦ୍ଭୁତ ଆଲୋକ କ'ଣ ତାହା ସେମାନେ ବହୁଚେଷ୍ଟାରେ ମଧ୍ୟ ଧରି ପାରିଲେ ନାହିଁ ।

ଏତେବେଳକୁ ଗୋଲା ଗୋଟାଏ ସମାନ ଗତି ଧରି ଚନ୍ଦ୍ରମଣ୍ଡଳକୁ ପରିକ୍ରମଣ କରିବାକୁ ଆରମ୍ଭ କଲା । ଯାତ୍ରୀମାନେ ଆଉ ଟିକିଏ ବିଶ୍ରାମ କରିବାକୁ ସମୟ ପାଇଲେ ନାହିଁ । ପ୍ରତି ମୁହୂର୍ତ୍ତରେ ନୂତନ ନୂତନ ଦୃଶ୍ୟସବୁ ଆସି ଆଖି ଆଗରେ ପଡ଼ୁଥାଏ । ତାହା ସବୁ ସେମାନେ ଦେଖିବେ ନା ବିଶ୍ରାମ କରିବେ ? ଯାହାହେଉ ଗୋଟାଏ ସମୟରେ ସେମାନେ ଆଉ ଗୋଟାଏ ପର୍ବତର ଉଚ୍ଚତମ ଶୃଙ୍ଗ ଦେଖିବାକୁ ପାଇଲେ । ବାର୍ବିକେନ୍ ମାନଚିତ୍ର ଦେଖି ତାହା ଏରାଟୋସେନ୍ସ ବୋଲି ଚିହ୍ନି ପାରିଲେ । ତାହା ଗୋଟିଏ ଗୋଲାକାର ପର୍ବତ; ଉଚ୍ଚତା ୪୫୦୦ ଫୁଟ । ସେ ପର୍ବତ ସମ୍ବନ୍ଧରେ

ସେମାନେ କେତେକ ଅଭିଜ୍ଞତା ଅର୍ଜନ କରିବାକୁ ଚେଷ୍ଟା କରୁ କରୁ ଗୋଲା ତାକୁ ଅତିକ୍ରମ କରି ଚାଲିଗଲା ।

ଏ ଅଞ୍ଚଳରେ ଯେତେ ପର୍ବତ ସେମାନେ ଦେଖିବାକୁ ପାଇଲେ, ତାହାସବୁ ଗୋଲକାର ଓ ଗୋଳିଆ ଶୃଙ୍ଗ ବିଶିଷ୍ଟ । ସେମାନେ ମନେକଲେ, କାଳକ୍ରମେ ସେ ପର୍ବତସବୁ ଗୋଟାଏ ବା ଦୁଇଟା ଗିରିପୁଞ୍ଜର ଅନ୍ତର୍ଗତ ଥିଲେ । ମାବ ବର୍ଷା ସାଗରର ସ୍ରୋତଜ ବିକ୍ଷୋଭ ଓ ଅନ୍ୟାନ୍ୟ କାରଣରୁ ତାହା ସବୁ ଏପରି ଭିନ୍ନ ଭିନ୍ନ ହୋଇ ଯାଇଛନ୍ତି ।

---

—ଏଗାର—

## ଚନ୍ଦ୍ର ମଣ୍ଡଳର ଦୃଶ୍ୟ

ସାଢ଼େ ଦୁଇଟା ସମୟରେ ଗୋଲା ୩୦ ନିରକ୍ଷ ବୃତ୍ତରେ ଯାଇ ପହଞ୍ଚିଲା । ଏତେବେଳେ ମଧ୍ୟ ସେମାନେ ଚନ୍ଦ୍ରରେ ପହଞ୍ଚିବେ ବୋଲି ଆଶାକରି ପାରିଲେ ନାହିଁ । ଗୋଲାର ଗତି ଖୁବ୍ ଧୀର ହୋଇ ଯାଇଥିଲା । ବାର୍ବିକେନ୍ ଏହାର କୌଣସି କାରଣ ସ୍ଥିର କରି ପାରିଲେ ନାହିଁ । ଚନ୍ଦ୍ରର ଏତେ ପାଖରେ ଥାଇ ଏହାର ଗତି ଖୁବ୍ ଚଞ୍ଚଳ ହେବା ଉଚିତ । ତା' ହେଲେ ଚନ୍ଦ୍ରର ଆକର୍ଷଣକୁ ତାର ବେଗ ପ୍ରତିହତ କରି ପାରନ୍ତା । ଏହା ନ ହୋଇ ଏତେ ମନ୍ଥର ଗତି କିପରି ହେଉଥିଲା, ତାହା ବୁଝି ହେଲା ନାହିଁ । ଏହାର କାରଣ ମଧ୍ୟ ଅନୁସନ୍ଧାନ କରିବାକୁ ତାଙ୍କୁ ଫୁରୁସତ୍ ନ ଥିଲା । ଚନ୍ଦ୍ରର ବିଭିନ୍ନ ନୟନମନ ହରଣକାରୀ ଦୃଶ୍ୟାବଳୀ ତାଙ୍କ ସାମନାରେ ପ୍ରତିମୁହୂର୍ତ୍ତରେ

ହସି ଯାଉଥିଲେ । ତାହା ସେମାନେ ଉପେକ୍ଷା କରିପାରିଲେ ନାହିଁ ।

ଚନ୍ଦ୍ରକୁ ଦୂରବୀକ୍ଷଣ ସାହାଯ୍ୟରେ ସେମାନେ ମୋଟେ ସାଢ଼େ ଛଅ ମାଇଲ୍ ଦୂରରେ ଦେଖି ପାରୁଥିଲେ । ଯାହା ଯାହା ସେମାନେ ଦେଖିବାକୁ ପାଇଲେ, ତାହା ତଳେ ବର୍ଣ୍ଣିତ ହେଲା ।

ବାଇଗଣି ରଙ୍ଗର ବହୁ ଆଲୋକ ମଣ୍ଡଳ ସେମାନେ ନାନା ସ୍ଥାନରେ ଦେଖିବାକୁ ପାଇଲେ । ତାହା କ'ଣ ବୋଲି କୌଣସି ବୈଜ୍ଞାନିକ ସେ ପର୍ଯ୍ୟନ୍ତ ସ୍ଥିର କରି ପାରି ନ ଥିଲେ । ସେ ଆଲୋକିତ ଅଂଶସବୁ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ । ଯୁଲିଅସ୍ ସେମିଟଙ୍କ ମତ ଯେ, ପୃଥିବୀର ସମୁଦ୍ରସବୁ ଯେବେ ଶୁଖି ଯାଆନ୍ତା, ଚନ୍ଦ୍ରଲୋକବାସୀ-ମାନେ ପୃଥିବୀରେ ବାଇଗଣି ରଙ୍ଗର ସମୀତ ଯେପରି ଦେଖିବାକୁ ପାଆନ୍ତେ, ଆମ ଆଖିରେ ସେ ରଙ୍ଗର ଅଲ୍ପଅ ସବୁ ସେହିପରି ଦେଖାଯାଏ । ସେ ଅଦ୍ଭୁତ କହ୍ଣଛନ୍ତି, ପ୍ରକାଣ୍ଡ ସମତଳ ଭୂଭାଗ, ଯାହା ସମୁଦ୍ର ବୋଲି କୁହାଯାଏ, ତାର ରଙ୍ଗ ଧୂସର ବର୍ଣ୍ଣ ଦେଖାଯାଏ । ମଧ୍ୟେ ମଧ୍ୟେ କେଉଁ କେଉଁଠାରେ ସବୁଜ ଓ ବାଦାମୀ ରଙ୍ଗର ସ୍ଥାପ ଦେଖା ଯାଉଥାଏ । ଗୋଟାଏ ଗୋଟାଏ ବୃହତ୍ ଅଗ୍ନେୟଗିରି ସେହି ରଙ୍ଗରେ ଶଜିତ ଥିଲା ପରି ଦେଖାଯାଏ ।

କେତେକ ସ୍ଥାନରେ ସବୁଜ ରଙ୍ଗ ପରିଷ୍କାର ଭାବରେ ଦେଖା-ଯାଉଥିଲା । ଏହା ସମୁଦ୍ର ଜଳର ରଙ୍ଗ ବୋଲି କେତେକ ବୈଜ୍ଞାନିକ ସ୍ଥିର କରିଥିଲେ । ମାତ୍ର ବାର୍ବିକେନ ତାକୁ ସମୁଦ୍ର ଜଳର ରଙ୍ଗ ବୋଲି ମନେ ନ କରି ଅଗ୍ନେୟଗିରିରୁ ନିଃସୃତ ଗଳିତଧାତୁ ପ୍ରବାହିତ ଅଞ୍ଚଳର ରଙ୍ଗବୋଲି ମନେ କଲେ । ଏହା ଛଡ଼ା ସେମାନେ ଅନେକ

ସ୍ଥାନରେ ନାଳବଙ୍ଗ ଦେଖିବାକୁ ପାଇଲେ । ଏହାର ଉପାଦାନ କଅଣ ବୋଲି ସେମାନେ ସ୍ଥିର କରି ପାରିଲେ ନାହିଁ ।

ଏହାଛଡ଼ା ସେମାନେ ଅଦ୍ଭୁତ ଗୋଟାଏ ଦୃଶ୍ୟ ଦେଖିବାକୁ ପାଇଲେ, ଯାହାର କାରଣ କେହି ସ୍ଥିରକରି ପାରିଲେ ନାହିଁ । ତାହା ଏହି—ଅର୍ଭାନ ଦେଖିଲେ, କେତେଗୁଡ଼ାଏ ଲମ୍ବ ଧଳାଗାର ସୂର୍ଯ୍ୟ-କିରଣ ସଂପାତରେ ଖୁବ୍ ଝଲମଲ ହେଉଥିଲା । ଏ ଗାରସବୁ ପରସ୍ପରଠାରୁ ସମାନ୍ତର ଭାବରେ ବହୁଅଞ୍ଚଳ ବ୍ୟାପି ମାଡ଼ିରହିଥିଲା । ଏହାସବୁ କୃଷଭୂମି ବୋଲି ଅର୍ଭାନ ମନେକଲେ । ମାସ ଣକୋଲ ଏ ମତକୁ ସମର୍ଥନ ନ କରି କହିଲେ, "ଏହା କି ସମ୍ଭବ ? ଏଠାରେ କ'ଣ ହାତୀଠାରୁ ଅଧିକ ବଡ଼ ବଳଦ, ପ୍ରକାଣ୍ଡ ଶାଳଗଛଠାରୁ ବଡ଼ ଲଙ୍ଗଳ ଓ ରାକ୍ଷସଠାରୁ ବଡ଼ କୃଷୀମାନେ ଅଛନ୍ତି ଯେ, ଏତେବଡ଼ କୃଷିକ୍ଷେତ୍ର ତିଆର କରିବେ ? ଏହାସବୁ କୃଷିକ୍ଷେତ୍ରର ଲଙ୍ଗଳଗାର ବା ହିଡ଼ ନୁହେ । ଏହା ଗୋଟାଏ ଗୋଟାଏ ପ୍ରକାଣ୍ଡ ଧୋଡ଼ା ବୋଲି ମୋର ମତ ।"

ବାର୍ବିକେନ ଏ ଗାର ବିଷୟରେ ବହୁତ ପର୍ଯ୍ୟବେକ୍ଷଣ କରି କହିଲେ, "ଏହା ଲଙ୍ଗଳ ଗାର ନୁହେଁ ବା ଧୋଡ଼ା ନୁହେଁ । ତାହା ହୋଇଥିଲେ ପରସ୍ପର ଭିତରେ ଏପରି ସାମଞ୍ଜସ୍ୟ କଦାପି ନହି ନ ଥାନ୍ତା । ଏହାସବୁ ଅତି ଉଚ୍ଚ ପ୍ରାଚୀର ପରି ମନେ ହେଉଛି । ବୋଧହୁଏ ଏହାସବୁ ଚନ୍ଦ୍ର ଦୁର୍ଗ ।

ଏ ଗାରସବୁ ଏତେ ସିଧା ସଳଖ ଯେ, ତାହା କେହି ଖୁବ ସାବଧାନରେ କରିଥିବାପରି ମନେହେଲା । ସମାନ୍ତର ରେଖା ମଧ୍ୟରେ ଅନେକ ଛକ ଗାର, ଅନେକ ବୃତ୍ତ ଗାର ମଧ୍ୟ ଲକ୍ଷ୍ୟ କରାଗଲା

ସେସବୁ ସମକୋଣରେ ଠିକ ହିସାବରେ କଟାଯାଇଥିଲା । ସେ ଗାର ସବୁର ସଂଖ୍ୟା ୭୭ ବୋଲି ବୈଜ୍ଞାନିକମାନେ ଏପର୍ଯ୍ୟନ୍ତ ସ୍ଥିର କରିଛନ୍ତି । ମାତ୍ର ତା'ର ହେତୁ ଲକ୍ଷଣ, ତାହା କେହି ଠିକ୍ କରି ପାରି-ନାହାନ୍ତି । ବହୁ ଆଲୋଚନା ପରେ ଏହା ଦୁର୍ଗର ଚିହ୍ନ ନୁହେ ବୋଲି ଯାତ୍ରୀମାନେ ଠିକ୍‌କଲେ; ମାତ୍ର ଏହାର ମୌଳିକ କାରଣ କୌଣସି-ମତେ ନିର୍ଣ୍ଣୟ କରି ପାରିଲେ ନାହିଁ ।

ଏତେବେଳେ ଗୋଲା ଆସି ୪୦ ଅକ୍ଷାଂଶରେ ପହଞ୍ଚିଲା । ସେଠାରୁ ଚନ୍ଦ୍ରର ଦୂରତା ମୋଟେ ୫୦୦ ମାଇଲ । ସେଠାରୁ ଦ୍ରବ୍ୟସବୁ ଦୂରବୀକ୍ଷଣ ସାହାଯ୍ୟରେ ଛଅମାଇଲ ମଧ୍ୟରେ ଦେଖାଗଲା । ଏଠାରେ ହେଲିକନ୍ ନାମରେ ଗୋଟାଏ ପର୍ବତ ଦେଖାଗଲା । ତାର ଉଚ୍ଚତା ୧୫୦୦ ଫୁଟ । ତାର ବାମପାର୍ଶ୍ୱରୁ ପ୍ରକାଣ୍ଡ ଗିରିମାଳା ବାହାରି ରେନ୍‌ସ୍ ସାଗରର ଆଇରିସ୍ ଉପସାଗରକୁ ଘେରି ରହିଛି ।

ପୃଥିବୀକ କେନ୍ଦ୍ରଠାରୁ ପର୍ଯ୍ୟବେକ୍ଷଣ କଲେ, ପୃଥିବୀର ଘନ ବାୟୁମଣ୍ଡଳ ତହିଁରେ ଯେପରି ବାଧାଦେବାର କଥା, ପୃଥିବୀଠାରୁ ଦୂରବୀକ୍ଷଣ ଯୋଗେ ଚନ୍ଦ୍ରକୁ ଗ୍ରହିଁଲେ ସେହି ବାୟୁମଣ୍ଡଳ ସେହି ପରିମାଣରେ ବାଧାଦିଏ । ତେଣୁ ଅଧିକ ଶକ୍ତିଶାଳୀ ଦୂରବୀକ୍ଷଣସବୁ ଚନ୍ଦ୍ରକୁ ଯେତେ ଲକ୍ଷ୍ୟ କରି ପାରିବ, ବାର୍ବିକେନ ତା ଅପେକ୍ଷା ଢେର ଭଲଭାବରେ ଲକ୍ଷ୍ୟ କରିବାର କଥା । କାରଣ ତାଙ୍କ ଓ ଚନ୍ଦ୍ର ମଧ୍ୟରେ ପାର୍ଥିବ ବାୟୁମଣ୍ଡଳ ବାଧା ଦେଉ ନ ଥିଲା । ଯେଉଁ ଅତି ପତଳା ବାୟୁ ଚନ୍ଦ୍ର ସ୍ତରପଟେ ଥିଲା, ତାହା ବାଧା ଦେବା ପରିବର୍ତ୍ତେ ଦ୍ରବ୍ୟସବୁ ଅଧିକ ସଫାରୂପେ ପ୍ରକାଶ କରି ପାରୁଥିଲା । ଏହାସତ୍ତ୍ୱେ ବାର୍ବିକେନ୍ ବହୁ ଅନୁସନ୍ଧାନ ପରେ ସୁଦ୍ଧା ଚନ୍ଦ୍ରରେ ଜୀବଜନ୍ତୁ ଥିବା କଥା ଏ ପର୍ଯ୍ୟନ୍ତ ଆବିଷ୍କାର କରି ପାରିଲେ ନାହିଁ ।

କେବଳ ବହୁଦୂର ବିସ୍ତୃତ ବାଲୁକାମୟ ମରୁଭୂମି ଓ ଉତ୍ତର ଅଞ୍ଚଳର ଶୁଷ୍କ ଠାଙ୍ଗର ପର୍ବତମାନଙ୍କ ଛଡ଼ା ଆଉ ଅଧିକ କିଛି ସେ ଦେଖି-ପାରିଲେ ନାହିଁ । ଖଣିରାଜ୍ୟ, ଜୀବରାଜ୍ୟ ଓ ଉଦ୍ଭିଦରାଜ୍ୟ, ଯାହା ପୃଥିବୀର ଅବୋଧ ରହିଛି, ଏଠାରେ ତହିଁରୁ ଖଣିରାଜ୍ୟ ଛଡ଼ା ଆଉ ଅଧିକ କିଛି ଥିବାର ଜଣାଗଲା ନାହିଁ ।

ଆଲୋଚନା ପ୍ରସଙ୍ଗରେ ନିକୋଲ କହିଲେ, "କୌଣସି ମନୁଷ୍ୟ, ପ୍ରାଣୀ ବା ବୃକ୍ଷ ଏ ଅଞ୍ଚଳରେ ଥିବାର ଏପର୍ଯ୍ୟନ୍ତ ଜଣାଗଲା ନାହିଁ । ଗିରି ଗହ୍ୱରମାନଙ୍କରେ, ଉପତ୍ୟକାରେ ବା ଚନ୍ଦ୍ରର ବିପରୀତ ପାର୍ଶ୍ୱରେ ବାୟୁମଣ୍ଡଳ ଥିବାର ପ୍ରମାଣ ଏପର୍ଯ୍ୟନ୍ତ ମିଳିନାହିଁ ।"

ବାର୍ବିକେନ କହିଲେ, "ସେହିପରି ଜୋରରେ ଦୃଷ୍ଟିପାତ କଲେ ମଧ୍ୟ ଏତେଦୂରରୁ ମନୁଷ୍ୟ ମୂର୍ତ୍ତି ଦେଖାଯିବା ଅସମ୍ଭବ । ଚନ୍ଦ୍ରରେ ମନୁଷ୍ୟ ଥିଲେ ସେମାନେ ଗୋଲାକୁ ଦେଖିପାରୁଥିବେ । ମାତ୍ର ଆମେ ତାଙ୍କୁ ଦେଖିବା ଅସମ୍ଭବ ।"

ମଧ୍ୟାହ୍ନ ଏଗାରଟା ବେଳେ ଗୋଲା ୫୦ ଅକ୍ଷାଂଶରେ ଆସି ପହଞ୍ଚିଲା । ସେଠାରେ ଦୂରତା ୩୦୦ ମାଇଲକୁ କମିଗଲା । ସେଠାରେ ବାମ ଭାଗରେ ସୂର୍ଯ୍ୟ କିରଣରେ ଚକ୍ ଚକ୍ କରୁଥିବା ଗିରି ଶ୍ରେଣୀ ଦେଖାଗଲା । ଦକ୍ଷିଣ ଭାଗରେ ଗୋଟାଏ ପ୍ରକାଣ୍ଡ କୃଷ୍ଣ ଗହ୍ୱର ବିରାଟ ଅତଳସ୍ପର୍ଶ କୂପ ପରି ଦେଖାଯାଉଥିଲା । ଏହି ଗହ୍ୱରଠାରୁ ଅମାବାସ୍ୟା ସମୟରେ ପୃଥିବୀକୁ ଭଲ ଭାବରେ ପରୀକ୍ଷା କରାଯାଇ-ପାରେ । ଏହି ଅପରୂପ ଦୃଶ୍ୟକୁ ପରୀକ୍ଷା କରିବା ପାଇଁ ସେମାନେ ଗହ୍ୱର ଉପରେ ଲମ୍ବ ଭାବରେ ଉଡ଼ିଯିବାକୁ କାମନା କଲେ । ମାତ୍ର ଗୋଲାର ଗତି ସେମାନେ ନିୟନ୍ତ୍ରିତ କରୁ ନ ଥିଲେ । ତାହା ସ୍ୱାଧୀନ

ଭାବରେ ସ୍ଥିରଥିଲା । ତେଣୁ ସେ ଏହାର କୌଣସି ତଥ୍ୟ ଆବିଷ୍କାର କରି ପାରିଲେ ନାହିଁ ।

ଅପରାହ୍ନ ୫ଟାରେ ରୋଲ ୭୦ ଅକ୍ଷାଂଶରେ ଉପନୀତ ହେଲା । ସେ ଅଞ୍ଚଳ ଖାଲି ପର୍ବତମାନଙ୍କରେ ପୂର୍ଣ୍ଣ । ସେଠାରେ ଦ୍ରବ୍ୟସବୁ ଦୂରବୀକ୍ଷଣରେ ତିନି ମାଇଲ ଦୂରରେ ଦେଖାଯାଉଥିଲା । ଉପତ୍ୟକା ଓ ଶୃଙ୍ଗବହୁଳ ଗିରିମାଳା ଦେଖି ଦେଖି ସେମାନେ ଅଗ୍ରସର ହେଲେ । ୭୦ ଅକ୍ଷାଂଶରେ ମଧ୍ୟ ସେହି ଅବସ୍ଥା ଦେଖିଲେ । ତହିଁରେ ଥିବା ଗୋଟାଏ ପର୍ବତର ଶୃଙ୍ଗ ୩୭°° ମିଟର୍ ଦେଖାଗଲା । କ୍ରମେ ଅଗ୍ରସର ହେଉ ହେଉ ସେମାନେ ଗୋଟାଏ ଅଦ୍ଭୂତ ଦୃଶ୍ୟବହୁଳ ଅଞ୍ଚଳରେ ଯାଇ ପହଞ୍ଚିଲେ । ପୃଥିବୀର କୌଣସି ଅଞ୍ଚଳ ସଙ୍ଗେ ସେ ଅଞ୍ଚଳର ସାମ୍ୟଥିବାର ଦେଖାଗଲା ନାହିଁ । ତାହା ଖୁବ୍ ନୀରସ ଓ ଅସ୍ୱାଭାବିକ ବୋଧହେଲା । ସେମାନେ ତାର କାରଣ ନିରୂପଣ କରି ପାରିଲେ ନାହିଁ ।

ଚନ୍ଦ୍ରରେ ବାୟୁମଣ୍ଡଳ ନ ଥିବାରୁ ଆକାଶରେ କୌଣସି ବାଷ୍ପ ଦେଖାଯାଏ ନାହିଁ । ତାହାଥିଲେ ରାତ୍ରିର ଅନ୍ଧକାରରେ ମଧ୍ୟ ଗୋଟାଏ ଆଲୋକ ଅନୁଭୂତ ହେଉଥାନ୍ତା । ତା ଅଭାବରେ ଚନ୍ଦ୍ର-ଦେହରେ ହଠାତ୍ ଦିନ ଓ ହଠାତ୍ ରାତ୍ରି ହୋଇଯାଏ । ଘୋର ଅନ୍ଧାର ଘରେ ହଠାତ୍ ଆଲୁଅ ଲଗିଲେ ଯେପରି ଆଲୋକିତ ଓ ଲିଭିଗଲେ ଯେପରି ଘୋର ଅନ୍ଧକାର ଘୋଟିଯାଏ, ଚନ୍ଦ୍ରଦେହରେ ଠିକ୍ ସେହିପରି ହୁଏ । ଗରମ ଓ ଥଣ୍ଡା ମଧ୍ୟ ସେହିପରି ଆସେ । ମୁହୂର୍ତ୍ତମଧ୍ୟରେ ବରଫପରି ଥଣ୍ଡା ଅପର ମୁହୂର୍ତ୍ତରେ ଭୀଷଣ ତାତରେ ପରିଣତ ହୁଏ । ତେଣୁ ସୂର୍ଯ୍ୟାଲୋକ ନ ଥିବା ଅଞ୍ଚଳରେ ସୂଚୀଭେଦ୍ୟ ଅନ୍ଧକାର ଘୋଟି ରହିଥାଏ ।

ଏ ଅବସ୍ଥା ବାର୍ବିକେନ୍ ଓ ତାଙ୍କ ବନ୍ଧୁମାନଙ୍କ ମନରେ ବଡ଼ ବିସ୍ମୟ ସୃଷ୍ଟି କଲା । ସେମାନେ କିପରି ତାଙ୍କ ଚକ୍ଷୁ ବ୍ୟବହାର କରିବେ ବୁଝିପାରିଲେ ନାହିଁ । ସେମାନେ ୮୦ ଅକ୍ଷାଂଶରେ ପହଞ୍ଚିଲେ ମଧ୍ୟ ଏ ଅବସ୍ଥା ବଦଳିଲା ନାହିଁ । ସେତେବେଳକୁ ସେମାନଙ୍କ ଦୂରତା ୫୦ ମାଇଲ୍ ମାତ୍ର । ହାତ ବଢ଼ାଇଲେ ଚନ୍ଦ୍ରକୁ ଛୁଇଁଲା ପରି ସେମାନଙ୍କୁ ଲାଗିଲା । ସେମାନେ ମନେକଲେ, ଅଳ୍ପ ସମୟ ଭିତରେ ଗୋଲା ଚନ୍ଦ୍ରରେ ପଡ଼ିବ । ଅର୍ଡାନ୍ ଗୋଟାଏ ଜଳା-କବାଟି ଖୋଲି ଚନ୍ଦ୍ର ଉପରକୁ ଡେଇଁ ପଡ଼ିବାକୁ ବାଗୁଥିଲେ । ମାତ୍ର ସେପରି ଡେଇଁବାର କୌଣସି ଫଳ ହୁଅନ୍ତା ନାହିଁ । ଗୋଲା ଯେପରି ଚନ୍ଦ୍ରପୃଷ୍ଠରେ ଘୂରୁଥିଲା, ସେ ସେହିପରି ଘୂରୁଥାନ୍ତେ ; ମୋଟେ ଚନ୍ଦ୍ରକୁ ସ୍ପର୍ଶ କରି ପାରନ୍ତେ ନାହିଁ ।

୬ଟା ବେଳକୁ ଉତ୍ତରମେରୁ ଦେଖା ପଡ଼ିଲା । ସେପର୍ଯ୍ୟନ୍ତ ଚନ୍ଦ୍ର ଖୁବ୍ ଆଲୋକିତ ଦେଖାଯାଉଥିଲା । ମେରୁର ଅପର ଅଂଶ ଘୋର ଅନ୍ଧାରରେ ବୁଡ଼ି ରହିଥିଲା । ଗୋଲା ଆଲୋକ ଓ ଅନ୍ଧ-କାରର ସୀମାରେଖା ପାର ହୋଇ ଘୋର ତାମସୀ ଅନ୍ଧକାର ଭିତରେ ପ୍ରବେଶ କଲା ।

---

—ବାର—

## ୩.୫୪ ଘଣ୍ଟା ରାତି

ଗୋଲା ଯେତେବେଳେ ଚନ୍ଦ୍ରର ଉତ୍ତର ମେରୁମଣ୍ଡଳରେ ଗତି କରୁଥିଲା, ସେତେବେଳେ ଚନ୍ଦ୍ରଠାରୁ ତାର ଦୂରତ୍ୱ ୨୫ ମାଇଲରୁ କିଛି କମ୍ । ଅଳ୍ପ କେତେକ ସେକେଣ୍ଡ ପରେ ଗୋଲା ଅନନ୍ତ ଅନ୍ଧକାର

ଭିତରେ ବୁଡ଼ିଯିବ । ଗୋଲାର ଗତି ସେ ଅଞ୍ଚଳ ଅଡ଼କୁ ଏତେ ଶୀଘ୍ର ଶୀଘ୍ର ହେଉଥିଲା ଯେ, ମନେ ହେଲା ଅଳ୍ପ ପଲକ ମାତ୍ରକେ ତାହା ସେ ଅଞ୍ଚଳ ମଧ୍ୟକୁ ପଶିଯିବ । ସେ ଅଞ୍ଚଳକୁ ଦୂରରୁ ଦେଖିଲେ ବୋଧ-ହେଉଥିଲା, ଯେପରି ଚନ୍ଦ୍ରର ସେ ଅଂଶଟା ଆଦୌ ନାହିଁ । ଗୋଟାଏ ଭୌତିକଶକ୍ତି ବଳରେ ତାହା କୁଆଡ଼େ ଅଦୃଶ୍ୟ ହୋଇଯାଇଛି ।

ଯେଉଁ ମଣ୍ଡଳ ଆଲୋକ ଲହରୀରେ ଖେଳୁଥିଲା, ତାର ଅପର ଅଂଶରେ ଆଲୋକର ଟିକିଏ ଚିହ୍ନ ବା ସତ୍ତା ନ ଥିଲା । ଏହା ଚନ୍ଦ୍ର ରାତ୍ରିର ଘନାନ୍ଧକାର । ଏହା ଚନ୍ଦ୍ରର ଯେକୌଣସି ଅଂଶରେ ୩୫୪ ଘଣ୍ଟା ୩୦ ମିନିଟ୍ ପର୍ଯ୍ୟନ୍ତ ସ୍ଥାୟୀ ହୁଏ । ତାହା ଚନ୍ଦ୍ରର ନିଜ ଧୁରଚକ୍ରେ ଓ ପୃଥିବୀ ଧୁରଚକ୍ରେ ଘୂର୍ଣ୍ଣନର ଫଳ ।

ଅନ୍ଧାର ଅନ୍ଧାର ଭିତରକୁ ଅନ୍ଧକାର ଗାଢ଼ତର ଭାବରେ ଦେଖାଗଲା । ଯାତ୍ରୀମାନେ ପରସ୍ପରକୁ ମଧ୍ୟ ଦେଖିପାରିଲେ ନାହିଁ । ତେଣୁ ଗୋଲା ଭିତରେ ଆଲୋକ ଜାଳିବା ଅବଶ୍ୟକ ପଡ଼ିଲା । ମାତ୍ର ବାର୍ବିକେନ୍ ଗ୍ୟାସକୁ ଇଚ୍ଛିରଖି ବ୍ୟବହାର କରୁଥିବାରୁ ଏପରି ଅବସ୍ଥାରେ ବଡ଼ ଗଣ୍ଡଗୋଳରେ ପଡ଼ିଲେ । ଏପରି ଅନ୍ଧକାର ପାଇଁ ଚନ୍ଦ୍ରଦାୟୀ କି ସୂର୍ଯ୍ୟଦାୟୀ, ଏଥିପାଇଁ ଆର୍ଡାନ୍ ଓ ନିକୋଲଙ୍କ ମଧ୍ୟରେ ବହୁତର୍କ ପଡ଼ିଲା । ବାର୍ବିକେନ୍ ତାହା ନିଷ୍ପତ୍ତି କରିବାକୁ ଯାଇ କହିଲେ, "ଏହା ସୂର୍ଯ୍ୟ ବା ଚନ୍ଦ୍ର କାହାରି ଦୋଷ ନୁହେଁ । ଏହା ଗୋଲାର ଦୋଷ । ତାହା ଯେବେ ଦୈର୍ଘ୍ୟଗତି ଧରି ନ ଥାନ୍ତା, ଏପରି ଅବସ୍ଥା କାହିଁକି ଘଟନ୍ତା ? ଅଥବା ଏହା ସେହି ଦୃଷ୍ଟିରୁ ଚନ୍ଦ୍ରର ଦୋଷ । ତାହା ଯେବେ ଗୋଲାର ଗତିକୁ ଘାରିଦେଇ ନ ଥାନ୍ତା, ତାହେଲେ ଗୋଳା ନିଶ୍ଚୟ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଥାଆନ୍ତା ।"

ତାପରେ ବତୀ ଲଗାଇ ସେମାନେ ଖାନାପିନା କଲେ, ମାତ୍ର ତହିଁରେ ସେମାନଙ୍କର ଉତ୍ସାହ ନ ଥିଲା । ଏ ଭୀଷଣ ଅନ୍ଧକାରକୁ ଦେଖି ସେମାନଙ୍କ ହୃଦୟ ପତଳା ଧରିଯାଇଥିଲା । ସେମାନେ ଏପର୍ଯ୍ୟନ୍ତ ଆଲୋକ ହରାଇ ନ ଥିଲେ କିମ୍ବା ଅବାଲୋକ ଅଲୋକବିହୀନ ସ୍ଥଳରେ ଚଳିବାରେ ଅଭ୍ୟସ୍ତ ନ ଥିଲେ ।

ଏହାପରେ ସେମାନେ ଅନ୍ଧକାର ବିଷୟରେ ଆଲୋଚନା କଲେ । ଏପରି ଅନ୍ଧକାର ପ୍ରାୟ ପନ୍ଦରଦିନ ଲାଗିରହିବ । ଏଥିପାଇଁ ଚନ୍ଦ୍ରଲୋକ-ବାସୀମାନେ ଅବଶ୍ୟ ଅଭ୍ୟସ୍ତ । ଏପରି ଅନ୍ଧକାରର କାରଣ ଓ ତାର ଫଳ ବିଷୟରେ ବାର୍ବିକେନ୍ ସେମାନଙ୍କୁ କେତେକ କଥା ବୁଝାଇଲେ । ସେ କହିଲେ, "ଯଦି ଚନ୍ଦ୍ରର ପ୍ରତ୍ୟେକ ଅଂଶ ସୂର୍ଯ୍ୟାଲୋକରୁ ପନ୍ଦର-ଦିନ ପାଇଁ ଏପରି ବଞ୍ଚିତ ହୁଏ, ତେବେ ତାହା ପୃଥିବୀର ସମୁଜ୍ଜ୍ୱଳ ନୀଳ ଆଲୋକରଶ୍ମି ପନ୍ଦରଦିନ ପାଇଁ ଉପଭୋଗ କରି ପାରେନାହିଁ । ସେତେବେଳେ ଆମ ପକ୍ଷରେ ଚନ୍ଦ୍ର ନାହିଁ ବୋଲି କହିଲେ ଚଳେ । ଯଦି ପୃଥିବୀରେ ଏପରି ଅବସ୍ଥା ଘଟୁଥାନ୍ତା, ମନେକର ଇଉରୋପରେ କଣେ ଲୋକ ଚନ୍ଦ୍ରକୁ ମୋଟେ ଦେଖିପାରୁ ନ ଥାନ୍ତା, ତେବେ ସେ ଅଷ୍ଟ୍ରେଲିଆରେ ପହଞ୍ଚି ଚନ୍ଦ୍ରକୁ ଦେଖି କେଡ଼େ ବିସ୍ମିତ ହୁଅନ୍ତା ନାହିଁ ?"

ଅର୍ଡାନ୍—"ଇଉରୋପୀୟ ଲୋକ କ'ଣ ଖାଲି ଚନ୍ଦ୍ରକୁ ଦେଖିବାକୁ ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ଯିବ ?"

ବାର୍ବିକେନ—"ଏ ବିସ୍ମୟ ଚନ୍ଦ୍ରବାସୀମାନଙ୍କ ପାଇଁ ଥାଉ । ଚନ୍ଦ୍ରର ଯେଉଁ ଅଂଶକୁ ପୃଥିବୀ ମୋଟେ ଦେଖିପାରୁନାହିଁ, ସେ

ଅଂଶରେ ସେମାନେ ରହି ପୃଥିବୀ ବିଷୟରେ ଗୋଟାଏ ଅଦ୍ଭୁତ ଧାରଣା କରୁଥାନ୍ତି ।"

ନିକୋଲ୍—"ଯଦି ଗୋଟାଏ ପକ୍ଷ ପରେ ଆମେ ଏଠାକୁ ଆସିଥିଲେ, ଆମେ ମଧ୍ୟ ସେହି ଅବସ୍ଥାର ସମ୍ମୁଖୀନ ହୋଇଥାନ୍ତୁ ।"

ବାର୍ବିକେନ—"ଚନ୍ଦ୍ରର ଅଲୋକିତ ଅଂଶରେ ଯେଉଁମାନେ ବାସ କରନ୍ତି, ସେମାନେ ପ୍ରକୃତିର ବିଶେଷ ଅନୁଗ୍ରହ ପାଆନ୍ତି । ସେପରି ଅନୁଗ୍ରହ ବିପରୀତ ଅଂଶର ଲୋକେ ଆଶାକରି ପାରନ୍ତି ନାହିଁ । ଏମାନେ ପନ୍ଦରଦିନକାଳ ସୂଚୀଭେଦ୍ୟ ଅନ୍ଧକାର ଭୋଗକରୁଥିଲା-ବେଳେ ଅଲୋକିତ ଅଂଶର ଲୋକେ ପନ୍ଦରଦିନକାଳ ନିରବଚ୍ଛିନ୍ନ ଭାବରେ ସୂର୍ଯ୍ୟାଲୋକ ଉପଭୋଗ କରନ୍ତି । ସୂର୍ଯ୍ୟ ଅସ୍ତହୋଇଗଲେ ଆଉ ଗୋଟାଏ ବିରାଟ ଉଜ୍ଜ୍ୱଳ ଜ୍ୟୋତିଷ୍କ ନିଜର ନୀଳ ବିମଳ ଅଲୋକଧାରାରେ ସେମାନଙ୍କୁ ଡୁବାଇଦିଏ । ତାହା ମଧ୍ୟ ପନ୍ଦରଦିନ ପର୍ଯ୍ୟନ୍ତ ରହେ । ସେ ବିରାଟ ଜ୍ୟୋତିଷ୍କ ହେଉଛି ପୃଥିବୀ । ଆମେ ଚନ୍ଦ୍ରଠାରୁ ଯେଉଁ ଅଲୋକ ପାଉଁ, ତାର ତେରଗୁଣ ଅଧିକ ଉଜ୍ଜ୍ୱଳତର ଅଲୋକ ଚନ୍ଦ୍ର ପୃଥିବୀଠାରୁ ପାଏ । ପୃଥିବୀ ଚନ୍ଦ୍ରଠାରୁ ଯେଉଁ ମୁହୂର୍ତ୍ତରେ ଅସ୍ତହୁଏ, ସୂର୍ଯ୍ୟ ସେହି ମୁହୂର୍ତ୍ତରେ ଦେଖାଦିଏ । ଚନ୍ଦ୍ରର ସେ ଅଂଶରେ ଅନ୍ଧକାରର ଅବକାଶ ମୋଟେ ନାହିଁ ।"

ନିକୋଲ୍—"ସମସ୍ତ ସୁବିଧା ସଙ୍ଗେ ଅସୁବିଧା ଲାଗିରହିଛି । ସେ ଅଂଶ ଯେତିକି ପରିମାଣରେ ଅଲୋକ ଉପଭୋଗକରେ, ସେତିକି ପରିମାଣରେ ଉତ୍ତାପ ମଧ୍ୟ ପାଏ, ଫଳରେ କ୍ଷତିପୂରଣ ମଧ୍ୟ ସଙ୍ଗେ ସଙ୍ଗେ ହେଉଥାଏ । ମାତ୍ର ଅପର ଅଂଶ ସବୁବେଳେ ଶୀତଳ ।"

ବାର୍ବିକେନ—"ଉଭୟ ଅଂଶରେ ଏ ଅସୁବିଧା ସମାନ, କାରଣ ପୃଥିବୀ ଯେଉଁ ଅଲୋକ ଚନ୍ଦ୍ରକୁ ଦିଏ, ତହିଁରେ ଉତ୍ତାପ ଆଦୌ ନ ଥାଏ, ମାତ୍ର ଅନ୍ଧକାର ଅଂଶରେ ଉତ୍ତାପ ଅଭାବ ଢେର ବେଶୀ । ଅଦୃଶ୍ୟ ଅଂଶ ଯେତେବେଳେ ସୂର୍ଯ୍ୟଠାରୁ ଅଲୋକ ଓ ଉତ୍ତାପ ପାଏ, ସେତେବେଳେ ଚନ୍ଦ୍ରର ଅମାବାସ୍ୟା ଅବସ୍ଥା । ସେ ସେତେବେଳେ ପୃଥିବୀ ଓ ସୂର୍ଯ୍ୟର ମଧ୍ୟସ୍ଥଳରେ ରହେ । ସେତେବେଳେ ସୂର୍ଯ୍ୟଠାରୁ ତାର ଦୂରତା ବହୁତ ବେଶି । ଫଳରେ ଉତ୍ତାପ ହ୍ରାସ ହେବାରକଥା । ଯେତେବେଳେ ପୂର୍ଣ୍ଣିମା, ସେତେବେଳେ ସେ ସୂର୍ଯ୍ୟର ବହୁତ ନିକଟବର୍ତ୍ତୀ ହୁଏ । ଫଳରେ ଅଧିକ ଉତ୍ତାପ ପାଏ ।"

ଏହାପରେ କଥା ହେଉ ହେଉ ଖାନା ସରିଗଲା । ଯାତ୍ରୀମାନେ ପୁଣି ପର୍ଯ୍ୟବେକ୍ଷଣ କାମରେ ଲାଗିଲେ । ସେମାନେ ବାହାରର ଦୃଶ୍ୟ ସଫା ଦେଖିବା ପାଇଁ ଭିତର ଅଲୋକ ଲିଭାଇ ଦେଲେ । ମାତ୍ର ସେହି ଭୀଷଣ ଅନ୍ଧକାର ଭିତରେ ଅଲୋକର ଗୋଟିଏ କ୍ଷୁଦ୍ର କଣା ସୁଦ୍ଧା ଦେଖିବାକୁ ପାଇଲେ ନାହିଁ । ଗୋଟାଏ ବଡ଼ ଭାବନା ବାର୍ବିକେନଙ୍କ ମନକୁ ଅସ୍ଥିର କରି ପକାଇଲା । ଗୋଲା ସେତେ-ବେଳେ ଚନ୍ଦ୍ରର ଖୁବ୍ ନିକଟରେ, ୨୫ ମାଇଲ୍ ମାତ୍ର ଦୂରରେ ଥିଲେ ମଧ୍ୟ ତାହା ଯେ ଚନ୍ଦ୍ରରେ କାହିଁକି ନ ପଡ଼ିଲା, ଏଥିପାଇଁ ସେ ବଡ଼ ଚିନ୍ତିତ ହେଉଥିଲେ । ତାର ଗତି ଖୁବ ଜୋରରେ ହେଉଥିଲେ ସେ ବୁଝିପାରନ୍ତେ ଯେ ତାହା କାହିଁକି ଚନ୍ଦ୍ରକୁ ସ୍ପର୍ଶ କରିପାରୁନାହିଁ । ମାତ୍ର ତାର ଗତି ଅପେକ୍ଷାକୃତ ଖୁବ୍ ମନ୍ଦ ହେଉଥିବାରୁ ଚନ୍ଦ୍ରର ଆକର୍ଷଣରେ କଅଣ ବାଧା ପଡ଼ୁଥିଲା, ତାହା ବୁଝି ହେଲା ନାହିଁ । ତେବେ କଣ ଗୋଲା ଆଉ ଗୋଟାଏ ଅଦ୍ଭୁତ ଶକ୍ତିର ପ୍ରଭାବରେ ପଡ଼ିଯାଇଛି ? ତାହା କଣ ନଥର ମଧ୍ୟରେ ତାକୁ ରଖିନେଇଛି ?

ଏପର୍ଯ୍ୟନ୍ତ ପ୍ରମାଣିତ ହୋଇ ଆସୁଥିଲା ଯେ, ଗୋଲା ଚନ୍ଦ୍ରର କୌଣସି ଅଂଶକୁ ସ୍ପର୍ଶ କରିବ ନାହିଁ । ତେବେ ଏଥର ଯାଉଛି କୁଆଡ଼େ ? ଚନ୍ଦ୍ରର ନିକଟକୁ ଯାଉଛି କି ଦୂରକୁ ହଟିଯାଉଛି ? ତେବେ କଣ ଘୋର ତମସାବୃତ ନଭୋମଣ୍ଡଳ ମଧ୍ୟରେ ଅନନ୍ତ ଗତିପଥ ଧରି କୁଆଡ଼େ ଚାଲିଯାଉଛନ୍ତି ? ସେମାନେ ଏକଥା ଜାଣିବେ କିପରି ? ଅନ୍ଧକାରରେ ହିସାବ କରିବେ ବା କଅଣ ? ଏସବୁର ରହସ୍ୟ ବାର୍ବିକେନ ଭେଦ କରି ପାରିଲେ ନାହିଁ । ତାଙ୍କ ମୁଣ୍ଡ ଘୂରିଗଲା ।

ମାତ୍ର ଯଥାର୍ଥରେ ସେମାନେ ଦୂରକୁ ହଟିଯାଇ ନ ଥିଲେ । ଚନ୍ଦ୍ରର ଖୁବ୍ ପାଖରେ ପ୍ରାୟ ୨୫ ମାଇଲ ମଧ୍ୟରେ ଥିଲେ । କିନ୍ତୁ ସେମାନେ କିଛି ଦେଖିପାରୁ ନ ଥିଲେ । ଚନ୍ଦ୍ର ଦେହରେ ଗୋଟାଏ କୌଣସି ଶବ୍ଦ ହେଲେ ସେମାନେ ଶୁଣି ପାରିବା ଅସମ୍ଭବ, କାରଣ ଶବ୍ଦବାହକ ପବନର ସେଠାରେ ଏକାନ୍ତ ଅଭାବ । ପନ୍ଦରଦିନ ପରେ ଏ ଅଞ୍ଚଳ ସୂର୍ଯ୍ୟର ଆଲୋକ ସମୁଦ୍ରରେ ଭରପୂର ହୋଇଯିବ । ମାତ୍ର ବର୍ତ୍ତମାନ ଅଦୃଶ୍ୟ । ପନ୍ଦର ଦିନରେ ଗୋଲା ଯାଇ କେଉଁଠାରେ ଥିବ, ଆକର୍ଷଣର ଏପରି ବିଷମତା ତାକୁ ନେଇ କେଉଁଠାରେ ଥୋଇଥିବ, କିଏ ବା ଏ କଥା କହିପାରିବ ?

ଚନ୍ଦ୍ରର ଏହି ଅଦୃଶ୍ୟମଣ୍ଡଳର ପ୍ରକୃତି ଦୃଶ୍ୟମଣ୍ଡଳର ପ୍ରକୃତିଠାରୁ କୌଣସି ଅଂଶରେ କମ୍ ନୁହେଁ । ଏହି ଅଞ୍ଚଳରେ ସେହିପରି ଗିରିପୁଞ୍ଜ, ସମତଳ ଭୂମି, ବରଫପୂର୍ଣ୍ଣ ପ୍ରାନ୍ତର ଓ ନିର୍ବାପିତ ଆଗ୍ନେୟଗିରି ସବୁ ରହିଅଛି । ଯାତ୍ରୀମାନେ ସେ ତରଫରେ ସେହି ଅବସ୍ଥା କଳ୍ପନା କଲେ । ଜଳବାୟୁର ଅଧିକ ସମାବେଶ ଏଠାରେ ଥିଲେ, ଏହା ଯେ ଅନ୍ୟ ଅଂଶ ଅପେକ୍ଷା କେତେ ସଜୀବ ଥିବ, ତାହା ଜାଣିବାର ଉପାୟ କଣ ? ଯେଉଁ ଅଂଶରେ ମନୁଷ୍ୟର ଚକ୍ଷୁ ଏପର୍ଯ୍ୟନ୍ତ ପଡ଼ି

ପାର ନାହିଁ, ତାହା ଅବସ୍ଥାର ଦର ପାରୁଥିଲେ, ସେମାନଙ୍କର କେତେ ଆନନ୍ଦ ଜାତ ହେଉଥାନ୍ତା ?

ବାହାରେ ତାରକାଗୁମ୍ଫିତ ଆକାଶମଣ୍ଡଳ ଅତଶୟ ମନୋରମ ଦେଖାଯାଉଥିଲା । ସ୍ୱାରକଣୀ ସବୁ ବ୍ୟୋମ ଛଦରେ ପୃଷ୍ଠି ଜଗ ଜଗନ୍ତକୁ ଅନନ୍ତ ମହିମାରେ ଭସାଇ ଦେଉଥିଲେ । ଏହି ମହିମାମୟ ଅସୀମତା ମଧ୍ୟରେ ମନୁଷ୍ୟର କଳ୍ପନା ଲୁପ୍ତ ହୋଇ ଯାଉଥିଲା । ଗୋଲ ମନୁଷ୍ୟକୃତ ଗୋଟିଏ ନୂତନ ତାରକା ପରି ତା ମଧ୍ୟରେ ଭ୍ରମୁଥିଲା । ବାୟୁପ୍ରବାହ ଅଭାବରେ ତାରକାମାନେ ମିଞ୍ଜି-ମିଞ୍ଜି ହେବା ଦେଖାଯାଉ ନ ଥିଲା ।

ଯାତ୍ରୀମାନେ ଚତୁର୍ଦ୍ଦିଗର ଏହି ମନୋହର ଦୃଶ୍ୟାବଳୀରେ ମୁଗ୍ଧ ରହି ମଧ୍ୟ ଚନ୍ଦ୍ରର ବିରାଟ ଅନ୍ଧକାର ଦେଖି ବ୍ୟସ୍ତ ହୋଇ ପଡ଼ୁଥିଲେ । ଏ ସମୟରେ ଗୋଟାଏ ଯନ୍ତ୍ରଣାଦାୟକ ଅନୁଭୂତ ସେମାନଙ୍କୁ ଅଡ଼ୁଆରେ ପକାଇଦେଲା । ଯେଉଁ ଗବାକ୍ଷମାନଙ୍କରେ ସେମାନେ ବାହାରକୁ ଦେଖି ପାରୁଥିଲେ,ତାହାସବୁ ଅତଶୟ ଶୀତରେ ବରଫାବୃତ ହୋଇ ପଡ଼ିଲା । ସୂର୍ଯ୍ୟ ଆଉ ଗୋଲକୁ ଉତ୍ତପ୍ତ କରିପାରୁ ନ ଥିବାରୁ ତାହା କ୍ରମ୍ଭେ କ୍ରମ୍ଭେ ଅତଶୟ ଥଣ୍ଡା ହୋଇଗଲା । ଗବାକ୍ଷ କାଚସବୁ ବରଫାବୃତ ହେବାରୁ ପର୍ଯ୍ୟବେକ୍ଷଣ କାର୍ଯ୍ୟ ହୋଇ ପାରୁନାହିଁ । ନିକୋଲ୍ ଥର୍ମୋମିଟର ଦେଖି ପାରଦ ଶୂନ୍ୟରୁ ସତର ଡିଗ୍ରୀ ତଳକୁ ଖସି ପଡ଼ି ଥିବାର କହିଲେ । ତେଣୁ ବାର୍ବିକେନ୍ ଗ୍ୟାସ୍‌ବତୀ ଜାଳି ଗୋଲ ଭିତର ଆଲୋକିତ ଓ ଉତ୍ତପ୍ତ କରିବାକୁ ବାଧ୍ୟ ହେଲେ । ନୋହିଲେ ଥଣ୍ଡାରେ ସେମାନଙ୍କର ରକ୍ତ ଜମିଯାଇ ମୃତ୍ୟୁ ହୋଇପିବା ସମ୍ଭବ ।

ସେତେବେଳେ ବାହାରେ ଥଣ୍ଡା କେତେ, ତାହା କଳ୍ପନା କରିବା ଅସମ୍ଭବ । ତେବେ ଶୂନ୍ୟ ମଣ୍ଡଳର ଥଣ୍ଡା ପ୍ରାୟ ଏହିପରି । ଏ ସମୟରେ ବାହାର ଥଣ୍ଡା ମାପିବାକୁ ବାର୍ବିକେନ ତାଙ୍କ ଥର୍ମୋମିଟର ଗ୍ରହିଁଲେ । ତାହା ସାଧାରଣ ଥର୍ମୋମିଟର ନୁହେଁ । ତାହା ଅତ୍ୟନ୍ତ ଶକ୍ତିଶାଳୀ ଓ ଏ ଅଞ୍ଚଳ ପାଇଁ ସ୍ୱତନ୍ତ୍ର ଭାବରେ ବରାଦ ହୋଇ ନିର୍ମିତ ହୋଇଥିଲା । ଆର୍ଡାନ୍ ପ୍ରସ୍ତାବ କଲେ, "ଗବାକ୍ଷ ଖୋଲି ତାକୁ ବାହାରକୁ ଛାଡ଼ିଦେବା । ତା ଆମ ସଙ୍ଗେ ସଙ୍ଗେ ଅବଶ୍ୟ ଆସିବ । କିଛି ସମୟ ପରେ ଆମେ ତାକୁ ଆଣି ଦେଖିବା ।"

ବାର୍ବିକେନ—"ହାତ ବଢ଼ାଇ ଆଣିବ ?"

ଆର୍ଡାନ—"ହଁ" ।

ବାର୍ବିକେନ—"ତାହେଲେ ବାହାରୁ ଯେଉଁ ହାତ ତୁମ ପାଖକୁ ଫେରି ଆସିବ, ତାହା ଥଣ୍ଡା ହୋଇ ଯାଇଥିବ ଏବଂ ତହିଁରେ ଅଙ୍ଗୁଳି ଓ ପାପୁଲି କିଛି ନ ଥିବ । ତା ପରେ ଯେଉଁ ଅବସ୍ଥାରେ ପଡ଼ି କୁକୁର ଦେହଟା ଆମ ସଙ୍ଗେ ସଙ୍ଗେ ସେଦିନ ଭାସି ଯାଉଥିଲା, ସେ ଅବସ୍ଥା ଏ ତରଫରେ ଥିବା ବିଷୟରେ ମୁଁ ନିଶ୍ଚିତ ନୁହେଁ । ପୁଣି ଘୋର ଅନ୍ଧକାର ଯୋଗେ ଆମ୍ଭେମାନେ ବାହାରର କୌଣସି କଥା ଦେଖି ପାରୁନାହୁଁ । ଫଳରେ ମୂଲ୍ୟବାନ ଥର୍ମୋମିଟରଟି ଅଜାଣତେ ହାତଛଡ଼ା ହେବା ବିଚିତ୍ର ନୁହେଁ । ତେଣୁ ଏହା ଦେହରେ ଖଣ୍ଡେ ସୂତାବାନ୍ଧି ବାହାରକୁ ଛାଡ଼ିଦେବା ଏବଂ କିଛି ସମୟ ପରେ ଭିତରକୁ ଆଣିବା ।"

ତା ପରେ ସେମାନେ ଥର୍ମୋମିଟରରେ ଖଣ୍ଡେ ସୂତା ବାନ୍ଧି ଗବାକ୍ଷ ସାମାନ୍ୟ ଖୋଲି ତାକୁ ବାହାରକୁ ଛାଡ଼ି ଦେଲେ ଏବଂ

ସଙ୍ଗେ ସଙ୍ଗେ ତୋପାଟ ବନ୍ଦକରି ଦେଲେ । ସେହି ଏକ ସେକେଣ୍ଡ ମଧ୍ୟରେ ସେଇଁ ଥଣ୍ଡାର ତରଙ୍ଗ ଗୋଳା ଭିତରକୁ ପଶି ଆସିଲା, ତହିଁରେ ମେରୁଅଞ୍ଚଳର ଧଳା ଭାଲୁମାନେ ରକ୍ତ ଜମି ମରିଯିବା ସମ୍ଭବ । ଯାତ୍ରୀମାନେ ବଡ଼ କଷ୍ଟରେ ଆତ୍ମରକ୍ଷା କଲେ ।

ଥର୍ମୋମିଟରକୁ ଅଧ ଘଣ୍ଟାଏ ବାହାରେ ରଖି ଯେତେବେଳେ ଭିତରକୁ ଟାଣି ଆଣିଲେ, ସେତେବେଳେ ଦେଖାଗଲା, ପାରଦ ଶୂନ୍ୟରୁ ୧୪୦ ଡ଼ିଗ୍ରୀ ତଳକୁ ଖସିଯାଇଛି । ଏହାହିଁ ଚନ୍ଦ୍ରମଣ୍ଡଳରେ ସେହି ଅଦୃଶ୍ୟ ଅଞ୍ଚଳର ଥଣ୍ଡା । ପନ୍ଦରଦିନ କାଳ ସୂର୍ଯ୍ୟଠାରୁ ପ୍ରାପ୍ତ ହୋଇଥିବା ଉତ୍ତାପ ମୁହୂର୍ତ୍ତିକର ଥଣ୍ଡାରେ କୁଆଡ଼େ ଚାଲିଯାଏ ।



—ତେର—

## ସମାନ୍ତର ରେଖାର ମିଳନ

ପାଠକମାନେ ବିସ୍ମିତ ହେବେ ଯେ, ବାର୍ବିକେନ୍ ଓ ତାଙ୍କ ବନ୍ଧୁମାନେ ଅଲକ୍ଷ୍ୟ ଅଦୃଶ୍ୟ ଶୂନ୍ୟରେ କୁଆଡ଼େ ଭାସି ଯାଉଥିବା ଗୋଟାଏ ଧାତବ ବନ୍ଦୀଘରେ ବନ୍ଦ ଭବିଷ୍ୟତରେ ସେମାନଙ୍କ ଭାଗ୍ୟରେ କଅଣ ଘଟିବ, ସେକଥା ଆଦୌ ଭାବୁ ନ ଥିଲେ । ସେମାନେ କୁଆଡ଼େ ଚାଲିଯାଉଥିଲେ, ଏକଥା ମୋଟେ ନ ଭାବି କେବଳ ନିଜର ପର୍ଯ୍ୟବେକ୍ଷଣ କାର୍ଯ୍ୟରେ ନିବିଷ୍ଟ ରହିଥିଲେ । ଏଥିରୁ ଏହାହିଁ ଶିକ୍ଷା ମିଳୁଛି ଯେ, ଯେଉଁମାନଙ୍କର ମନୋବଳ ଖୁବ୍ ଦୃଢ଼,ସେମାନେ ସାଧାରଣ ବିବେଚନାର ବହୁତ ଉପରେ । ଭବିଷ୍ୟତ ମୃତ୍ୟୁ ବା ଅନ୍ୟ ପ୍ରକାର ଦୁର୍ଭାଗ୍ୟ ସେମାନଙ୍କ ମନକୁ ଅସ୍ଥିର କରେ ନାହିଁ ।

ଯେପରି ମହାପୁରୁଷମାନେ ମନେ କରନ୍ତି, ସେମାନଙ୍କ ନିଜ ଭବିଷ୍ୟତ ପାଇଁ ଚିନ୍ତା କରିବାଠାରୁ ସେମାନଙ୍କର ଅନ୍ୟ ଅଧିକ ଗୁରୁତର କାର୍ଯ୍ୟ କରିବାକୁ ଅଛି ।

ଟୋଗାଲ ଉପରେ ସେମାନଙ୍କର କୌଣସି କର୍ତ୍ତୃତ୍ୱ ନ ଥିଲା । ସେମାନେ ଇଚ୍ଛା କଲେ ତାର ଗତିକୁ ବଦଳାଇ ପାରିବେ ନାହିଁ ବା ବନ୍ଦ କରି ଦେଇ ପାରିବେ ନାହିଁ । ନାବିକ ତାର ଜାହାଜକୁ ଯୁଆଡ଼େ ଇଚ୍ଛା ସେଆଡ଼େ ନେଇପାରେ ଓ ବୈମାନିକ ତାର ଉଡ଼ା-ଜାହାଜକୁ ଇଚ୍ଛାମତେ ବ୍ୟବହାର କରିପାରେ; ମାତ୍ର ଏମାନଙ୍କର ସେ ସବୁ କିଛି ନ ଥିଲା । ତେଣୁ ସେମାନଙ୍କର ବ୍ୟସ୍ତ ବା ବିଚଳିତ ହେବାର କିଛି ନ ଥିଲା । ତେଣୁ ସେମାନଙ୍କର ମନୋଭାବ ଏହିପରି ଥିଲା ।

ପୃଥିବୀରେ ଯେତେବେଳେ ଡିସେମ୍ବର ତା ୭ ସକାଳ ୮ଟା ବେଳ, ସେତେବେଳେ ସେମାନେ କେଉଁଠି ? ସେତେବେଳେ ଚନ୍ଦ୍ରର ଗୋଟାଏ ବିରାଟ କୃଷ୍ଣପରଦା ସେମାନଙ୍କ ସମ୍ମୁଖରେ ଧରି ହୋଇଥିଲା । ସେତେବେଳେ ଚନ୍ଦ୍ରଠାରୁ ସେମାନଙ୍କର ଦୂରତା କେତେ, ତାହା ଜାଣିବା ଅସମ୍ଭବ । ଅଦୃଶ୍ୟ ଶକ୍ତିର ପ୍ରଭାବରେ ପଡ଼ି ଗୋଲା ଉତ୍ତର ମେରୁ ଅତିକ୍ରମ କଲାବେଳେ, ଚନ୍ଦ୍ରଠାରୁ ତାର ଦୂରତା ଥିଲା ମୋଟେ ପଚାଶ ମାଇଲ । ଏବେ କେନ୍ଦ୍ର ଆଡ଼କୁ ଆସିଲା ପରେ ସେ ଦୂରତା ବଢ଼ିଛି କି କମିଛି, ତାହା ଜାଣିବା ଅସମ୍ଭବ । ଘନ କୃଷ୍ଣ ଅନ୍ଧକାର ଭେଦ କରି ଚନ୍ଦ୍ର ଦେହରେ ଯେବେ ଗୋଟାଏ ଚିହ୍ନ ଦେଖା ଯାଆନ୍ତା, ତେବେ 'ଗୋଲାର ବର୍ତ୍ତମାନର ବେଗ କେତେ ଓ ଦୂରତା କେତେ, ତାହା ଅବଶ୍ୟ ହିସାବ କରିଯାଇ ପାରନ୍ତା ।

ସମ୍ଭବତଃ ଗୋଲା ଚନ୍ଦ୍ରଠାରୁ ଦୂରକୁ ଦୂରକୁ ହଟିଯାଉଥିଲା ଏବଂ ସେହି ଅନ୍ଧକାର ଛାୟା ଶୀଘ୍ର ଅତିକ୍ରମ କରିବ ବୋଲି ଅନୁମିତ ହେଉଥିଲା । ନୋହିଲେ ଏହା ଚନ୍ଦ୍ରର ଖୁବ୍ ପାଖ ହୋଇଯାଉଥିଲା ଏବଂ ଗୋଟାଏ ଉନ୍ନତ ଅଜାଣୁଆ ଶୃଙ୍ଗରେ ବାଜି ଯାତ୍ରୀମାନଙ୍କ ସହ ଛିନ୍ନବିଚ୍ଛିନ୍ନ ହୋଇଯିବ ବୋଲି ବୋଧ ହେଉଥିଲା ।

ଅର୍ଡ୍ଡାନ୍ କହିଲେ—"ଉଲ୍କା ଯେପରି ପାର୍ଥିବ ଆକର୍ଷଣ ବଳରେ ଟାଣି ହୋଇ ପୃଥିବୀରେ ପଡ଼େ, ଗୋଲା ସେହିପରି ଚନ୍ଦ୍ରର ଆକର୍ଷଣରେ ଟାଣି ହୋଇ ତହିଁରେ ପଡ଼ିଯିବ ।"

ବାର୍ବିକେନ କହିଲେ—"ସବୁ ଉଲ୍କାଗୁଡ଼ିକ ଅବଶ୍ୟ ପୃଥିବୀରେ ପଡ଼ନ୍ତି ନାହିଁ; ସାମାନ୍ୟ କେତେକ ପଡ଼ନ୍ତି । ଆମେ ଉଲ୍କା ହେଲେ ଯେ ଚନ୍ଦ୍ରରେ ନିଶ୍ଚୟ ପଡ଼ିବା, ଏହାର କୌଣସି କାରଣ ନାହିଁ । ଉଲ୍କା ସବୁ ବାୟୁମଣ୍ଡଳରେ ଘଷି ହୋଇ ଆଲୋକିତ ଦେଖାଯାନ୍ତି ଏବଂ ତହିଁରେ ଭାସିଗଲାବେଳେ ପୃଥିବୀଠାରୁ ପ୍ରାୟ ଷୋହଳ ମାଇଲ ଦୂରରେ ଥିଲେ ମଧ୍ୟ, ତହିଁରେ ପଡ଼ିଯାନ୍ତି ନାହିଁ । ତେଣୁ ଆମେ ଚନ୍ଦ୍ରର ଖୁବ୍ ନିକଟବର୍ତ୍ତୀ ହେଲେହେଁ ତହିଁରେ ପଡ଼ିଯିବାର ସମ୍ଭାବନା ନାହିଁ ।"

ଅର୍ଡ୍ଡାନ୍—"ତା ହେଲେ ଗୋଲା ଶୂନ୍ୟରେ କେଉଁ ଅବସ୍ଥା ଭୋଗ କରିବ ?"

ବାର୍ବିକେନ—"ଗୋଲା ଦୁଇ ପ୍ରକାର ଗାଣିତିକ ବକ୍ରତା ମଧ୍ୟରୁ ଯେ କୌଣସିଟା ଗ୍ରହଣ କରିପାରେ । ସାମାନ୍ୟ ଗତି ବଳରେ ତାହା

(୧) ଅଧିବୃତ୍ତ (Parabola) ପଥରେ ଯାଇପାରେ । ନଚେତ୍ ଅଧିକ ବେଗର ଗତିବଳରେ (୨) ପରାବୃତ୍ତ (Hyperbola) ପଥରେ ମଧ୍ୟ ଯାଇପାରେ ।

ଏହି ଅଧିବୃତ୍ତ ଓ ପରାବୃତ୍ତ ନେଇ ନିକୋଲ୍ ଓ ବାର୍ବିକେନ୍‌ଙ୍କ ମଧ୍ୟରେ ବହୁ ଯୁକ୍ତି ତର୍କ ଓ ଆଲୋଚନା ଲାଗିଲା । ଉଭୟେ ଗୋଟାଏ ଗୋଟାଏ ବକ୍ରତାକୁ ଅବଲମ୍ବନ କରି ସେମାନଙ୍କ ତର୍କ ଚଳାଇଥିଲେ । ମାତ୍ର ସେହି ଗାଣିତିକଧାରା ଅର୍ଡାନ୍‌ଙ୍କ ମୁଣ୍ଡରେ ଆଦୌ ପଶିପାରୁ ନ ଥିଲା । ସେ ଭାରି ବ୍ୟସ୍ତ ହୋଇ କହି ପକାଇଲେ, "ମୁଁ ତୁମର ଏ ଧାରା ଆଦୌ ବୁଝି ପାରୁନାହିଁ । ପ୍ରକୃତ କାମର କଥା ଆଲୋଚନା କର । ଆମେ ଯେକୌଣସି ଗୋଟାଏ ବକ୍ରତା ଅବଲମ୍ବନ କରିବା ନିଶ୍ଚିତ । ତା' ହେଲେ ଆମର ଶେଷ ଗତି କୁଆଡ଼କୁ ?"

ନିକୋଲ୍—"କୁଆଡ଼କୁ ନୁହେ ।"

ଅର୍ଡାନ—"ତା ମାନେ ?"

ନିକୋଲ୍—"ଏ ବକ୍ରତା ଅନନ୍ତ ବିନ୍ଦୁ ପର୍ଯ୍ୟନ୍ତ ଲମ୍ବମାନ ।"

ଅର୍ଡାନ—"ଯେବେ ଅନନ୍ତ ପଥରେ ଅନନ୍ତ ଶୂନ୍ୟରେ ଆମର ଗତି ନିଶ୍ଚିତ, ତେବେ ତୁମର ଏହି ଗାଣିତିକ ଗବେଷଣାରୁ କି ମିଳିବ ?"

---

(୧) ଅଧିବୃତ୍ତ—ଯେଉଁ ସମାନ୍ତର ରେଖାଦ୍ୱୟ ଅଧିକ ଦୂର ଗତି କରି କ୍ରମଶଃ ସଙ୍କୁଚିତ ହୁଅନ୍ତି ।

(୨) ପରାବୃତ୍ତ—କ୍ଷେତ୍ର ତତ୍ତ୍ୱର ବକ୍ରରେଖା ବିଶେଷ ।

ବୈଜ୍ଞାନିକ ଦୁହେଁ ଏ କଥା ଶୁଣି ହସି ଉଠିଲେ । ଏପରି ଗୋଟାଏ ଅସ୍ୱାଭାବିକ ମୁହୂର୍ତ୍ତରେ ସେମାନେ ଏପରି ଗୋଟାଏ ଅଦରକାରୀ ଆଲୋଚନା କେବେ କରି ନ ଥିଲେ । ମୋଟ ଉପରେ ଭୀଷଣ ସତ୍ୟ ଏହି ଯେ, ଗୋଲା ଯେଉଁକୌଣସି ବକ୍ରତା ଅବଲମ୍ବନ କରୁ ନା କାହିଁକି, ଆଉ ପୃଥିବୀ କିମ୍ବା ଚନ୍ଦ୍ରର ସ୍ପର୍ଶରେ ଆସିବ ନାହିଁ ।

ଏପରି ଘଟଣାରେ ଖୁବ୍ ନିକଟରେ ଏମାନଙ୍କର କି ଅବସ୍ଥା ହେବ ? ସେମାନେ ଯଦି କ୍ଷୁଧା ତୃଷ୍ଣାରେ ମରି ନ ଯାନ୍ତି, ତେବେ ଗ୍ୟାସ ସରିଗଲେ ଅଳ୍ପକେ ଅମ୍ଳଜାନ ଅଭାବରେ ମରିଯିବେ । ତା' ପୂର୍ବରୁ ମଧ୍ୟ ଅତିରିକ୍ତ ଥଣ୍ଡା ତାଙ୍କ ମୃତ୍ୟୁ ଘଟାଇ ପାରେ ।

ଗବାକ୍ଷଦେଇ ପର୍ଯ୍ୟବେକ୍ଷଣ କରିବା କାମ ବଡ଼ ଅସମ୍ଭବ ହୋଇ ଉଠିଲା । ଭିତରର ବାଷ୍ପ ଗବାକ୍ଷ କାଚ ଦେହରେ ଲାଗିଗଲା ମାତ୍ରକେ ବରଫ ହୋଇ ଯାଉଥିଲା । ତେଣୁ ସେମାନେ କାଚସବୁକୁ ବାରମ୍ବାର ପୋଛି ସଫାକରି ଦେଉଥିଲେ । ଯାହାହେଉ ଏହି ଉପାୟରେ ସେମାନେ ଯେ କେତେକ ବିଷୟ ପର୍ଯ୍ୟବେକ୍ଷଣକରି ଲିପିବଦ୍ଧ କରିପାରିଥିଲେ, ତାହା ବାସ୍ତବିକ ହୃଦୟଗ୍ରାହୀ ।

ଅଦୃଶ୍ୟମଣ୍ଡଳରେ ବାୟୁଥିଲେ, ଉଲ୍‌କାସବୁ ତା ଭିତର ଦେଇ ନିଶ୍ଚୟ ଯାତାୟାତ କରୁଥାନ୍ତା । ତରଳ ବାୟୁମଣ୍ଡଳରେ ଗୋଲା ଗତି କରୁଥିଲେ, ସେମାନେ କ'ଣ ବାତ୍ୟା, ଘଡ଼ଘଡ଼ି, କିମ୍ବା ଆଗ୍ନେୟ ଉଦ୍‌ଗମନ ଶବ୍ଦ ଶୁଣିପାରନ୍ତେ ନାହିଁ ? ବାର୍ବିକେନ୍ ଓ ନିକୋଲ୍ ଗବାକ୍ଷରେ ମୁହଁଦେଇ ଏସବୁ କଥା ଲକ୍ଷ୍ୟ କରିବା ପାଇଁ ଚେଷ୍ଟା କରୁଥିଲେ । ମାତ୍ର ଅଦୃଶ୍ୟ ମଣ୍ଡଳର ଅବସ୍ଥା ଯାହା ତାହା । ତହିଁରେ କୌଣସି ପରିବର୍ତ୍ତନ ବା ନୂତନ ଦୃଶ୍ୟ ସେମାନେ ଏପର୍ଯ୍ୟନ୍ତ ଦେଖି-ପାରି ନ ଥିଲେ ।

ଅର୍ଡାନଙ୍କର ଗୋଟାଏ ପ୍ରଶ୍ନର ଉତ୍ତର ଦେଇ ନିକୋଲ୍ କହିଲେ, "ଚନ୍ଦ୍ର ଦେହରେ ଅନ୍ଧକାର ଘୋଟିଥିଲାବେଳେ, ଅମେ ଯାତ୍ରା କରିଥିଲେ, ବହୁତ ଉପକାର ହୋଇଥାନ୍ତା । ଅମେ ପୃଥିବୀକୁ ପୂର୍ଣ୍ଣିମା ଅଲୋକରେ ଝଲ୍‌ମଲ୍ ହେଉଥିବାର ଦେଖିଥାନ୍ତୁ ଏବଂ ଚନ୍ଦ୍ରର ଏହି ଅଂଶରେ ଅନ୍ଧକାର ନ ଦେଖି ପୂର୍ଣ୍ଣରୂପେ ଅଲୋକିତ-ଥିବାର ଦେଖିଥାନ୍ତୁ । ସେ ଅବସ୍ଥା ଅମ ପର୍ଯ୍ୟବେକ୍ଷଣକୁ ସହସ୍ର ସୁବିଧା ଦେଇଥାନ୍ତା ।"

ବାର୍ବିକେନ୍ କହିଲେ, "ତା ଅବଶ୍ୟ ହୋଇଥାନ୍ତା । ମାତ୍ର ଅମେ ଯାତ୍ରାକାଳରେ ଅମ ଲକ୍ଷ୍ୟ ସ୍ଥଳକୁ ପୂର୍ଣ୍ଣରୂପେ ନ ଦେଖି ଯାତ୍ରା କରନ୍ତୁ କିପରି ? ଧର, ଅମ୍ଭେମାନେ ଚନ୍ଦ୍ର ଦେହରେ ପଡ଼ିଯାଇଥାନ୍ତୁ । ତେବେ ଘୋର ଅନ୍ଧକାର ଭିତରେ ଅମେ ଅମ ଲକ୍ଷ୍ୟ ବସ୍ତୁର କି ଧାରଣା କରନ୍ତୁ ? ଅମେ ଦୃଶ୍ୟଲୋକରେ ଚଳାଚଳ ହୋଇ ଅଗ ସେଠାରେ ଅବସ୍ଥିତ ରହିଲ ପରେ ସୁବିଧାକ୍ରମେ ଏ ଅଞ୍ଚଳ ଅବିଷ୍କାର କରିବାକୁ ଅସନ୍ତୁ ନାହିଁକି ? ତେଣୁ ପୂର୍ଣ୍ଣିମା ସମୟରେ ଯାତ୍ରା ଅମପକ୍ଷରେ ଉପଯୁକ୍ତ ହୋଇଅଛି ।"

ଏହାମଧ୍ୟରେ ବହୁତ ଲକ୍ଷ୍ୟ କରି ବାର୍ବିକେନ୍ ଠିକ୍ କଲେ ଯେ, ଗୋଲାର ତଳଭାଗ ଚନ୍ଦ୍ର ଅଡ଼କୁ ଡଳିପଡ଼ିଛି । ସେଥିରୁ ସେ ବୁଝିପାରିଲେ ଯେ ଗୋଲାପ୍ରତି କେନ୍ଦ୍ରର ଅକର୍ଷଣ ଅରମ୍ଭ ହୋଇଅଛି । ତାହାହେଲେ ସେମାନେ ଚନ୍ଦ୍ର ଦେହରେ ଯାଇ ପଡ଼ି ପାରିବେ । ଏପରି ଅଲୋଚନା କରୁ କରୁ ଦୂର ଚକ୍ରବାଳରେ ଗୋଟାଏ ଉଜ୍ଜ୍ୱଳ ଜ୍ୟୋତିର୍ମୟ ପଦାର୍ଥ ନିକୋଲ ଦେଖିବାକୁ ପାଇଲେ । ଘନାନ୍ଧକାର ମଧ୍ୟରେ ତାହା ଦପ୍‌ଦପ୍ ହୋଇ ଜଳୁଥିଲା । ତାକୁ ଲକ୍ଷ୍ୟ କରୁ କରୁ ତାହା କ୍ରମଶଃ ବଡ଼

ହୋଇ ଦେଖାଗଲା । ତାକୁ ସେମାନେ ଗୋଟାଏ ତାରା ବୋଲି ମନେକଲେ । ତଥାପି ଏହିଁରୁ ପ୍ରମାଣିତ ହେଲା ଯେ, ଗୋଲା ଚନ୍ଦ୍ର ଦେହରେ ପଡ଼ିବାକୁ ଯାଉନାହିଁ । ତାହା ସେହି ଅଧଳକ ଦିଗରେ ସମାନ୍ତର ଭାବରେ ଗତି କରୁଛି ।

ନିକୋଲ୍ ପାଟିକରି କହିଲେ, "ଏହା ଗୋଟାଏ ଅଗ୍ନେୟଗିରି, ତାରକା ନୁହେଁ । ଏହା ଚନ୍ଦ୍ର ଗର୍ଭର ତରଳ ଧାତୁ ଊର୍ଦ୍ଧ୍ୱକୁ ନିକ୍ଷିପ୍ତ କରୁଛି । ତାହାହେଲେ ଏହି ପୃଥିବୀ ଏପର୍ଯ୍ୟନ୍ତ ଲିଭିଯାଇ ନାହିଁ, ସଜୀବ ଅଛି ।"

ବାର୍ବିକେନ ତାଙ୍କ ଦୂରବୀକ୍ଷଣ ସାହାଯ୍ୟରେ ଲକ୍ଷ୍ୟକରି ତାହା ଗୋଟାଏ ଅଗ୍ନେୟଗିରି ବୋଲି ସ୍ଥିର କଲେ । ଚନ୍ଦ୍ର ଦେହରେ ବାୟୁଥିବାର ଏଥିରୁ ଏକପ୍ରକାର ନିଷ୍ପତ୍ତି ହୋଇପାରେ । ମାତ୍ର ସବୁ-ସମୟରେ ଏପରି ଘଟେ ନାହିଁ । ଅଗ୍ନେୟଗିରି କେତେକ ଦ୍ରବ୍ୟର ସମିଶ୍ରଣରେ ଅଙ୍ଗାରକାମ୍ଳ ବାଷ୍ପ ସୃଷ୍ଟି କରେ ଏବଂ ସେହି ବଳରେ ନିଜର ଅଗ୍ନିଶିଖା ଶୂନ୍ୟକୁ ଉତ୍କ୍ଷିପ୍ତ କରିପାରେ । ବାୟୁର ସାହାଯ୍ୟ ଆବଶ୍ୟକ ହୁଏ ନାହିଁ । ସୁତରାଂ ଏଥିରୁ ଚନ୍ଦ୍ରରେ ବାୟୁଥିବା ବିଷୟ ନିଷ୍ପତ୍ତି କରିବା ଠିକ୍ ହେବନାହିଁ ବୋଲି ବାର୍ବିକେନ ମତଦେଲେ ।

ସେହି ଅଗ୍ନିଦଗ୍ଧ ପର୍ବତ ଅଦୃଶ୍ୟ ଅଞ୍ଚଳର ୪୫ ଅକ୍ଷାଂଶରେ ଅବସ୍ଥିତ ଥିଲା; କିନ୍ତୁ ଗୋଲାର ଗତି ଏତେ ଚଞ୍ଚଳ ହେଉଥିଲା ଯେ, ତାକୁ ପ୍ରଥମେ ଦେଖିବାର ଅଧଘଣ୍ଟାକ ମଧ୍ୟରେ ତାହା ଦୃଷ୍ଟିରେଖାରୁ ଅତୀତ ହୋଇଗଲା । ତେଣୁ ବାର୍ବିକେନ ତା ବିଷୟରେ କୌଣସି ପର୍ଯ୍ୟବେକ୍ଷଣ କରି ନ ପାରି ହତାଶ ହୋଇ ପଡ଼ିଲେ । ତଥାପି ଏଥିରୁ ଏତିକି ତଥ୍ୟ ମିଳିଲା ଯେ, ଅଗ୍ନେୟଗିରି ଥିବାଠାରେ ଏ ଅଞ୍ଚଳରେ

ନିଷ୍ଟୟ ଜୀବଜନ୍ତୁ ଓ ବନଲତା ଥିବେ ଏବଂ ଆକାଶରୁ ନିଷ୍ଟୟ ବର୍ଷା ଉପଭୋଗ କରୁଥିବେ ।

ଯାତ୍ରୀମାନେ ଏହିପରି ଚିନ୍ତାରେ ନିମଗ୍ନ ଥିଲାବେଳେ, ଗୋଟାଏ ଅଭୂତପୂର୍ବ ଘଟଣା ଆସି ଉପସ୍ଥିତ ହେଲା । ତାହା ଏପରି ଏକ ଭୀଷଣ ଦୃଶ୍ୟ ଯାହା ପ୍ରଭାବରେ ଗୋଲା ଶତଖଣ୍ଡ ହୋଇ ଉଡ଼ିଯିବ ଏବଂ ତହିଁ ସଙ୍ଗେ ସେମାନଙ୍କ ଭାଗ୍ୟମଧ୍ୟ ଗୁନ୍ଡା ହୋଇଯିବ । ତାହା ଏହିପରି, ଭୀଷଣ ଅନ୍ଧକାରାଚ୍ଛନ୍ନ ଇଥର ମଧ୍ୟରେ ଗୋଟାଏ ବିରାଟ ବସ୍ତୁ ଦେଖାଗଲା । ତାହା ଗୋଟାଏ ଚନ୍ଦ୍ର ପରି, କିନ୍ତୁ ତାହା ଏତେ ତେଜସ୍ଵାନ ଯେ, ତାହା ଆଡ଼କୁ ଚାହିଁବା କଠିନ । ଏହି ଗୋଲାକାର ବସ୍ତୁଟି ଏତେ ଜୋର୍‌ରେ ଆଲୋକ ବାହାର କରୁଥିଲା ଯେ ତହିଁରେ ଗୋଲା ଭିତର ଆଲୋକିତ ହୋଇଗଲା ।

ତାହା ଗୋଟାଏ ବିରାଟ ଆଗ୍ନେୟ ଗୋଲକ । ଯେଉଁ ତେଜୋମୟ ଉଲ୍‌କାସବୁ ପୃଥିବୀ ପୃଷ୍ଠରୁ ଦେଖାଯାଏ, ତାର ଆଲୋକ ଚନ୍ଦ୍ରଲୋକଠାରୁ ବହୁତ ହୀନତର । ମାତ୍ର ଏହା ଏତେ ଦୀପ୍ତିମାନ ଓ ଏତେ ଜାଜ୍ଵଲ୍ୟମାନ ଯେ ଚନ୍ଦ୍ରଲୋକ ଏହା ସଙ୍ଗେ ତୁଳନା କରାଯାଇ ନ ପାରେ । ଏହି ଆଗ୍ନେୟ ଗୋଲକ ଘନ ଅନ୍ଧକାର ରାଶି ଭେଦକରି ସେମାନଙ୍କଠାରୁ ପ୍ରାୟ ୩୦୦ ମାଇଲ ଦୂରରେ ପ୍ରଥମେ ଦେଖାଗଲା । ବାର୍ବିକେନ ତାର ପରିଧି ହିସାବ କରି ୧୨୫୦ ମାଇଲ ଥିବାର ସ୍ଥିର କଲେ । ତାହା ପ୍ରତି ମିନିଟରେ ୯୦ ମାଇଲ ଜୋରରେ ଗତି କରୁଥିଲା ଏବଂ ଗୋଲାଆଡ଼କୁ ଖୁବ୍ ଜୋରରେ ମାଡ଼ି ଆସୁଥିଲା । ତାହା କ୍ରମଶଃ ନିକଟବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ବୃହତରୁ ବୃହତ୍ତର ଦେଖା ଯାଉଥିଲା ।

ଏପରି ଅବସ୍ଥାରେ ଯାତ୍ରୀମାନଙ୍କ କଥା ସହଜରେ ଅନୁମେୟ । ତାହା ଏକବାରେ ବର୍ଣ୍ଣନାତୀତ । ସେମାନଙ୍କ ଶତ ସାହସ, ଶତଧୈର୍ଯ୍ୟ ଓ ଶତ ବେପରୁଆ ଭାବ ସତ୍ତ୍ୱେ ସେମାନେ ବୋକା ବନି ସ୍ତମ୍ଭିତ ହୋଇଗଲେ । ସେମାନଙ୍କ ଅଙ୍ଗପ୍ରତ୍ୟଙ୍ଗ ଅବଶ ହୋଇଗଲା । ଭୟ ଆସି ସେମାନଙ୍କୁ ଗ୍ରାସ କରିଦେଲା । ଗୋଳାର ଗତି ସେମାନଙ୍କ ଅଖ୍ତିଆରରେ ନ ଥିଲା । ତାହା ବର୍ତ୍ତମାନ ସେହି ଅଗ୍ନିପିଣ୍ଡ ଆଡ଼କୁ ଦ୍ରୁତ ବେଗରେ ମାଡ଼ି ଯାଉଥିଲା । ସେମାନେ ମନେକଲେ, ସେପରି ଗୋଟାଏ ବିରାଟ ଅଗ୍ନିଗର୍ଭରେ ପଡ଼ି ସେମାନେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯିବେ ।

ବାର୍ବିକେନ ତାଙ୍କ ବନ୍ଧୁମାନଙ୍କ ହାତଧରି ପକାଇଲେ ଓ ବ୍ୟାକୁଳ ଭାବରେ ଅଗ୍ନେୟ ଗୋଲକ ଆଡ଼କୁ ଚାହିଁ ରହିଲେ । ଆଉ ଦୁଇ ମିନିଟ ମଧ୍ୟରେ ଗୋଳାଯାଇ ତା ଦେହରେ ବାଜିଯିବ । ଏପରି ସମୟରେ ସେ ବିରାଟ ଅଗ୍ନିଗୋଲକ ବମ୍ ଫାଟିଲା ପରି ଫାଟିଗଲା । ମାତ୍ର ପବନର ସ୍ରୋତ ନ ଥିବାରୁ ତାର ଶବ୍ଦ ଶୁଣା ଗଲା ନାହିଁ । ତାହା ଫାଟିଯିବା ସଙ୍ଗେ ସଙ୍ଗେ ଛୋଟ ଛୋଟ ଅଗ୍ନିକଣାମାନ ଦିଗ୍ ଦିଗନ୍ତରେ ବିଛେଇ ହୋଇଗଲା । ତହିଁରୁ ଯେଉଁ ବିଭିନ୍ନ ରଙ୍ଗସବୁ ଦେଖାଗଲା, ତାହା ଏତେ ମହନୀୟ, ଏତେ ନୟନ-ମନ-ମୋହନ-କାରୀ ହେଲା ଯେ, ତାହା ବର୍ଣ୍ଣନା କରିଯାଇ ନ ପାରେ ।

ସହସ୍ର ସହସ୍ର ଅଗ୍ନିକଣା ଚାରିଆଡ଼େ ବ୍ୟାପିଯାଇ ସେମାନଙ୍କ ଉଦ୍‌ବେଗାକୁଳ ଆଲୋକମାଳାରେ ଦଶଦିଗ ଆଲୋକମୟ କରି-ଦେଲେ । ସେମାନଙ୍କ ଆକାର ନାନାରକମ ଓ ରଙ୍ଗ ମଧ୍ୟ ବହୁ ପ୍ରକାରର । କିଏ ହଳଦିଆ, କିଏ ନାଲି, କିଏ ଶାଗୁଆ, କିଏ ଧୂସର, କିଏ ବା ନୀଳ, ଏପରି ବହୁ ରଙ୍ଗର ସମାବେଶ ତହିଁରେ ଦେଖା-

ଗଲା । ତାହା ଦେଖି ମନେ ହେଲା, ଯେପରି ଗୋଟାଏ ବିରାଟ ହାବେଳୀ ବିଶ୍ୱ ସ୍ରଷ୍ଟାଙ୍କ ଦ୍ୱାରା ଦଗାଯାଇ ଅସୀମ ଶୂନ୍ୟରେ ଫାଟି-ଯାଇଛି ଓ ବିଭିନ୍ନ ରଙ୍ଗର ନକ୍ଷତ୍ର ଚାରିଆଡ଼େ ବୁଣି ଦେଉଛି । ଅଗ୍ନିକଣାସବୁ କିଏ ତରବାରି ପରି ଚକ୍ ଚକ୍, କିଏ ଧଳା ବାଷ୍ପରେ ଆବୃତ, କାହା ପଛରେ ଗୋଟାଏ ଧୂସର ବର୍ଣ୍ଣର ଲାଞ୍ଜ । ତାହା ସବୁ ପରସ୍ପର ଦେହରେ ଘଷି ହୋଇ ଯାଉଥିଲା । କିଏ ଅପରକୁ ଧକ୍କା ଦେଉଥିଲା ଏବଂ କିଏ କୁଆଡ଼େ ବଲିଖି ହୋଇ ପଡ଼ୁଥିଲା । ସେଥିରୁ ଗୋଟାଏ କଣା ଆସି ଗୋଲକୁ ଖୁବ୍ ଜୋରରେ ଆଘାତ କଲା । ତହିଁରେ ବାମ ଗବାକ୍ଷର କାଚ ଫାଟିଗଲା । ଏପରି ଆଉ ଗୋଟାଏ ଦୁଇଟା କଣାର ଆଘାତରେ ଗୋଲ କଥା ଶେଷ ।

ପରିବ୍ୟାପ୍ତ କଣା ସମୂହର ଆଲୋକମାଳା ଏତେ ତୀବ୍ର ଓ ଏତେ ଉଜ୍ଜ୍ୱଳ ହୋଇ ଉଠିଲା ଯେ ତାହା ସୂର୍ଯ୍ୟାଲୋକଠାରୁ ବଳିଗଲା । ବାର୍ବିକେନ୍ ଓ ନିକୋଲ୍ ଚନ୍ଦ୍ର ଆଡ଼କୁ ଦୃଷ୍ଟି ଦେଇ ଚିତ୍କାର କରି ଉଠିଲେ, "ଆରେ ! ଅଦୃଶ୍ୟ ଚନ୍ଦ୍ରମଣ୍ଡଳ ଏବେ ପରିଷ୍କାର ଦେଖା-ଗଲା ଯେ !" ତା' ପରେ ସେ ଜନହେଁ ଆଉ ଆସନ୍ନ ବିପଦ ଆଡ଼କୁ ଦୃଷ୍ଟି ନ ଦେଇ ଚନ୍ଦ୍ରକୁ ଚାହିଁ ବାରେ ଲାଗିଲେ ।

ସେମାନେ ଏତେ ଦୂରରୁ କଅଣ କଅଣ ସବୁ ଦେଖିଲେ, ତାହା ଠିକ୍ ରୂପେ ନିର୍ଣ୍ଣୟ କରି ପାରିଲେ ନାହିଁ । ତଥାପି ସେହି କମ୍ ସମୟ ଭିତରେ ସେମାନେ ମୋଟାମୋଟି ଲକ୍ଷ୍ୟ କଲେ ଯେ, ସେ ଅଂଶରେ ମେଘମାଳା ଖୁବ୍ କମ୍ ପରିମାଣରେ ଦେଖାଯାଉଛି । ବଡ଼ ବଡ଼ ପର୍ବତମାଳା ବିରାଟ ଶୃଙ୍ଗମାନ ଟେକି ରହିଥିଲେ । ବିରାଟ ବରଫ ପ୍ରାନ୍ତରସବୁ ଅନେକ ସ୍ଥାନରେ ବିଛେଇ ହୋଇ ରହିଥିଲା । ଦୃଶ୍ୟମାନ ଅଂଶପରି ଏ ଅଂଶରେ ମଧ୍ୟ ନିର୍ବାପିତ ଆଗ୍ନେୟଗିରିସବୁ

ଅନେକ ସ୍ଥାନରେ ଦେଖା ଯାଉଥିଲେ । ବହୁଦୂର ବିସ୍ତୃତ ସ୍ଥଳଭାଗ-ମାନ, ଖୁବ ବଡ଼ ସାଗରମାନ ଓ ମହାସାଗରମାନ ଗ୍ରହଅର୍ଦ୍ଧେ ବ୍ୟାପି ରହିଥିଲେ । ସାଗର ଜଳରେ ଏହି ବିରାଟ ଅଗ୍ନି ଜନ୍ତ୍ରବର ପ୍ରତିବିମ୍ବ ପ୍ରତିଫଳିତ ହେଉଥିବାର ସେମାନେ ଲକ୍ଷ୍ୟ କରିଥିଲେ । ବିସ୍ତୃତ ସ୍ଥଳଭାଗମାନଙ୍କରେ ଅନେକ କଳା ଦାଗ ଦେଖା ଯାଉଥିଲା । ତାକୁ ସେମାନେ ଅରଣ୍ୟବହୁଳ ଅଞ୍ଚଳ ବୋଲି ମନେ କଲେ ।

କ୍ରମେ କ୍ରମେ ଅଗ୍ନିକଣାସବୁ ଲିଭିଗଲା । ବିରାଟ ଆଲୋକ-ମାଳା ସଙ୍କୁଚିତ ହୋଇଗଲା । ଅନେକ ଅଗ୍ନିକଣା ଅସୀମ ଦୂରକୁ ବ୍ୟାପି ଚାଲିଗଲେ । ଚନ୍ଦ୍ରର ଚନ୍ଦ୍ରର ଅନ୍ଧକାର ଘୋଟିଗଲା । ଯେଉଁ ତାରାମାନେ ଆଲୋକ ଯୋଗେ ଛପି ଯାଇଥିଲେ, ସେମାନେ ପୁଣି ଜଳି ଉଠିଲେ । ଚନ୍ଦ୍ରର ସମସ୍ତ ଅଂଶ ପୁଣି ଘୋର ଅନ୍ଧକାରରେ ବୁଡ଼ିଗଲା ।

---

—ତେଇଶ—

## ଦକ୍ଷିଣ ମେରୁ ଓ ଟାଇକୋ

ଟୋଲ ଗୋଟାଏ ଅକସ୍ମାତ ଘୋର ବିପଦରୁ ଉଦ୍ଧାର ପାଇଲେ । ଏପରି ଗୋଟାଏ ବିରାଟ ଅଗ୍ନିପିଣ୍ଡ ତାଙ୍କୁ ଇଥର ସମୁଦ୍ରରେ ଭାସି ଭାସି ଏପରି ଯୁଝିଛନ୍ତି, ଏହା କେଉଁ ଲୋକ ଅବସ୍ଥା ସୃଷ୍ଟି କରିବ, ଏକଥା କିଏ ତାଙ୍କର କଳ୍ପନା କରନ୍ତା ? ଏପରି ଗୋଟାଏ ଗୋଟାଏ ଭ୍ରମଣକାରୀ ପିଣ୍ଡ ଅକସ୍ମାତ ଭାବରେ ଆସି ସେମାନଙ୍କର ଯେଉଁ ବିପଦ ଓ ଆଶଙ୍କା ଘଟାଇ ଦେଇଛନ୍ତି, ତାହା ସେମାନଙ୍କ କଳ୍ପନାର ବାହାରେ । ସୁତରାଂ ଏସବୁ ପାଇଁ ଲୋକ ଆଗରୁ ପ୍ରସ୍ତୁତ ହେବା ଅସମ୍ଭବ ।

ସେତେବେଳକୁ ୩ ଟା ୩୦ ମିନିଟ୍ । ଗୋଲା ସେତେବେଳକୁ ଚନ୍ଦ୍ରକୁ ପ୍ରଦକ୍ଷିଣ କରି ଯାଉଥିଲା । ଚନ୍ଦ୍ର ଦେହରେ କଳ୍ପିତ ସମାନ୍ତର ରେଖାର ମିଳନ ବିନ୍ଦୁ ଅତିକ୍ରମ କରି ଗୋଲା ଗତି କରୁଥିଲା ପରି ସନ୍ଦେହ ହେଉଥିଲା । ତା ହେଲେ ସୂର୍ଯ୍ୟର ବିପରୀତ ପାର୍ଶ୍ୱରେ ଏହା ବରାବର ଭାସି ରହିବା ସମ୍ଭବ । ତା ହେଲେ ତାଙ୍କୁ ଅନନ୍ତ ଅନ୍ଧକାର ଚିରଦିନ ପାଇଁ ଭୋଗିବାକୁ ହେବ । ଏପରି ମତ ସ୍ଥିର ହୋଇଯିବାରୁ ବାର୍ବିକେନଙ୍କ ମୁଣ୍ଡ ଘୂରିଗଲା । ସେ କେଉଁ ଅନନ୍ତ ରହସ୍ୟର ସାକ୍ଷୀ ହେବେ, ତାହା ସ୍ଥିର କରି ପାରିଲେ ନାହିଁ ।

ଏହାପରେ ଖାନାପିନା ଚାଲିଲା । ମାତ୍ର ଏଥିରେ କାହାରି ମନ ନ ଥିଲା । ଖାନାସାରି ସାଙ୍ଗେ ସାଙ୍ଗେ ସେମାନେ ଯାଇ ଗବାକ୍ଷ ନିକଟରେ ଠିଆ ହେଲେ । ଗବାକ୍ଷର କାଚସବୁ ସବୁବେଳେ ଘନ ବରଫରେ ଢାଙ୍କିହୋଇ ଯାଉଥାଏ । ତାକୁ ବାରମ୍ବାର ସଫା କରାଯାଉ ଥାଏ ।

୫ଟା ୪୫ ମିନିଟ ସମୟରେ ନିକୋଲ ତାଙ୍କ ଶକ୍ତିଶାଳୀ ଦୂରବୀକ୍ଷଣରେ ସ୍ପଷ୍ଟ ଦେଖିବାକୁ ପାଇଲେ, ବହୁ ଦୂରରେ ଚନ୍ଦ୍ରର ଦକ୍ଷିଣ ଅଞ୍ଚଳରେ ଚକ୍ରବାଳ ଟିକିଏ ବାଦ ହୋଇ ଜଣା ଯାଉଛି । ତାପରେ ସେ ଖୁବ ଉତ୍ସାହରେ ସ୍ପଷ୍ଟ ଦେଖିଲେ, ସେଠାରେ ଘୋର ଅନ୍ଧକାର ମଧ୍ୟରେ ଦୁଇ ତିନୋଟି ଆଲୋକ ବିନ୍ଦୁ ଦେଖା ଯାଉଛନ୍ତି । ସେ ଓ ବାର୍ବିକେନ ବହୁତ ଲକ୍ଷ୍ୟକରି ଦେଖିଲେ, ତାହା ଦକ୍ଷିଣ ମେରୁ ଅଞ୍ଚଳର ଖୁବ ଉନ୍ନତ ଶୃଙ୍ଗ । ସେ ଆଲୋକ ଅଗ୍ନେୟଗିରିର ଆଲୋକ ବୋଲି ବୋଧ ହେଲାନାହିଁ । ତାହା ସେ ଆଉ ଗୋଟାଏ ବ୍ୟୋମପିଣ୍ଡ, ଏହାମଧ୍ୟ ସେମାନଙ୍କ ମନକୁ ଆସିଲା ନାହିଁ ।

ବାର୍ବିକେନ ବହୁ ଚିନ୍ତାପରେ କହିଲେ, "ଏହା ସୂର୍ଯ୍ୟାଲୋକ, ଦକ୍ଷିଣମେରୁର ଶୃଙ୍ଗମାନଙ୍କୁ ଆଲୋକିତ କରୁଛି ।" ନିକୋଲ ଓ ମାଇକେଲ ଖୁବ୍ ଆଶ୍ଚର୍ଯ୍ୟ ହୋଇ କହିଲେ, "କଣ ସୂର୍ଯ୍ୟାଲୋକ ?"

ବାର୍ବିକେନ—"ହଁ, ବନ୍ଧୁମାନେ । ଆମେ ନିଃସନ୍ଦେହରେ ଦକ୍ଷିଣମେରୁ ଆଡକୁ ଅଗ୍ରସର ହେଉଛୁ ।"

ଆର୍ଡାନ୍—"ଉତ୍ତରମେରୁ ଅତିକ୍ରମ କରି ସାରି ଆମେ ଦକ୍ଷିଣମେରୁ ଆଡ଼କୁ ଗଲୁଣି । ତେବେ କଣ ଆମେ ଚନ୍ଦ୍ରର ଗୋଟାଏ ଉପଗ୍ରହ ?"

ବାର୍ବିକେନ—"ହଁ, ମାଇକେଲ ।"

ଆର୍ଡାନ୍—"ତାହେଲେ ସମାନ୍ତର ରେଖାର ମିଳନବିନ୍ଦୁ ବା ଖୋଲା ବକ୍ରରେଖାର ଭୟ ଆଉ ନାହିଁ ?"

ବାର୍ବିକେନ—"ନାହିଁ, କିନ୍ତୁ ବନ୍ଦ ବକ୍ରରେଖାର ଭୟ ଅଛି ।"

ଅର୍ଡାନ୍—"ଏହାର ଅର୍ଥ ?"

ବାର୍ବିକେନ—"ଏହାର ଅର୍ଥ-ଅଣ୍ଡାକାର ପଥ । ଅନନ୍ତ ଶୂନ୍ୟରେ ଲୋପ ପାଇ ନ ଯାଇ ଗୋଲା ଚନ୍ଦ୍ର ଗ୍ରହପଟେ ଅଣ୍ଡାକାର ପଥ ଧରିବା ଖୁବ୍ ସମ୍ଭବ । ଏହା ଚନ୍ଦ୍ରର ଉପଗ୍ରହ ହୋଇପାରେ । "

ଅର୍ଡାନ୍—"କଣ ? ଉପଗ୍ରହର ଉପଗ୍ରହ ?"

ବାର୍ବିକେନଙ୍କ ମତ ଖୁବ ଠିକ । ଚନ୍ଦ୍ରଗ୍ରହପଟେ ଗୋଟାଏ କକ୍ଷ ଠିକ କରି ଗୋଲାଟାର ଗୋଟାଏ ଉପଗ୍ରହ ହେବାକୁ ଯାଉଛି । କେନ୍ଦ୍ରାପସାରଣୀ ଓ କେନ୍ଦ୍ରପ୍ରସାରଣୀ ଶକ୍ତିଦ୍ୱୟର ସମାବେଶରେ ଗୋଲା ଯେଉଁ ଦଶା ପାଉଛି; ତାହାଭିତ୍ତି ବାର୍ବିକେନଙ୍କ ମନରେ ସୁଖ ଶାନ୍ତି ରହିଲାନାହିଁ । ପୁଣି ଚନ୍ଦ୍ରର ଦୃଶ୍ୟମାନ ଅଞ୍ଚଳ ସେମାନେ ଦେଖିବାକୁ ପାଇବେ । ପୃଥିବୀରେ ପୂର୍ଣ୍ଣିମାର ଆବିର୍ଭାବ ହୋଇ ତାହା ଯେପରି ଦ୍ରବ୍ୟ ଆଲୋକରେ ଝଲମଲ ହୋଇ ଉଠିବ, ତାହା ଦେଖିବା ପର୍ଯ୍ୟନ୍ତ ସେମାନେ ବୋଧହୁଏ ବଞ୍ଚି ରହିବେ ଏବଂ ସେମାନଙ୍କ ପ୍ରିୟ ପୃଥିବୀକୁ ଶେଷଥର ପାଇଁ ଅଭିବାଦନ କରିବାର ସୁଯୋଗ ବୋଧହୁଏ ସେମାନେ ପାଇ ପାରିବେ । ତାପରେ ତାଙ୍କ ଗୋଲା ଗୋଟିଏ ନିର୍ଜୀବପିଣ୍ଡ ପିଣ୍ଡ ପରି ଅନନ୍ତ ଇଥର ସାଗରରେ ଭାସି ବୁଲିବ । ସେମାନେ ଯେ ଘୋରଅନ୍ଧକାରରାଶିରୁ ଉଦ୍ଧାର ପାଇ ଅଳ୍ପ କାଳରେ ସୂର୍ଯ୍ୟାଲୋକିତ ଅଞ୍ଚଳ ଦେଖିପାରିବେ, ଏହି ଆଶା ସେମାନଙ୍କୁ ଟିକିଏ ଆଶ୍ୱସ୍ତ କଲା ।

ଠିକ୍ ଛଅଟାବେଳେ ଗୋଲା ଦକ୍ଷିଣମେରୁ ଉପରେ ଗଡ଼ିଗଲା । ସେତେବେଳେ ତାର ଦୂରତା ମୋଟେ ୩୦ ମାଇଲ । ଉତ୍ତର ମେରୁର ଦୂରତା ସଙ୍ଗେ ପ୍ରାୟ ସମାନ । ତା ହେଲେ

ଅଣ୍ଡାକାର ପଥରେ ଗୋଲା ଯେ ଠିକ୍ ଚାଲିଛି, ତାହା ନିଃସନ୍ଦେହରେ ପ୍ରମାଣିତ ହେଲା ।

ଯାତ୍ରୀମାନେ ପୁଣି ସୂର୍ଯ୍ୟାଲୋକ ଭିତରେ ପ୍ରବେଶ କଲେ । ପୁଣି ଆଲୋକିତ ଚନ୍ଦ୍ରମଣ୍ଡଳ ସେମାନଙ୍କ ଆଖିରେ ପଡ଼ିଲା । ଆଲୋକ ସଙ୍ଗେ ସଙ୍ଗେ ଉତ୍ତାପ ମଧ୍ୟ ଆସି ଗୋଲାକୁ ଓ ତା ଭିତରକୁ ଉତ୍ତପ୍ତ କଲା । ତେଣୁ ବରଫସବୁ କୁଆଡ଼େ କୁହୁକ ପରି ଉଡ଼ିଗଲା, କାଚମାନଙ୍କରେ ବାହାର ପରିଷ୍କାର ଦେଖାଗଲା । ସେମାନେ ଗ୍ୟାସ୍ ଜାଳି ଯାହା ଗୋଲାକୁ ଆଲୋକିତ କରୁଥିଲେ ତାହା ବନ୍ଦକରି ଦେଲେ ।

ସେତେବେଳେ ଗୋଲାର ତଳ ଭାଗ ଅଳ୍ପ ଚନ୍ଦ୍ରଅଡ଼କୁ ନ ରହି 'କଣ୍ଟିତ୍ ତେର୍ଚ୍ଛା ଧରିବାର ଦେଖାଗଲା । ପୃଥିବୀ ସୂର୍ଯ୍ୟାଲୋକରେ ବୁଡ଼ିରହିଥିବାରୁ ଦେଖାଗଲାନାହିଁ । ଚନ୍ଦ୍ରର ସେହି ଦକ୍ଷିଣ ଗୋଲାର୍ଦ୍ଧରେ ସେମାନେ ବହୁତ ଦୃଶ୍ୟ ଦେଖିବାକୁ ପାଇଲେ । ସେଥିପାଇଁ ସେମାନେ ମୋଟେ ଗବାକ୍ଷ ଛାଡ଼ି ପାରିଲେ ନାହିଁ । ଦୂରବୀକ୍ଷଣ ସେ ଦୃଶ୍ୟସବୁ ଅଧମାଇଲ ଭିତରକୁ ଟାଣି ଆଣୁଥିଲା ।

ସେମାନେ ଗୋଟିକପରେ ଗୋଟିଏ ବଡ଼ ବଡ଼ ଗିରିଶ୍ରେଣୀ ଦେଖିବାକୁ ପାଇଲେ । ସେ ପର୍ବତମାନଙ୍କର ଶିଖରସବୁ ସମୁଜ୍ଜ୍ୱଳ ଆଲୋକରେ ଉଦ୍ଭାସିତ ହୋଇ ଉଠୁଥିଲା । ପୃଥିବୀର ବୈଜ୍ଞାନିକ-ମାନେ ତାହାସବୁ ଅଗ୍ନେୟଗିରିଶ୍ରାବ ବା ଲାଭା ବୋଲି ସ୍ଥିର କରିଥିଲେ ମାତ୍ର ବାର୍ବିକେନ ପର୍ଯ୍ୟବେକ୍ଷଣ ବଳରେ ବରଫ ବୋଲି ସ୍ଥିରକରି ମତ ଦେଲେ ଯେ, ଥଣ୍ଡା ଗିରିଶ୍ରାବ (ଲାଭା) ଆଲୋକକୁ ଏତେ ଉଜ୍ଜ୍ୱଳରୂପେ ପ୍ରତିଫଳିତ କରି ପାରେନା । ବରଫ ତାହା ଏତେଦୂର ପ୍ରତିଫଳିତ କରିପାରୁଛି । ନିକୋଲ ମଧ୍ୟ ତାହା ସ୍ୱୀକାର କଲେ ।

ଗୋଲ୍ଡ କ୍ରମେକ୍ରମେ ବହୁଉଚ୍ଚକୁ ଉଠିଗଲା ଏବଂ ଦୂରତା ଅସାଧାରଣ ରୂପେ ବଢ଼ିଗଲା । ସୀମାବଦ୍ଧ ଶକ୍ତିଯୁକ୍ତ ଦୂରବୀକ୍ଷଣ-ମାନଙ୍କରେ ପର୍ଯ୍ୟବେକ୍ଷଣ କାମ ସନ୍ତୋଷଜନକରୂପେ ହୋଇ ପାରିଲା ନାହିଁ । ପୂର୍ବଦୃଷ୍ଟଅଞ୍ଚଳ ପୁଣି ଆସି ସେମାନଙ୍କ ଆଖି ଆଗରେ ମେଲିଗଲା । ସେଠାରେ ଆଲୋକର କୌଣସି ରଙ୍ଗ ପରିବର୍ତ୍ତନ ଘଟୁ ନ ଥିଲା । କେବଳ ଠାଏ ଠାଏ ଧଳା ଓ ଠାଏ ଠାଏ କଳା ଦେଖାଯାଉଥିଲା । ଯେଉଁ ଉଚ୍ଚ ବା ସମତଳ ସ୍ଥାନମାନଙ୍କରେ ଆଲୋକ ଭଲଭାବରେ ପଡ଼ିପାରୁଥିଲା, ସେ ଅଞ୍ଚଳ ଧଳା ଓ ଯେଉଁ ଗହ୍ୱରମାନଙ୍କରେ ଆଲୋକ ପଡ଼ିପାରୁ ନ ଥିଲା, ତାହା କଳା ଦେଖାଯାଉଥିଲା । ତଥାପି ଏହି ମୃତ ପୃଥିବୀରେ ଯେଉଁସବୁ ବୈଚିତ୍ର୍ୟଥିଲା, ତାହା ଯାତ୍ରୀମାନଙ୍କ ମନକୁ ଟାଣିନେଉଥିଲା । ବାତ୍ୟା-ବିତାଡ଼ିତ ତୁଳାଗଣ୍ଡି ପରି ଗୋଲ୍ଡ ଅନନ୍ତ ଶୂନ୍ୟରେ ଖୁବ୍ ଜୋରରେ ଉଡ଼ିଯାଉଥିଲା । ସେମାନେ ଗୋଟାଏ ଦୃଶ୍ୟଉପରେ ମନଧ୍ୟାନ ଦେଇ ଦେଇ ତାହା ପଲକ ମାତ୍ରକେ ଚକ୍ରବାଳରେ ଲୁଚି ଯାଉଥିଲା । କେତେ ଗିରିପୁଞ୍ଜ, ଉପତ୍ୟକା, ଅଧିତ୍ୟକା, ଗିରିସଙ୍କଟ, ଗିରିନଦୀ-ସ୍ରୋତରେ କୁଟାକାଟି ପରି ଭାସି ଯାଉଥିଲା । ତଥାପି ସେମାନେ କୌଣସିଠାରେ ଶସ୍ୟ ବା ବନ୍ୟସମ୍ପଦ, ଗ୍ରାମ-ନଗର ବା ଆଉ କିଛି ଜୀବଲୋକଗ୍ୟ ଜିନିଷ ଦେଖିବାକୁ ପାଇଲେ ନାହିଁ । ଦେଖିଲେ କେବଳ ସ୍ତର ଉପରେ ସ୍ତର, ପାଲିସ୍ ହୋଇ ସ୍ୱଚ୍ଛ ହୋଇଥିବା ଗିରିସ୍ରାବ (ଲାଭା) ପ୍ରସାରଣ ଓ ଗିରିମାଳା । ସ୍ୱଚ୍ଛ ଲାଭାସବୁ ଆଲୋକକୁ ପ୍ରତିଫଳିତ କରି ଏତେ ଉଜ୍ଜ୍ୱଳ ଦେଖାଯାଉଥିଲା ଯେ, ତା' ଆଡ଼କୁ ସେମାନେ ଦୃଷ୍ଟି ପକାଇ ପାରୁ ନ ଥିଲେ । ସମୁଦାୟ ଅଞ୍ଚଳଟା ଏକବାର ମୃତ । ଜୀବନ୍ତ ହୋଇ ସେଠାରେ କିଛି ନ ଥିଲା । ବରଂ

ବରଫଖଣ୍ଡମାନ ଗିରିଶୃଙ୍ଗମାନଙ୍କରୁ ତଳକୁ ଖୁବ୍ ଜୋରରେ ଅବିରତ ଖସୁଥିଲେ ମଧ୍ୟ ସାମାନ୍ୟ ମାତ୍ର ଶବ୍ଦ ହେଉ ନ ଥିଲା ।

ବାର୍ବିକେନ ଘନ ଘନ ପର୍ଯ୍ୟବେକ୍ଷଣପରେ ସ୍ଥିରକଲେ ଯେ, ଚନ୍ଦ୍ରର ସମୁଦାୟ ଅଂଶର ଗଠନ ପ୍ରାୟ ସମାନ । ମାତ୍ର ଗୋଟାଏ ଦୃଶ୍ୟର ଅପର ଦୃଶ୍ୟସଙ୍ଗେ ସାମଞ୍ଜସ୍ୟ ରହୁ ନ ଥିଲା । ଚନ୍ଦ୍ରମଣ୍ଡଳର ସୀମାନ୍ତ ଅଞ୍ଚଳସବୁ ପାର୍ଥିବ ଆକର୍ଷଣ ଓ ଚନ୍ଦ୍ରର ମାଧ୍ୟାକର୍ଷଣ ଫଳରେ ବିକଳାଙ୍ଗ ଦେଖାଯାଉଥିଲେ ମଧ୍ୟ, ମଧ୍ୟଭାଗରେ ପାର୍ଥିବ ଆକର୍ଷଣର ଜୋର ହୁଏ ନାହିଁ । ସେଠାରେ ଚନ୍ଦ୍ରର ମାଧ୍ୟାକର୍ଷଣ ଜୋର ଖୁବ୍ ବେଶି । ତେଣୁ ସେ ଅଞ୍ଚଳରେ ସମସ୍ତ ପଦାର୍ଥ ଲମ୍ବଭାବରେ ଅବସ୍ଥିତ ।

ଯେ ଯାହାହେଉ, ଚନ୍ଦ୍ର ଯେ ମୃତ୍ୟୁର ପ୍ରତିମୂର୍ତ୍ତି, ଏ ବିଷୟରେ ଆଉ କୌଣସି ସନ୍ଦେହ ନ ଥିଲା । ତାର ପ୍ରାକୃତିକ ଅବସ୍ଥା ଦେଖି ବୁଝାଯାଉଥିଲା, ଯେପରି ତାହା କେବେହେଁ ଜୀବନର ଲୀଳାଭୂମି ନ ଥିଲା । ବୈଜ୍ଞାନିକ ଦ୍ୱୟ ପରସ୍ପର ଆଲୋଚନାରେ ଏ ମତରେ ଦୃଢ଼ ହେଲାବେଳକୁ ମାଇକେଲ୍ ଆର୍ଡାନ୍ ଗୋଟିଏ ଅଦ୍ଭୁତ ଆବିଷ୍କାର କରିବାକୁ ବସିଲେ । ସେ କେତେକ ଧ୍ୱଂସାବଶେଷ ଦେଖି ବାର୍ବିକେନଙ୍କ ଦୃଷ୍ଟି ସେଆଡ଼କୁ ଟାଣିଲେ । ସେ ଦୃଶ୍ୟ ୮୦ ଅକ୍ଷାଂଶ ଓ ୩୦ ଦ୍ରାଘିମା ଭିତରେ ଅବସ୍ଥିତ ଥିଲା । ଅନେକଗୁଡ଼ାଏ ସୁଅଁଶ ପଥର ଗୋଟାଏ ଜାଗାରେ ଜମାହୋଇ ଗୋଟାଏ ବିରାଟ ଦୁର୍ଗର ଧ୍ୱଂସାବଶେଷ ପରି ଦେଖା ଯାଉଥିଲା । ତାହା ଗୋଟାଏ ପ୍ରକାଣ୍ଡ ଖାଲର ଧାରରେ ଅବସ୍ଥିତ ଥିଲା । ସେ ଖାଲଟା ଗୋଟାଏ ପ୍ରାଚୀନ ନଦୀର ଚିହ୍ନ ପରି ଦେଖାଯାଉଥିଲା । ତା ନିକଟରେ ୫୬୪୬ ଫୁଟ ଉଚ୍ଚରେ

ଗୋଟାଏ ପର୍ବତ ଏସିଆର କକେଶସ୍ ପରି ଠିଆ ହୋଇଥିଲା । ତାହା ଗୋଟାଏ ବଡ଼ ଦୁର୍ଗର ଧ୍ୱଂସାବଶେଷ ବୋଲି ଅର୍ଡ଼ାନ୍ ସାହେବ ଦୃଢ଼ ଭାବରେ ମତ ଦେଲେ । ତା ତଳକୁ ଗୋଟାଏ ଧ୍ୱଂସାବଶିଷ୍ଟ ନଗରର ସଙ୍କେତ ସେ ଦେଖିବାକୁ ପାଇଲେ । କେଉଁଠାରେ ଗମ୍ବୁଜସବୁ ଅକ୍ଷୁଣ୍ଣଭାବରେ ଥିଲା, କେଉଁଠାରେ ଭଗ୍ନ, ଦରଭଗ୍ନ ବା ଅକ୍ଷୁଣ୍ଣ ଥିଲା । ସେ ସବୁ ପ୍ରାଚୀନଯୁଗୀୟ ନଗରୀର ସୌନ୍ଦର୍ଯ୍ୟ ପ୍ରଦର୍ଶନ କରୁଥିଲା; କେଉଁଠାରେ ଅବା ପ୍ରକାଣ୍ଡ ପୋଲର ସଙ୍କେତ ଦେଖାଯାଉଥିଲା । ଅର୍ଡ଼ାନ୍ ତାଙ୍କ ରୁଟିକର ଦୂରବୀକ୍ଷଣରେ ଏସବୁ ଯାହା ପର୍ଯ୍ୟବେକ୍ଷଣ କଲେ, ତାହା ତାଙ୍କ ବନ୍ଧୁମାନଙ୍କ ଦୂରବୀକ୍ଷଣ ଠିକ୍ ଭର ପରିଲା କି ନା, ତାହା ଭାବିବାର ବିଷୟ ।

ଅର୍ଡ଼ାନ୍‌ଙ୍କର ଏହି ସ୍ୱପ୍ନପୁରୀ ପର ମୁହୂର୍ତ୍ତରେ ଅଦୃଶ୍ୟ ହୋଇଗଲା । ଗୋଲା ଚନ୍ଦ୍ରଠାରୁ କ୍ରମଶଃ ଦୂରକୁ ଦୂରକୁ ଗୁଞ୍ଜିପିବାର ଲକ୍ଷଣ ଦେଖାଗଲା । ଦୂରବୀକ୍ଷଣ ସାହାଯ୍ୟରେ ମଧ୍ୟ କୌଣସି କ୍ଷୁଦ୍ର ପଦାର୍ଥ ପରିସ୍ଫୁଟ ହେଲା ନାହିଁ । ଏସମୟରେ ବାର୍ବିକେନ୍ ଗୋଟାଏ ଅତମନୋହର ଦୃଶ୍ୟବହୁଳ ପର୍ବତ ଦେଖିବାକୁ ପାଇଲେ । ତାକୁ ବୈଜ୍ଞାନିକମାନେ ଅଗରୁ ନିଉଟନ୍ ନାମ ଦେଇଥିଲେ । ତାହା ୭୭ ଡିଗ୍ରୀ ଅକ୍ଷାଂଶ ଓ ୧୬ ଡିଗ୍ରୀ ଦ୍ରାଘିମା ଭିତରେ ଅବସ୍ଥିତ ଥିଲା । ତାହାର ପାର୍ଶ୍ୱସବୁ ୭୨୬୪ ଫୁଟ ଉଚ୍ଚଥିବାରୁ ତହିଁରେ ଅବରୋହଣ କରିବା ଅସମ୍ଭବ । ତାହା ଉପରକୁ ଯେତେ ଉଚ୍ଚ ଥିଲା,ତା ମଧ୍ୟସ୍ଥ ଗୋଲାର ଗଭୀରତା ତାଠାରୁ ଢେର ବେଶି ଥିଲା । ସେ ବହିର୍ଦ୍ଦେଶକୁ ମାପ କରିବା ଅସମ୍ଭବ । ତାହା ଶବ ଅନ୍ଧକାରାଚ୍ଛନ୍ନ ଏବଂ ସୂର୍ଯ୍ୟ ବା ପୃଥିବୀର କିରଣ କେବେହେଁ ତା ଭିତରେ ପ୍ରବେଶ କରି ପାରୁ ନ ଥିଲା ।

ନଭଟନ୍ ପରି ଗୋଲ ପର୍ବତ ପୃଥିବୀରେ ଗୋଟିଏ ହେଲେ ନାହିଁ । ବୈଜ୍ଞାନିକମାନେ ପ୍ରମାଣ କରିଛନ୍ତି ଯେ ଚନ୍ଦ୍ର ଯେତେବେଳେ ଥଣ୍ଡା ହେବାକୁ ବସିଲା, ସେତେବେଳେ ଭୀଷଣ ଘାତପ୍ରତିଘାତ ହେତୁ ତାର ଅନ୍ତରରେ ଅନେକ ପରିବର୍ତ୍ତନ ଘଟିଥିଲା । ଅନ୍ତର୍ଗ୍ନିର ଭୀଷଣ ଧକ୍କାରେ ଭିତରର ମାଟି ପଥର ଉପରକୁ ଉଠି ଆସିଲା ଏବଂ ବାହାରର ସମତଳ ସ୍ଥାନସବୁ ଖାଲ ହୋଇଗଲା ।

ନଭଟନ୍ ମୁହୂର୍ତ୍ତକଭିତରେ ଦିଗ୍‌ବଳୟରେ ମିଶିଗଲା । ତାପରେ ଗୋଲା ମୋରେଟ୍ ନାମକ ଆଉ ଗୋଟାଏ ଗୋଲ ପର୍ବତ ଆଡ଼କୁ ମାଡ଼ିଆସିଲା । ତାର ଉଚ୍ଚତା ୨୦୧୧ ଫୁଟ । ଏହି ପର୍ବତର ଅଗ୍ନିମୁଖ ଦେଖି ବାର୍ବିକେନ୍ ମତଦେଲେ ଯେ, ତା ତୁଳନାରେ ପୃଥିବୀର ବିସୁଭିଅସ୍ ଓ ଏଟ୍‌ନା ଅଗ୍ନିମୁଖ ସବୁ ଗୋଟିଏ ଗୋଟିଏ ଉଇହୁଙ୍କା ପରି । ମୋରେଟ୍‌ର ଅଗ୍ନିମୁଖ ୬୦ ମାଇଲ ବ୍ୟାସ । ଚନ୍ଦ୍ରର ଅନେକ ଅଗ୍ନିମୁଖ ୫୦ ମାଇଲ ବ୍ୟାସରୁ କମ୍ ନୁହେଁ ।

ଗୋଲା ଏସବୁ ପାର ହୋଇ ଚାଲିଗଲା । କେତେ ଚିରିବୃତ୍ତ, କେତେ ଅଗ୍ନିମୁଖ ଓ କେତେ ପର୍ବତମାଳା ଯେ ସେମାନେ ଅତିକ୍ରମ କଲେ, ତାର ସୀମା ନାହିଁ । ତାପରେ ସେମାନେ ମୁଖକାଫଟା ଖୋଡ଼ାବହୁଳ ଅଞ୍ଚଳର କେନ୍ଦ୍ରରେ ଟାଇକୋ ନାମକ ଜ୍ୱାଳାମୁଖୀମାନ ଗିରି ଦେଖିବାକୁ ପାଇଲେ । ମେଘବିମୁକ୍ତ ନିର୍ମଳ ଆକାଶରେ ପୂର୍ଣ୍ଣିମା ଚନ୍ଦ୍ରକୁ ଚାହିଁଲେ ଯେଉଁ ଉଜ୍ଜ୍ୱଳତମ ବିନ୍ଦୁ ତାମଧ୍ୟରେ ଦେଖାଯାଏ, ତାହା ଏହି ଟାଇକୋ । ହଲାଣ୍ଡର ଜଣେ ପ୍ରାଚୀନ ବୈଜ୍ଞାନିକ ତାର ଏପରି ନାମ ଦେଇଥିଲେ । ତାହା ଏତେଦୂର

ଉଜ୍ଜ୍ୱଳତମ ଯେ, ପୃଥିବୀର ଲୋକେ ଖାଲି ଆଖିରେ ମଧ୍ୟ ତାକୁ ଦେଖି ପାରନ୍ତି । ତାହେଲେ ଗୋଲଯାତ୍ରୀମାନଙ୍କୁ ପଚିଶ ମାଇଲ ବ୍ୟବଧାନରେ ତାହା କେତେ ଉଜ୍ଜ୍ୱଳ ଓ ଆଖିଝଲସା ଦେଖାଯାଉ ନ ଥିବ !

ବାର୍ବିକେନ ଓ ତାଙ୍କ ବନ୍ଧୁମାନେ ଦୂରବୀକ୍ଷଣରେ ସେ ଡେକାସ୍ପାନ୍ ଅନେକ ଅଡ଼କୁ ଛୁହିଁ ନ ପାରିବାରୁ ଗ୍ୟାସ୍‌ର ଧୂଆଁ ସାହାଯ୍ୟରେ କାଳକୁ ଧୂସର କରି ଦେଖିପାରିଲେ । ଅନ୍ୟାନ୍ୟ ଅଗ୍ନେୟଗିରିରୁ ନିଃସୃତ ଲାଭା (ଗିରିସ୍ରାବ) ଅନେକରେ ସାଧାରଣତଃ ଝିଲ୍‌ମିଲ୍ ହୁଏ । ମାତ୍ର ଟାଇକୋ ତାର ଚରମ ସୀମା ଛୁଇଁଥିଲା । ଏତେ ଭୀଷଣ ସ୍ରୋତ ଭୂଗର୍ଭରୁ ନିଃସୃତ ହୋଇଥିଲା ଯେ, ତହିଁରେ ଲାଭାର ସ୍ତରସ୍ତୂ ପଡ଼ି ପଡ଼ି ବିରାଟ ପର୍ବତପୁଞ୍ଜ ଗଠିତ ହୋଇଥିଲା । ତାର ଅଗ୍ନିମୁଖର ବ୍ୟାସ ୪୦ ମାଇଲ ଓ ସେ ମୁଖର ଅକୃତ ଟିକିଏ ଟେର୍ଚ୍ଛା । ସେ ଗିରିପୁଞ୍ଜ ଯେତେ ଜୋରରେ ଆଲୋକ ପ୍ରତିଫଳିତ କରେ, ଚନ୍ଦ୍ରର ଅନ୍ୟ ଅଂଶ ସେତେଦୂର ନୁହେଁ । ସେହି ଉବ୍ୟୋଜ୍ଜ୍ୱଳ ଅଲୋକ ପ୍ରଭାବରେ ତାର ଚେହେର ବା ଅନ୍ୟ କୌଣସି ଛାୟା ଦେଖାପଡ଼େ ନାହିଁ । ସେ ଲାଭାସବୁ ଯୁଗ ଯୁଗ ଧରି ଥଣ୍ଡା ହୋଇ ହୋଇ କ୍ରମେ ମସୃଣ ହୋଇ ଯାଇଛି ଏବଂ ତହିଁରେ ସୂର୍ଯ୍ୟାଲୋକ ପଡ଼ି ଏତେ ଜାଜ୍ୱଲ୍ୟମାନ ହେଉଛି ।

---

—ପନର—

## ଗୁରୁତର ପ୍ରଶ୍ନ

ଟାଇକୋ ପାହାଡ଼ରୁ ଚନ୍ଦ୍ରଦେଶକୁ ବିଚ୍ଛୁରିତ ଆଲୋକରଶ୍ମି ଦର୍ଶନରେ ସେମାନେ ମୁଗ୍ଧ ହେଉ ହେଉ ଗୋଲା ସେ ଅଞ୍ଚଳ ପାର ହୋଇ ଚାଲିଗଲା । ତା ପରବର୍ତ୍ତୀ ବହୁ ବିସ୍ତୃତ ଅଞ୍ଚଳ ଖାଲି ସିଆର ଓ ଖୋଳ୍‌ଡ଼ାରେ ପରିପୂର୍ଣ୍ଣ ହୋଇଥିଲା । ତାହା ଦେଖି ସେମାନେ ତାର କୌଣସି କାରଣ ଅବଧାରଣ କରି ପାରିଲେ ନାହିଁ । ସେ ସିଆରମାନଙ୍କର ଦୁଇ କଡ଼ରେ ବହୁତ ଉଚ୍ଚ ଚୂଡ଼ାସବୁ ଦେଖା-ଯାଉଥିଲା । ଭିତର ଖାଲ କେଉଁଠାରେ ଦଶ ମାଇଲ, କେଉଁଠାରେ କୋଡ଼ିଏ ମାଇଲ ଚଉଡ଼ା ହୋଇଥିଲା । ସେହି ଦୀପ୍ତାଲୋକିତ ସିଆର-ସବୁ ଇତସ୍ତତଃ ବିନ୍ୟସ୍ତ ହୋଇ ଟାଇକୋ ପର୍ଯ୍ୟନ୍ତ ଅନେକ ଲାଇନ ଲମ୍ବିଯାଇଥିଲା । ଦକ୍ଷିଣ ମେରୁର ଅଧା ଅଞ୍ଚଳ ଏହିପରି ସିଆରରେ ପୂର୍ଣ୍ଣ । କେଉଁ ସିଆର ୪୦୦ ମାଇଲ, କେହି ୭୦୦ ମାଇଲ, କେହି ବା ୧୦୦୦ ମାଇଲ ପର୍ଯ୍ୟନ୍ତ ଲମ୍ବ ।

ଏହି ଲମ୍ବ ସିଆରସବୁ କଅଣ ? ନିକୋଲ ଏ ବିଷୟରେ କେତେକ ମତ ଦେଲେ । ମାତ୍ର ବାର୍ବିକେନ୍ ତାହା ଗ୍ରହଣ ନ କରି କହିଲେ, "ଏହି ଆଲୋକିତ ଲାଇନ୍‌ସବୁର ପରସ୍ପର ସାମଞ୍ଜସ୍ୟ କିପରି ହେଲା ଓ କେଉଁ ଶକ୍ତି ବଳରେ ତାହାସବୁ ଏତେ ଦୂର ଲମ୍ବିଗଲା, ତାହା ବାସ୍ତବିକ ଅବୋଧ୍ୟ ।"

ମାଇକେଲ—"ମୋର ମନେ ହେଉଛି, ଗୋଟାଏ ଗୋଲା ବା ପଥର ଅଘାତରେ ଭୂଇଁସବୁ ଏପରି ଫାଟିଯାଇଛି ।"

ବାର୍ବିକେନ—"ଚନ୍ଦ୍ରଙ୍କ ହାତ ଏପରି ଗୋଟାଏ ଗୋଲା ବା ପଥର ଫିଙ୍ଗି ପାରେ ?

ମାଇକେଲ—"ଏଥିପାଇଁ ହାତର ଅବଶ୍ୟକତା କଅଣ ? ଗୋଟାଏ ଧୂମକେତୁ ଅଘାତରେ ଏପରି ଅବସ୍ଥା ଘଟିଛି ବୋଲି ମୋର ବିଶ୍ୱାସ ।"

ବାର୍ବିକେନ୍—"ଏଥିପାଇଁ ଧୂମକେତୁର ଅବଶ୍ୟକତା କଅଣ ? ଏପରି ଗୋଟାଏ ଧକ୍କା ଚନ୍ଦ୍ରର ଅଭ୍ୟନ୍ତରରୁ ମଧ୍ୟ ଆସି ପାରେ । ତାର ଉପରିଭାଗ ଶୀତଳ ହୋଇଗଲେ ଏପରି ଫାଟିଯିବା ମଧ୍ୟ ସ୍ୱାଭାବିକ । ଜଣେ ଇଂରେଜୀ ବୈଜ୍ଞାନିକ ନାସ୍ମିଥ୍‌ଙ୍କର ମଧ୍ୟ ଏହି ମତ ।"

ଏ ଅଞ୍ଚଳ ଅତିକ୍ରମ କରି ଗୋଲା ଅଗ୍ରସର ହେଲା । ସେମାନେ ଶୀତପ୍ରଧାନ ଅଞ୍ଚଳରୁ ଯାଇ ଗ୍ରୀଷ୍ମପ୍ରଧାନ ଅଞ୍ଚଳରେ ଉପନୀତ ହେଲେ । ପ୍ରକୃତ ତାଙ୍କୁ ଚନ୍ଦ୍ରର ଅଧିବାସୀ ହେବାକୁ ପ୍ରସ୍ତୁତ କରୁଥିଲା ପରି !

ଚନ୍ଦ୍ର ଅଧିବାସୀ କଥା ପଡୁ ପଡୁ ଚନ୍ଦ୍ର ମନୁଷ୍ୟ ଓ ଜୀବଜନ୍ତୁ-ମାନଙ୍କର ବାସଯୋଗ୍ୟ କି ନା, ତାର ଅଲୋଚନା ପଡ଼ିଗଲା । ବୈଜ୍ଞାନିକ ଦ୍ୱୟ ଏହା ମୀମାଂସା କରନ୍ତୁ ବୋଲି ଅର୍ଡାନ୍ ଦାବୀ କଲେ । ବାର୍ବିକେନ କହିଲେ, "ଏପରି ମୀମାଂସାର ଦୁଇଟି ଦିଗ ରହିବା ସ୍ୱାଭାବିକ । ଗୋଟିଏ ହେଉଛି, ଚନ୍ଦ୍ର ବାସଯୋଗ୍ୟ କି ନା, ଏବଂ ଅପରଟି ହେଉଛି, ଏଥିରେ କେବେ କେହି ବାସ କରୁଥିଲେ କି ନା ?

ନିକୋଲ—"ତାହାହେଲେ ପହିଲେ ଦେଖାଯାଉ; ଏହା ବାସଯୋଗ୍ୟ କି ନା ?"

ବାର୍ବିକେନ—"ଏହାର ଅତି ନଗଣ୍ୟ ଜଳବାୟୁ, ଏହାର କ୍ଷୁଦ୍ର ସାଗରମାନ, ତାର କୁଞ୍ଚିତ ଜଳବୃଷ୍ଟି, ତାର ଶୈତ୍ୟ, ଉପ୍ରନ୍ତୁ ତାର ସହସା ପରିବର୍ତ୍ତନ, ତାର ୩୫୪ ଘଣ୍ଟା ଦୀର୍ଘ ଦିନ ଓ ରାତ ଦୃଷ୍ଟିରୁ ଚନ୍ଦ୍ର ବାସଯୋଗ୍ୟ ବୋଲି ମୋର ମନେ ହେଉନାହିଁ । କିମ୍ବା ଜୀବ ରାଜ୍ୟର ଉନ୍ନତି ପାଇଁ ସୁବିଧାକର ବା ଜୀବନ ରକ୍ଷାପାଇଁ ଯାହା ଯାହା ନିତ୍ୟ ଅବଶ୍ୟକ ବୋଲି ଆମେ ବୁଝୁଁଛୁ, ତାହାସବୁ ତହିଁରେ ଅଛି ବୋଲି ମୋର ବିଶ୍ୱାସ ହେଉନାହିଁ ।"

ନିକୋଲ—"ମୁଁ ତ ଏହା ମାନୁଛି । ତେବେ ଆମଠାରୁ ଭିନ୍ନ ପ୍ରକାର ଗଠିତ ଜୀବମାନଙ୍କ ପାଇଁ ଚନ୍ଦ୍ର କଣ ବାସ ଯୋଗ୍ୟ ନୁହେ ?"

ବାର୍ବିକେନ—"ଏହାର ଉତ୍ତର ବଡ଼ କଠିନ । ମୁଁ ତାହା କହିବି । ମାତ୍ର ମୁଁ ପଚାରୁଛି, ଜୀବର ଅଦ୍ଭୁତ ଗଠନ ସେ ପ୍ରକାରର ହେଉ ନା କାହିଁକି, ଚଳାଚଳ ହେଲେ ଜୀବଜନ୍ତୁ ଜଣାପଡ଼ିବେ; କୋଉଁଠିଲେ ନାହିଁ ।"

ନିକୋଲ—"ନିଶ୍ଚୟ ।"

ବାର୍ବିକେନ—"ଅଚ୍ଛା, ତା' ତହେଲେ ମୋ ଉତ୍ତର ଏହି ହେବ ଯେ, ଆମେ ଚନ୍ଦ୍ର ରାଜ୍ୟକୁ ୫୦୦ ଗଜ ଦୂରରେ ଦେଖୁଛୁଁ । ତହିଁରେ ଜୀବଜନ୍ତୁର ସଞ୍ଚାର ମୋଟେ ଦେଖିବାକୁ ପାଉନାହୁଁ । ତେବେ ଦେଖିଲୁଁ କଅଣ ? ସବୁଆଡ଼େ କେବଳ ପ୍ରକୃତିର ଭୂତତ୍ତ୍ୱ ବିଷୟକ କାର୍ଯ୍ୟାବଳୀ । କେଉଁଠାରେ ମନୁଷ୍ୟ ହାତର ଗୋଟିଏ କାର୍ଯ୍ୟ ସୂଚନା ଦେଖିବାକୁ ପାଇଲୁଁ ନାହିଁ । ଯେବେ ଚନ୍ଦ୍ର ଦେହରେ ଜୀବ ରାଜ୍ୟର ସମ୍ଭାବନା ଥାଏ, ତେବେ ଅତଳସ୍ପର୍ଶ ଗହ୍ୱର ଭିତରେ ଥାଇ-

ପାରେ । ତାହା ମନୁଷ୍ୟ ଚକ୍ଷୁ ଏ ପର୍ଯ୍ୟନ୍ତ ଅବିଷ୍କାର କରି ପାରି ନାହିଁ । ତାହା ମଧ୍ୟ ମୁଁ ସ୍ୱୀକାର କରିବାକୁ ନାରାଜ, କାରଣ ସେପରି ହୋଇଥିଲେ ଉପରିଭାଗରେ ଅବଶ୍ୟ ତାର ସଙ୍କେତ ମିଳୁଥାନ୍ତା । ସେପରି ସଙ୍କେତ ଆମେ କେଉଁଠାରେ ଦେଖିବାକୁ ପାଇଲୁଁ ନାହିଁ । ତେବେ ଏତିକି କୁହାଯାଇ ପାରେ, ଯେବେ ଏଠାରେ ଜୀବଜନ୍ତୁ ଅଛନ୍ତି, ତେବେ ସେମାନଙ୍କ ଜୀବନ ନାହିଁ ବା ସଞ୍ଚାର ନାହିଁ ।"

ଚନ୍ଦ୍ରରେ ଜୀବଜନ୍ତୁ ଥିବା ବିଷୟରେ କୌଣସି ନିଷ୍ପତ୍ତି ହୋଇ ପାରିଲା ନାହିଁ । ତା ପରେ ଦ୍ୱିତୀୟ ପ୍ରଶ୍ନ ଆସିଲା, ଚନ୍ଦ୍ର ବାସଯୋଗ୍ୟ କି ନା । ବାର୍ବିକେନ୍ କହିଲେ, "ଚନ୍ଦ୍ର ପୂର୍ବେ ବାସଯୋଗ୍ୟ ଥିଲା କି ନା, ସେ ବିଷୟରେ ଗୋଟାଏ ଧାରଣା କରିବାକୁ ମୁଁ ଏ ଯାଏ ଭରି ନ ଥିଲି । ବରଂ ଏହି ପର୍ଯ୍ୟବେକ୍ଷଣ ମୋ ଧାରଣାକୁ ଦୃଢ଼ୀଭୂତ କରିଛି । ମୁଁ ବର୍ତ୍ତମାନ ନିର୍ଦ୍ଦିଷ୍ଟ ଭାବରେ କହିପାରେଁ, ଚନ୍ଦ୍ର ବହୁ ସହସ୍ର ଯୁଗ ପୂର୍ବେ ଆମ ଭଳି ଲୋକମାନଙ୍କର ବାସସ୍ଥଳ ହୋଇଥିଲା । ସେ ଜାତି ମନୁଷ୍ୟ ହୁଅନ୍ତୁ ବା ଅନ୍ୟ ଜୀବଜନ୍ତୁ ହୁଅନ୍ତୁ, ସେମାନେ ଏଠାରେ ଥିଲେ । ପରେ ଚିରଦିନ ପାଇଁ ଲୋପ ପାଇ ଯାଇଛନ୍ତି ।"

ଆର୍ଡାନ—"ତେବେ କଣ ପୃଥିବୀଠାରୁ ଚନ୍ଦ୍ର ପ୍ରାଚୀନ ?"

ବାର୍ବିକେନ—"ନା, କିନ୍ତୁ ଏହା ଖୁବ୍ ଶୀଘ୍ର ବଢି ଉଠିଥିଲା । ତାର ଗଠନ ଯେତେ ଶୀଘ୍ର ହୋଇଥିଲା, ସେତେ ଶୀଘ୍ର ସେ ବିକଳାଙ୍ଗ ହୋଇଗଲା । ଗଠନକାରୀ ଶକ୍ତିର ଉପାଦାନସବୁ ଚନ୍ଦ୍ରର ଅଭ୍ୟନ୍ତର ଭାଗରେ ଯେତେ ଜୋରରେ କାର୍ଯ୍ୟକାରୀ, ପୃଥିବୀର ଅଭ୍ୟନ୍ତର ଭାଗରେ ସେତେ ଜୋରରେ କାର୍ଯ୍ୟକାରୀ ନୁହେଁ । ଚନ୍ଦ୍ରମଣ୍ଡଳର ବହିର୍ଭାଗରେ ଥିବା ଭଙ୍ଗା ଦନ୍ତୁର ଓ ଫୁଲା ଅବସ୍ଥାସବୁ ଦେଖିଲେ

ଏହା ହିଁ ପ୍ରମାଣିତ ହୁଏ । ମୌଳିକ ଅବସ୍ଥାରେ ପୃଥିବୀ ଓ ଚନ୍ଦ୍ର କେବଳ ବାଷ୍ପ ଥିଲେ । ଶୀତଳ ପ୍ରଭାବରେ ସେ ବାଷ୍ପ ତରଳ-ହୋଇଗଲା ଏବଂ ପରେ ତହିଁରୁ କଠିନ ପିଣ୍ଡ ଗଠିତ ହେଲା । କିନ୍ତୁ ଏହା ନିଶ୍ଚିତ ଯେ, ପୃଥିବୀ ବାଷ୍ପ କିମ୍ବା ତରଳ ଅବସ୍ଥାରେ ଥିଲା-ବେଳେ ଚନ୍ଦ୍ର ଶୀତଳ ହୋଇଯାଇ କଠିନ ପିଣ୍ଡରେ ପରିଣତ ହୋଇ-ଥିଲା । ସେତେବେଳେ ସେ ବାସଯୋଗ୍ୟ ଥିଲା ।”

ନିକୋଲ୍—“ମୋର ମଧ୍ୟ ସେହି ବିଶ୍ୱାସ ।”

ବାର୍ବିକେନ୍—“ତା ପରେ ତା ସ୍ତରପଟେ ବାୟୁ ମଣ୍ଡଳ ଦେଖି-ଗଲା । ବାଷ୍ପୀୟ ଉପାଦାନ ମଧ୍ୟରେ ଥିବା ଜଳରାଶି ସେଥିପାଇଁ କୁଆଡ଼େ ଉଡ଼ିଯାଇ ପାରିଲା ନାହିଁ । ସୂର୍ଯ୍ୟରଶ୍ମି ଓ ଅଭ୍ୟନ୍ତରୀଣ ବାୟୁ, ଜଳ, ଆଲୋକ ଓ ଉତ୍ତାପ ପ୍ରଭାବରେ ତହିଁରେ ବୃକ୍ଷଲତା ବଢ଼ି ଉଠିଲା । ଜୀବରାଜ୍ୟ ମଧ୍ୟ ସେହି ସମୟରେ ଆତ୍ମପ୍ରକାଶ କରିଥିଲା । କାରଣ ପ୍ରକୃତ କୌଣସି କଥା କେବେହେଁ ଅବ୍ୟବହାରରେ ରଖି-ଦିଏ ନାହିଁ । ଏପରି ଉନ୍ନତ ଧରଣର ବାସଯୋଗ୍ୟ ଭୂମଣ୍ଡଳରେ ନିଶ୍ଚୟ ସେତେବେଳେ ଜୀବବସତି ହୋଇଥିବ ।

ନିକୋଲ୍—“ତଥାପି ଅନେକ ପ୍ରାକୃତିକ ଅବସ୍ଥା ଚନ୍ଦ୍ର ଦେହରେ ଅଛି, ଯହିଁରୁ ବୁଝାଯାଉଛି, ତହିଁରେ ଜୀବ ଜଗତ ବା ବୃକ୍ଷଲତା ବୃଦ୍ଧି କେବେହେଁ ହୋଇ ପାରି ନ ଥିବ । ୩୫୪ ଘଣ୍ଟା ରାତି ଓ ୩୫୪ ଘଣ୍ଟା ଦିନ ଏହାର ବିଶିଷ୍ଟ ଉଦାହରଣ ।”

ମାଇକେଲ୍—“ପୃଥିବୀର ମେରୁ ପ୍ରଦେଶମାନଙ୍କରେ ତ ପୁଣି ଦିନ ରାତି ଛଅ ମାସ ଲେଖାଏଁ ହୁଏ ?”

ନିକୋଲ୍—"ସେଇଟା ଗୋଟାଏ ବଡ଼ ଯୁକ୍ତି ନୁହେଁ, କାରଣ ମେରୁ ଅଞ୍ଚଳରେ ତ କେହୁ ବାସ କରନ୍ତି ନାହିଁ ?"

ବାର୍ବିକେନ କହିଲେ—"ଚନ୍ଦ୍ରର ବର୍ତ୍ତମାନ ଅବସ୍ଥାରେ ଦୀର୍ଘ ଦିବାରାତ୍ରି ହେତୁ ଉତ୍ତାପର ଭୀଷଣ ବୈଷମ୍ୟ ଘଟୁଛି । ତାହା ଜୀବ ବା ବୃକ୍ଷଲତା ଗଠନର ସହାୟକ ନୁହେଁ । ମାତ୍ର ବହୁଯୁଗ ପୂର୍ବେ ଏପରି ଅବସ୍ଥା ନ ଥିଲା । ବାୟୁରାଶି ସମଗ୍ର ମଣ୍ଡଳକୁ ତରଳ ପଦାର୍ଥରେ ଆବୃତ କରି ରଖିଥିଲା । ବାୟୁ ଆକାଶରେ ଜମା ହୋଇ ମେଘ ସୃଷ୍ଟି କରୁଥିଲା । ସେହି ମେଘ ପ୍ରାକୃତିକ ପରଦା ପରି ସୂର୍ଯ୍ୟକିରଣକୁ ଦୃଷ୍ଟରେ ରଖି ତାକୁ ନିୟନ୍ତ୍ରିତ କରୁଥିଲା ଏବଂ ରାତିରେ ମଧ୍ୟ ଆଲୋକ ବିକୀରଣ କରୁଥିଲା । ଆଲୋକ ଓ ଉତ୍ତାପ ଉଭୟ ବାୟୁରେ ମିଶିଯାଉଥିଲେ । ତେଣୁ ପ୍ରତ୍ୟେକ ଅବସ୍ଥାର ପ୍ରଭାବରେ ସାମଞ୍ଜସ୍ୟ ରକ୍ଷା କରାଯାଉଥିଲା । ମାତ୍ର ସମ୍ପ୍ରତି ସେପରି ଅବସ୍ଥା ନାହିଁ । ବାୟୁର ପ୍ରାୟ ସମସ୍ତ ଅଂଶ ଅନ୍ତର୍ହିତ ହୋଇ ଯାଇଛି । ମୋର ମନେ ହେଉଛି, ଚନ୍ଦ୍ରରେ ଯେତେବେଳେ ଜୀବ ଜନ୍ତୁ ଓ ବୃକ୍ଷଲତା ଥିଲା, ସେତେବେଳେ ଦିନ ବା ରାତି କେହି ୩୫୪ ଘଣ୍ଟା ଦୀର୍ଘ ହେଉ ନ ଥିଲା ।"

ନିକୋଲ ହଠାତ୍ ପଚାରିଲେ—"ସେପରି କାହିଁକି ହେଲା ?"

ବାର୍ବିକେନ କହିଲେ—"କାରଣ ସେତେବେଳେ ଚନ୍ଦ୍ରର ତା ନିଜର ମେରୁଦଣ୍ଡ ଚାରିପଟେ ଘୂର୍ଣ୍ଣନ ଓ ପୃଥିବୀ ଚାରିପଟେ ଆବର୍ତ୍ତନ ଏହି ଉଭୟ ଅବସ୍ଥା ମଧ୍ୟରେ ସାମଞ୍ଜସ୍ୟ ନ ଥିଲା । ସମ୍ପ୍ରତି ସେପରି ସାମଞ୍ଜସ୍ୟ ହେତୁ ଚନ୍ଦ୍ରର ପ୍ରତ୍ୟେକ ଅଂଶରେ ସୂର୍ଯ୍ୟକିରଣ ପନ୍ଦର ଦିନ ଅବସ୍ଥାନ କରୁଛି ।"

ନିକୋଲ କହିଲେ—“ଏଥିରେ ମୁଁ ସ୍ୱୀକୃତ । ତେବେ ଅରମ୍ଭରୁ ଏହି ଉଭୟ ପ୍ରକାର ଗତି ସମାନ ନ ଥିବା କାରଣ କଅଣ ?”

ବାର୍ବିକେନ କହିଲେ—“କାରଣ ଏହି ଉଭୟ ପ୍ରକାର ଗତିର ସାମଞ୍ଜସ୍ୟ ପୃଥିବୀ ଆକର୍ଷଣ ହେତୁ ହେଉଛି । ଯେଉଁ ଯୁଗରେ ପୃଥିବୀ କେବଳ ତରଳ ଅବସ୍ଥାରେ ଥିଲା, ସେତେବେଳେ ତାର ଆକର୍ଷଣର ପ୍ରଭାବ ଚନ୍ଦ୍ର ଦେହରେ ପଡ଼ୁଥିଲା ବୋଲି ତ କହି ହେଉନାହିଁ ।”

ନିକୋଲ କହିଲେ--“ସେ କଥା ସତ । ତେବେ ଚନ୍ଦ୍ର ଚିର-ଦିନ ପୃଥିବୀର ଉପଗ୍ରହ ହୋଇ ଆସିଛି ବୋଲି କିଏ କହିପାରେ ?”

ମାଇକେଲ କହିଲେ—“ପୃଥିବୀର ସତ୍ତା ନ ଥିବା ଆଗରୁ ଯେ ଚନ୍ଦ୍ର ନ ଥିଲା, ଏ କଥା କିଏ କହି ପାରେ ?”

ଏ ସମସ୍ତ ଶନ୍ତ୍ରାଧାର ଅନାବିଷ୍କୃତ ଭୂମିରେ ଦୀର୍ଘକାଳ ଧରି ବୁଲିଲା । ବାର୍ବିକେନ ଗାରବତା ଢଙ୍ଗରେ କହିଲେ, “କଳ୍ପନା ଦେଶର ଉଚ୍ଚ ଓ ବିଷୟସବୁ ଅମୀମାଂସିତ । ଆମ୍ଭେମାନେ ତାଭିତରେ ପଶି ଉବୁଟୁବୁ ହେବା ଉଚିତ ନୁହେ । ଏକଥା ଆମ୍ଭମାନଙ୍କୁ ସ୍ୱୀକାର କରିବାକୁ ହେବ ଯେ, ଆଦିମ ଯୁଗରେ ପାର୍ଥିବ ଆକର୍ଷଣର ପ୍ରଭାବ ଖୁବ୍ କମ୍ ଥିଲା । ତାପରେ ମେରୁଦଣ୍ଡର ଘୂର୍ଣ୍ଣନ ଓ ଆବର୍ତ୍ତନର ଅସାମଞ୍ଜସ୍ୟ ଫଳରେ ପୃଥିବୀରେ ଦିନରାତି ଆସିଲାପରି ଚନ୍ଦ୍ରରେ ମଧ୍ୟ ଦିନରାତି ଆସୁଥିଲା । ସେ ସମୟରେ ଏ ଲୋକରେ ଜୀବର ଲୀଳା-ଖେଳା ଚାଲିଥିଲା ।”

ମାଇକେଲ ପଚାରିଲେ, “ତାହେଲେ ମନୁଷ୍ୟ ଚନ୍ଦ୍ରଲୋକରୁ ଏକବାରେ ଅଦୃଶ୍ୟ ହୋଇ ଯାଇଛି ?”

ବାର୍ବିକେନ୍ କହିଲେ, "ହଁ । ସହସ୍ର ସହସ୍ର ଯୁଗ ଏଠାରେ ରହିବାପରେ ଜୀବ ରାଜ୍ୟ ଲୋପ ପାଇଯାଇଛି । ତାପରେ ବାୟୁ କ୍ରମେ କ୍ରମେ ଅଦୃଶ୍ୟ ହୋଇଯାଇଛି । ପୃଥିବୀ ଦିନେ ଶୀତଳ ହୋଇଯାଇ ଏହି ଅବସ୍ଥା ପ୍ରାପ୍ତ ହେବ ।"

ମାଇକେଲ ପଚାରିଲେ, "କ'ଣ ଥଣ୍ଡା ହୋଇଯାଇ ?"

ବାର୍ବିକେନ ଦୃଢ଼ସ୍ୱରରେ କହିଲେ, "ନିଶ୍ଚୟ । ଅଭ୍ୟନ୍ତରୀଣ ଅଗ୍ନି ଲିଭିଯିବାରୁ ଭିତରର ଜ୍ୱଳନ୍ତ ପଦାର୍ଥସବୁ ଜମାଟ ହୋଇଗଲା । ତେଣୁ ଚନ୍ଦ୍ରମଣ୍ଡଳର ଶୀତଳ ହୋଇଗଲା । ଏ ଅବସ୍ଥା ଅବଶ୍ୟ ହଠାତ୍ ନ ହୋଇ କ୍ରମେ କ୍ରମେ ଘଟିଥିଲା । ତା ଫଳରେ ଜୀବ ଓ ବୃକ୍ଷଲତା ଗଠନକାରୀ ଉପାଦାନସବୁ ଲୋପ ପାଇଗଲା । ସଙ୍ଗେ ସଙ୍ଗେ ବାୟୁ ଦୁଷ୍ପ୍ରାପ୍ୟ ହେଲା । ଏପରି ମନେହେଉଛି, ପୃଥିବୀର ଆକର୍ଷଣ ବଳରେ ସମସ୍ତ ବାୟୁମଣ୍ଡଳ ତା ଆଡ଼କୁ ଟାଣିହୋଇଗଲା । ତେଣୁ ସମସ୍ତ ଜଳଭାଗ ବାଷ୍ପୀଭୂତ ହୋଇ ଉଡ଼ିଗଲା । ସେହିକାଳରୁ ଚନ୍ଦ୍ର ଜୀବର ବସବାସପାଇଁ ଅଯୋଗ୍ୟ ହୋଇ ଅସିଛି । ସେହି-କାଳରୁ ଏହା ଗୋଟାଏ ମୃତ ଭୂମଣ୍ଡଳ ।"

ମାଇକେଲ ପଚାରିଲେ—"ତାହା ହେଲେ ତୁମେ କହୁଛ, ପୃଥିବୀର ଭାଗ୍ୟରେ ମଧ୍ୟ ସେହି ଦଶା ଅଛି ।"

"ଖୁବ୍ ସମ୍ଭବ ।"

"କେବେ ?

"ଯେତେବେଳେ ଏହାର ଉପରଭାଗ ଶୀତଳ ହୋଇଯାଇ ବସବାସର ଅଯୋଗ୍ୟ ହୋଇଯିବ ।"

"ସେ ସମସ୍ତ ହିସାବ କରାଯାଇଛି ?"

"ନିଶ୍ଚୟ ।"

"ତାହେଲେ ମୋତେ ସେକଥା କହ । ମୋର ଆଉ ଧୈର୍ଯ୍ୟ-ରହୁନାହିଁ ।"

ବାର୍ବିକେନ୍ ହସି ହସି କହିଲେ, "ଗୋଟାଏ ଶତାବ୍ଦୀମଧ୍ୟରେ ପୃଥିବୀରୁ କେତେପରିମାଣରେ ଉତ୍ତାପ ହ୍ରାସ ହେଉଛି, ତାହା ଭଲରୂପେ ଜଣାଅଛି । ବର୍ତ୍ତମାନ କେତେକ ହିସାବରୁ ଦେଖା-ଯାଉଛି, ଏହି ଉତ୍ତାପ ସମୁଦାୟ ହ୍ରାସ ହୋଇ ଶୂନ୍ ହୋଇଯିବାକୁ ଏହାକୁ ଚାରିଲକ୍ଷ ବର୍ଷ ଲାଗିବ ।"

ଏହା ଶୁଣି ମାଇକେଲ ଆର୍ଡ୍ଡାନଙ୍କ ମନରେ ଅସ୍ଥିରତା ଦେଖାଗଲା । ସେ ଘନ ଘନ ନିଶ୍ୱାସ ମାରିଲେ । ସତେ ଯେପରି ଏ ଅବସ୍ଥା ସାଙ୍ଗେ ସାଙ୍ଗେ ଘଟିଯିବ ବୋଲି ତାଙ୍କର ମନେ ହେଲା । ବାର୍ବିକେନ୍ ଓ ନିକୋଲ୍ ତାଙ୍କର ଏପରି ଅବସ୍ଥା ଦେଖି ହସି ଉଠିଲେ । ତାପରେ ନିକୋଲ୍ କହିଲେ, "ଦ୍ୱିତୀୟ ପ୍ରଶ୍ନ ହେଉଛି, ଚନ୍ଦ୍ର କେବେ ଜୀବର ବାସସ୍ଥଳ ହୋଇଥିଲା କି ନା ।" ଏହି ପ୍ରଶ୍ନ ଆଗରୁ ମୀମାଂସିତ ହୋଇଯାଇଛି ବୋଲି ବାର୍ବିକେନ୍ କହିଲେ ।

ଗୋଲା ଏ ଆଲୋଚନାର କୌଣସି ଭାଗ ନେଉ ନ ଥିଲା । ସେ ତା ପଥରେ ଥାଇ ଅବ୍ୟାହତଭାବରେ ଗତି କରୁଥିଲା ଏବଂ ଅତି ଦ୍ରୁତବେଗରେ ଚନ୍ଦ୍ରଠାରୁ ଦୂରକୁ ଦୂରକୁ ହଟିଯାଉଥିଲା । ତେଣୁ ଚନ୍ଦ୍ରର ଉଜ୍ଜ୍ୱଳ ଆଲୋକଛଡ଼ା ଆଉ କୌଣସି ପଦାର୍ଥ ତାଙ୍କ ଆଖିରେ ପଡ଼ି ପାରୁ ନାହିଁ ।

---

—ଷୋହଳ—

## ଭୀଷଣ ପତନ

ବାର୍ବିକେନ୍ ଓ ତାଙ୍କ ବନ୍ଧୁମାନେ କିଛି ସମୟ ଘୋର ଚିନ୍ତାରେ ବୁଡ଼ିରହିଲେ । ସେମାନେ ଚନ୍ଦ୍ରକୁ ଶିରଧନ ପାଇଁ ଘୁଞ୍ଚି ବୁଲି ଯାଉଥିବାରୁ, ତାକୁ ସନ୍ତୁଷ୍ଟଭାବରେ ଖୁନ୍ଦିରହୁଥିଲେ । ଗୋଲାର ଅବସ୍ଥିତି ଯେପରିଥିଲା, ତାହା ପରିବର୍ତ୍ତିତ ହୋଇଗଲା । ତାର ଭାରବାନ୍ ତଳଭାଗ ଚନ୍ଦ୍ରଅଡ଼କୁ ଆଉ ନ ହୋଇ ପୃଥିବୀଅଡ଼କୁ ଢଳି-ପଡ଼ିଲା । ବାର୍ବିକେନ୍ ଏ ପରିବର୍ତ୍ତନକୁ ଲକ୍ଷ୍ୟକରି ଚିନ୍ତିତ ହୋଇଗଲେ । ଗୋଲା ଚନ୍ଦ୍ର ଘୂରିପଟେ ଅଣ୍ଡାକାର ପଥରେ ଘୂରୁଥିବା ସ୍ଥଳେ, ତାର ଭାରବାନ୍ ଅଂଶ ଚନ୍ଦ୍ର ଅଡ଼କୁ ନ ହୋଇଛି କାହିଁକି, ଏହା ହିଁ ହେଲା ଗୋଟିଏ ଗୁରୁତର ପ୍ରଶ୍ନ ।

ଗୋଲାର ଗତିକୁ ଲକ୍ଷ୍ୟକରି ସେମାନେ ଦେଖିଲେ, ତାହା ଆସିଲାବେଳେ ଯେପରି ବକ୍ରତା ଅବଲମ୍ବନ କରି ଆସିଥିଲା, ଏବେ ସେହିପରି ବକ୍ରତା ଧରି ଚନ୍ଦ୍ରଠାରୁ ଅପସରି ଯାଉଛି । ସେ ଏପରି ଗୋଟିଏ ଅଣ୍ଡାକାର କକ୍ଷ ଧରୁଛି, ଯାହା ଲମ୍ବିଗଲେ ସେହି ସମା-କର୍ଷଣ ଅଞ୍ଚଳରେ ପହଞ୍ଚିଯିବ । ତାହା ଚନ୍ଦ୍ର ଓ ପୃଥିବୀ ଆକର୍ଷଣର ମଧ୍ୟଭାଗ । ସେଠାରେ ପହଞ୍ଚିଲେ ଗୋଲାର ପରିଣାମ କଣ ହେବ, ତାହା କହିବା ଅସମ୍ଭବ । ତେବେ ଅନୁମାନ ଦ୍ୱାରା ଦୁଇଟି କଥା ସିଦ୍ଧ ହୋଇପାରେ । ଗୋଲା ସେଠାରେ ପହଞ୍ଚିଲେ, ତାହା ବେଗ ଅଭାବରେ ନିଶ୍ଚଳ ହୋଇ ଯାଇପାରେ । ନଚେତ୍ ତାର ଗତି ଅତିରିକ୍ତ ପରିମାଣରେ ବଢ଼ିପାରେ । ତଦ୍ୱାରା ସେ ଚନ୍ଦ୍ରର ଅନ୍ଧକାର ଅଂଶରେ ଅତି ଦ୍ରୁତବେଗରେ ଢ଼ୂରିପାରେ । ସେମାନଙ୍କ ଭବିଷ୍ୟତର

ଏପରି ଗୋଟାଏ ଶୋଚନୀୟ କଳ୍ପନାରେ ସେମାନେ ବ୍ୟସ୍ତ ହୋଇ-ପଡ଼ିଲେ ।

ମାଇକେଲ୍ ଧରି ବସିଲେ, ବାର୍ବିକେନ୍ ଓ ନିକୋଲ୍ ଏତେ-ବଡ଼ ବୈଜ୍ଞାନିକ ହୋଇ ଗୋଳାର ଗତିକୁ ବଦଳାଇ ପାରୁନାହାନ୍ତି କାହିଁକି ? ସେମାନେ ତାଙ୍କୁ ବୁଝାଇଦେଲେ ଯେ, ଗୋଳାରେ ତାଙ୍କର କୌଣସି ହାତ ନାହିଁ । ତାହା ତାର ନିଜ ରାସ୍ତାରେ ଗତି କରୁଛି । ସେପରି ଗତି ପରିବର୍ତ୍ତନ କରିବା ସେମାନଙ୍କ କଳ୍ପନାର ବାହାରେ । ଏଥିରେ ଆର୍ଡାନ୍ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ତେଣୁ ସେ ପ୍ରସ୍ତାବକଲେ ଯେ, କିଛି ଜିନିଷ ଗୋଳାରୁ ବାହାର କରିଦେଇ ତାକୁ ହାଲୁକା କରିଦେଲେ ତାର ଗତି ଅବଶ୍ୟ ପରିବର୍ତ୍ତିତ ହୋଇଯିବ । ଏହା ଶୁଣି ବାର୍ବିକେନ୍ ତାଙ୍କୁ ବୁଝାଇ-ଦେଲେଯେ, ଗୋଳାକୁ ହାଲୁକା କରି ଦେଲେ ତାହା ଯେଉଁ ବେଗରେ ଯାଉଛି, ସେ ବେଗ ବହୁଗୁଣ ବଢ଼ିଯିବ; ମାତ୍ର ତହିଁରେ ଗୋଳାର ଦିଗ ପରିବର୍ତ୍ତନ ହେବନାହିଁ । ଆର୍ଡାନ୍ ଏଥିରେ ହତାଶ ହୋଇ-ପଡ଼ିଲେ ।

ତାପରେ ଖାନାପିନା କୌଣସିମତେ ସାରି ସେମାନେ ପୁଣି ପର୍ଯ୍ୟବେକ୍ଷଣ କାମରେ ଲାଗିଲେ । ସେମାନେ ଯେଉଁ ଦ୍ରବ୍ୟସବୁ ଗୋଳାରୁ ବାହାରକୁ ଫିଙ୍ଗି ଦେଇଥିଲେ, ତାହା ଗୋଳାଠାରୁ ଥୋଡ଼ାଏ ଦୂରରେ ପୂର୍ବପରି ତା ସଙ୍ଗେ ସଙ୍ଗେ ଭାସି ଯାଉଥିଲା । ସେଥିରୁ ସେମାନେ ସ୍ଥିର କଲେ ଯେ, ଗୋଳା ଚନ୍ଦ୍ରକୁ ପ୍ରଦକ୍ଷିଣ କରିବା ସଙ୍ଗେ ସଙ୍ଗେ ନିଜ ଗତି ଜୋରରେ ଅଣିଥିବା ବାୟୁମଣ୍ଡଳକୁ ସେପର୍ଯ୍ୟନ୍ତ ଛାଡ଼ି ପାରି ନାହିଁ । ତାହା ହୋଇ ନ ଥିଲେ ସେ ଦ୍ରବ୍ୟ-ମାନଙ୍କର ଓଜନବଳରେ ସେମାନେ ବହୁ ଦୂରକୁ ହଟିଯାଇଥାନ୍ତେ ଏବଂ ଗୋଳା ସଙ୍ଗେ କୌଣସି ସମ୍ବନ୍ଧ ରହି ନ ଥାନ୍ତେ ।

ପୃଥିବୀକୁ ଦେଖିବାରେ କଷ୍ଟ ନ ଥିଲା । ପୂର୍ବଦିନ ତାହା ଅମାବାସ୍ୟା ଭୋଗକରି ସେଦିନ ପ୍ରତିପଦାରେ ଅବସ୍ଥିତ ଥିଲା । ଚନ୍ଦ୍ର-ପକ୍ଷରେ ଅବସ୍ଥା ସ୍ୱତନ୍ତ୍ର । ସେ ଦିବ୍ୟୋଜ୍ଜ୍ୱଳ କିରଣମାଳା ଯଥାବିଧି ବିସ୍ତାର କରି ବ୍ୟୋମପଟରେ ଝୁଲୁଥିଲା । ତାର ସେହି କଳାଚିହ୍ନସବୁ ଦେଖି ଗାଉଁଲି ଲୋକମାନେ ତାକୁ ଶଶାର ଚିହ୍ନ ବା କେହି କେହି ମନୁଷ୍ୟ ମୁହଁର ଆଖି, ନାକ, ପାଟି ପ୍ରଭୃତିର ଚିହ୍ନବୋଲି କହନ୍ତି ଏବଂ ସେଥିପାଇଁ ଚନ୍ଦ୍ରକୁ ଶଶାଙ୍କ, ଶଶୀ ଓ କେହି କେହି ସେ ଗୋଟିଏ ସୁନ୍ଦରୀ ନାରୀ ବା କେହି କେହି ସୁନ୍ଦର ପୁରୁଷ ବୋଲି ତା ସଙ୍ଗେ ବ୍ୟବହାର କରନ୍ତି, ସେହି ଚିହ୍ନସବୁ ପରିଷ୍କାର ହୋଇ ଜଣା ପଡ଼ୁଥିଲା । ଅନ୍ୟ ଅଂଶସବୁ ସୌର କର ସଂପାତରେ ଦିବ୍ୟା-ଲୋକରେ ଝଲ୍‌ମଲ୍ ହେଉଥିଲା । ଠାଇକେ ତା ମଧ୍ୟରେ ସୂର୍ଯ୍ୟ ଛବି ଝଲସୁ ଥିଲା ।

ଗୋଲର ଗତିରେ ହ୍ରାସବୃଦ୍ଧି ବାର୍ବିକେନ୍ ଲକ୍ଷ୍ୟକରି ପାରୁ ନ ଥିଲେ । ବାହାରେ ଗୋଟାଏ ବସ୍ତୁକୁ ଲକ୍ଷ୍ୟକରି ତା କୋଣ ଓ ବାହୁର ମାପ ନ ନେଲେ ବେଗ ଲକ୍ଷ୍ୟ କରିଯାଇ ନ ପାରେ । ତଥାପି ସେ ଯେତେଦୂର ଦେଖିଲେ, ତହିଁରୁ ବୁଝିପାରିଲେ ଯେ ଗୋଲର ଗତି କ୍ରମଶଃ କମିଯାଉଛି । କାରଣ ଗୋଲ ଚନ୍ଦ୍ରଚାରିପଟେ ଗୋଟାଏ କକ୍ଷରେ ଆବର୍ତ୍ତନ କଲାବେଳେ ସେ କକ୍ଷର ଆକାର ନିଶ୍ଚୟ ଅଣ୍ଡାପରି ହେବ । ଗୋଲକାର ପଥ କେବେହେଁ ସ୍ୱାଭାବିକ ନୁହେଁ । ବିଜ୍ଞାନ ତାହା ଆଦୌ ସ୍ୱୀକାର କରେନାହିଁ । ଉପଗ୍ରହ ଗ୍ରହଚାରିପଟେ ଘୂରୁଥିଲାବେଳେ, ଗ୍ରହ ସୂର୍ଯ୍ୟଚାରିପଟେ ଘୂରିଲାବେଳେ ଓ ସୂର୍ଯ୍ୟ ତାର ଅଜ୍ଞାତ କେନ୍ଦ୍ର ଚାରିପଟେ ଘୂରିଲାବେଳେ, ସମସ୍ତେ ଏହିପରି ଅଣ୍ଡାକାର ପଥରେ ଆବର୍ତ୍ତିତ ହୁଅନ୍ତି । ସୁତରାଂ ଗନ୍‌କ୍ଲବ୍

ଦ୍ୱାରା ନିକ୍ଷିପ୍ତ ଗୋଲା ଏହି ପ୍ରାକୃତିକ ନିୟମ ଲଙ୍ଘନ କରିବ କିପରି ? ଯେଉଁ ଉପଗ୍ରହ ଗ୍ରହ ଚାରିପଟେ ଘୂରେ, ସେ ତାର ନିକଟରେ ଥିଲା-ବେଳେ ତାର ଗତି ଖୁବ୍ ବୃଦ୍ଧିପାଏ । ମାତ୍ର ଦୂରକୁ ଗଲାବେଳେ ଏ ଗତି ବେଶି କମିଯାଏ । ସୂର୍ଯ୍ୟ ସଙ୍ଗେ ପୃଥିବୀର ଅବସ୍ଥା ଏହିପରି ଓ ପୃଥିବୀ ସଙ୍ଗେ ଚନ୍ଦ୍ରର ଅବସ୍ଥା ମଧ୍ୟ ଏହିପରି ଅଟେ । ସୁତରାଂ ଚନ୍ଦ୍ରର ଉପଗ୍ରହ ଗୋଲା ତା ନିକଟରେ ଘୂରୁଥିଲାବେଳେ ତାର ଖୁବ୍ ବେଗ ଥିଲା । ବର୍ତ୍ତମାନ ସେ ତାଠାରୁ ଅଧିକ ଦୂରକୁ ଗୁଲିଯାଇଥିବାରୁ ବେଗ ହ୍ରାସ ହେବା ସ୍ୱାଭାବିକ । ପୁଣି ଚନ୍ଦ୍ରର ନିକଟହେବା ସଙ୍ଗେ-ସଙ୍ଗେ ଏ ବେଗ ଖୁବ୍ ବୃଦ୍ଧିପାଇବ ।

ଗୋଲାର ଗତିକୁ ନିଜର ଆୟତ୍ତାଧୀନ ରଖିବା ଉଦ୍ଦେଶ୍ୟରେ ଅର୍ଡାନ୍ କହିଲେ, "ଆମେ ସାଙ୍ଗରେ ଯେଉଁ ହାଉଇସବୁ ଆଣିଛୁଁ, ତାହା ବ୍ୟବହାର କଲେ ତ ଗୋଲାର ଗତି ଆମ ଇଚ୍ଛାଧୀନ ହୋଇଯିବ ?"

ବାର୍ବିକେନ୍ କହିଲେ, "ସମୟ ଆସିଲେ ତାହା କରିବା । ଦେଖ, ବର୍ତ୍ତମାନ ଗୋଲାର ଗତି ଚନ୍ଦ୍ରଠାରୁ ଦୈର୍ଘ୍ୟାଧିକ ଯାଉଛୁ । ଆମେ ଏତେବେଳେ ହାଉଇ ମାରିଲେ ଗୋଲାର ଗତିରେ ଯେଉଁ ପରିବର୍ତ୍ତନ ହେବ, ତାହା ଆମ ସପକ୍ଷରେ ଯିବ ନାହିଁ । ତଦ୍ୱାରା ସେ ଚନ୍ଦ୍ରଠାରୁ ଆହୁରି ଦୂରକୁ ହଟିଯିବ । ବର୍ତ୍ତମାନ ତ ଚନ୍ଦ୍ରରେ ପହଞ୍ଚିବା ଆମର ଲକ୍ଷ୍ୟ ?"

"ନିଶ୍ଚୟ" ।

"ତେବେ ଅପେକ୍ଷା କର । କୌଣସି ଅପ୍ରତ୍ୟାଶିତ ଶକ୍ତିବଳରେ ଗୋଲାର ଗତି ପରିବର୍ତ୍ତିତ ହୋଇ ତାର ତଳଭାଗ ପୃଥିବୀଆଡ଼କୁ

ଟଳପଟ ହେଉଛି । ସମାକର୍ଷଣ ସ୍ଥଳରେ ପହଞ୍ଚିଲେ ତାହାର ଅଗ୍ରଭାଗ ଚନ୍ଦ୍ର ଅଭିମୁଖରେ ଟଳିବା ସମ୍ଭାବନା । ସେଠାରେ ଏହାର ଗତିର ବେଗ ମୋଟେ ନ ହୋଇପାରେ । ସେଠାରେ ହାଉଇ ପ୍ରୟୋଗ କଲେ, ଏହାର ଗତି ପୁଣି ଚନ୍ଦ୍ରଅଭିମୁଖୀ ହେବ । ସେପର୍ଯ୍ୟନ୍ତ ଆମକୁ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ହେବ ଓ ସମସ୍ତ ଚେଷ୍ଟା ଆମ ସପକ୍ଷରେ ଆଣିବାକୁ ହେବ । ଏତେ ଦୀର୍ଘ ହତାଶା ପରେ ପୁଣି ଯାଇ ଆମେ ଲକ୍ଷ୍ୟସ୍ଥଳରେ ପ୍ରବେଶ କରି ପାରିବା ।"

ଗୋଲା ସେହି ସମାକର୍ଷଣ ସ୍ଥଳରେ କେତେବେଳେ ଯାଇ ପହଞ୍ଚିବ, ସେହିଚିନ୍ତା ସେମାନଙ୍କ ମନରେ ସ୍ଥାନ ପାଇଲା । ସେଠାରେ ସେମାନେ ତାଙ୍କ କୌଶଳ ପ୍ରୟୋଗ କରିବେ । ବାର୍ବିକେନ୍ ତାହା ହିସାବ କରି ଦେଖିଲେ ଯେ, ଡିସେମ୍ବର ତା ୮ ଦିନ ଗୋଟାଏ ବେଳେ ସେମାନେ ସମାକର୍ଷଣ ସ୍ଥାନରେ ପହଞ୍ଚିପାରିବେ । ସେତେବେଳେ ଥିଲା ଡିସେମ୍ବର ତା ୭ ଦିନ ୩ଟା ସମୟ । ଆଉ କୌଣସି ପ୍ରତିବନ୍ଧକ ନ ଘଟିଲେ ଗୋଲା ଆଉ ବାଇଶ ଘଣ୍ଟା ପରେ ସେ ଅଞ୍ଚଳରେ ପହଞ୍ଚିପାରିବ । ଏ ସମୟ ମଧ୍ୟରେ ସେମାନେ ସାବଧାନ ହୋଇ ହାଉଇସବୁ ବାହାର କରି ଆଣି ସଜାଇରଖିଲେ ଏବଂ ଠିକ୍ ସମୟ ହେଲେ ନିଆଁ କରିଦେବାକୁ ଅପେକ୍ଷା କଲେ ।

ଏ ସମୟ ମଧ୍ୟରେ ସେମାନଙ୍କର ଆଉ କିଛି କାମ ନ ଥିଲା । ସେମାନେ ଚାଳିଶ ଘଣ୍ଟା ହେଲା ଶୋଇ ନ ଥିଲେ । ତେଣୁ ଟିକିଏ ଶୋଇ ସ୍ୱାସ୍ଥ୍ୟ ସମ୍ପାଦନ କରିବାକୁ ମନ ବଳାଇଲେ । ବିଛଣାରେ ପଡ଼ିଲା ମାତ୍ରେକେ ଘୋରନିଦ୍ରା ମାଡ଼ି ଆସିଲା । ନାନା ଉଦ୍‌ବେଗ ଜନିତ ଘୋର ଅଶାନ୍ତି ସେମାନଙ୍କ ମନକୁ ବ୍ୟାପୃତ ରଖିଥିଲା । ତେଣୁ ସେମାନେ ନିରବଚ୍ଛିନ୍ନ ନିଦ୍ରାସୁଖ ଭୋଗ କରି ପାରିଲେ

ନାହିଁ । ସକାଳ ୭ଟା ବେଳକୁ ସେମାନେ ଏକ ସମୟରେ ଉଠି-ପଡ଼ିଲେ ।

ଗୋଲ ଚନ୍ଦ୍ରଠାରୁ ସେତେପର ହଟି ଯାଉଥିଲା । ତାର ଅଗ୍ରଭାଗ ବରାବର ଚନ୍ଦ୍ରଅଡ଼କୁ ଚାଲି ପଡ଼ୁଥିଲା । ଏ ଘଟଣା ଯଦିଓ ଅବୋଧ୍ୟ, ତଥାପି ତାହା ବାର୍ବିକେନଙ୍କ କଳ୍ପନା ପ୍ରତି ସହାୟକ ହେଉଥିଲା । ଆଉ ସତର ଘଣ୍ଟା ବାକି ରହିଲା । ଏ ସମୟ ସେମାନଙ୍କୁ ବଡ଼ ଦୀର୍ଘ ବୋଧ ହେଲା । ଯେଉଁ ମୁହୂର୍ତ୍ତ ଆସି ପହଞ୍ଚିଲେ ସେମାନେ ହୁଏତ ଚନ୍ଦ୍ରରେ ଯାଇ ପଡ଼ିବେ ବା ଗତିହୀନ ଅଞ୍ଚଳ ମଧ୍ୟରେ ଚିରଦିନ ଅବଦ୍ଧ ହୋଇ ରହିବେ, ସେ ମୁହୂର୍ତ୍ତକୁ ସେମାନେ ବଡ଼ ଉଦ୍‌ବେଗର ସହିତ ଅପେକ୍ଷା କରି ରହିଲେ ।

ବାର୍ବିକେନ ଓ ନିକୋଲ ନାନାଦି ହିସାବ ଓ ବୈଜ୍ଞାନିକ କଳ୍ପନାରେ ନିବିଷ୍ଟ ଥିଲାବେଳେ ଓ ଅର୍ଡ଼ାନ ଅସ୍ଥିରତାର ଚୂଡ଼ାନ୍ତ ଅବସ୍ଥା ଦେଖାଇ ଖାଲି ଏପଟ ସେପଟ ହେଉଥିଲାବେଳେ ଗୋଲା ଷୋଳଘଣ୍ଟା ଅତିକ୍ରମ କରିଗଲା । ଆଉ ଘଣ୍ଟାକପରେ ଗୋଲା ସମା-କର୍ଷଣ ଅଞ୍ଚଳରେ ପ୍ରବେଶ କରିବ । ଠିକ ଗୋଟାକ ବେଳେ ଗୋଲାର ଗତି ବନ୍ଦ ହୋଇଯିବ । ସେଠାରେ କୌଣସି ପଦାର୍ଥର ଓଜନ ମୋଟେ ରହିବ ନାହିଁ ।

ଗୋଲାର ଅଗ୍ରଭାଗ ଚନ୍ଦ୍ର ଅଡ଼କୁ ପରିଷ୍କାର ରୂପେ ଚାଲିଗଲା । ଏତିକିବେଳେ ହାତେଲୀ ମାରିଲେ ଗୋଲାର ଗତି ଅବଶ୍ୟ ବଦଳି ଯିବ । ସୁଯୋଗ ବର୍ତ୍ତମାନ ଯାତ୍ରୀମାନଙ୍କ ସପକ୍ଷରେ । ଏହି ସମାକର୍ଷଣ ଅଞ୍ଚଳରେ ଗୋଲାର ଗତି ବାଣ ଜୋରରେ ସାମାନ୍ୟ ବଦଳିଲେ ମଧ୍ୟ ତାହା ଅବଶ୍ୟ ଚନ୍ଦ୍ର ଅଡ଼କୁ ଗତିକରିବ ।

ଆଉ ପାଞ୍ଚ ମିନିଟ ମାତ୍ର ବାକି । ଅର୍ଡାନ ଉଠିଆସିଲେ ଏବଂ ହାଉଇଟଜର ରକେଟମାନଙ୍କରେ ନିଆଁ ଲଗାଇବାକୁ ପ୍ରସ୍ତୁତ ହୋଇ ରହିଲେ । ଘଣ୍ଟା ଘଣ୍ଟା ଗୋଟାଏ ବାଜିଲା ଏବଂ ସଙ୍ଗେ ସଙ୍ଗେ ହାଉଇଟଜରମାନଙ୍କରେ ଏକ ସମୟରେ ନିଆଁ ଲଗାଇ ଦିଆଗଲା । ବାଣ-ସବୁ ଗୋଲକୁ ଗୋଟାଏ ଧକ୍କା ଦେଇ ପଦାକୁ ଜୋରରେ ବାହାରିଗଲେ । ସେମାନଙ୍କ ଧୂଆଁ ଥୋଡ଼ାଏ ଦୂର ଗଲା । ମାତ୍ର ଅଳ୍ପ ସମୟ ଭିତରେ ସେ ନିଆଁ ଲିଭିଗଲା । ଶବ୍ଦ ମୋଟେ ହେଲାନାହିଁ । ଗୋଲା ଟିକିଏ ଚହଲିଲେ ମଧ୍ୟ, ତା ଗତିରେ କୌଣସି ପରିବର୍ତ୍ତନ ଲକ୍ଷିତ ହେଲା ନାହିଁ । ଯାତ୍ରୀମାନେ ଅବସ୍ଥାର ପରିବର୍ତ୍ତନକୁ ଖୁବ୍ ଉତ୍କଣ୍ଠାର ସହ ଲକ୍ଷ୍ୟ କଲେ ।

ବାର୍ବିକେନ ଗବାକ୍ଷ ଆଡ଼୍ ମୁହଁ ବୁଲାଇ ଯେତେବେଳେ ବନ୍ଧୁ-ମାନଙ୍କ ଆଡ଼କୁ ଚାହିଁଲେ, ସେତେବେଳେ ତାଙ୍କ ମୁହଁ ବିବର୍ଣ୍ଣ ହୋଇ ଯାଇଥିଲା । ତାଙ୍କ କପାଳର ଶିରା ସବୁ ବାଳ ହୋଇଯାଇଥିଲା ଓ ଓଠ ଶୁଖି ଯାଇଥିଲା । ସେ ଅତିକ୍ଷୀଣ ସ୍ୱରରେ କହିଲେ, "ଆମ୍ଭେମାନେ ପଡ଼ି-ଯାଉଛୁଁ ।"

ଅର୍ଡାନ ଚିତ୍କାର କରି ପଚାରିଲେ, "କୁଆଡ଼େ ? ଚନ୍ଦ୍ର ଉପରେ ?"

"ନା, ପୃଥିବୀ ଉପରେ ।"

ଯଥାର୍ଥରେ ଭୀଷଣ ପତନ ଆରମ୍ଭ ହୋଇ ଯାଇଥିଲା । ଗୋଲାରେ ଯେଉଁ ବେଗ ଥିଲା, ତାହା ସମାକର୍ଷଣ ଅଞ୍ଚଳ ଅତିକ୍ରମ କରି ଗୋଲାକୁ ଦୂରକୁ ନେଇ ଯାଇଥିଲା । ହାଉଇଟଜର ଧକ୍କା ତାର କୌଣସି କ୍ଷତି କରି ପାରିଲା ନାହିଁ । ଯେଉଁ ବେଗ ଗୋଲାକୁ ଚନ୍ଦ୍ର-ଯାଏ ଉଠାଇ ଆଣିଥିଲା, ସେହି ବେଗ ତାକୁ ଚନ୍ଦ୍ରଠାରୁ ଫେରାଇ

ନେବାକୁ ବସିଲା । ସେ ସେତିକି ବେଗରେ ପୃଥିବୀ ଉପରେ ପଡ଼ିବାକୁ ଲାଗିଲା ।

ଦୁଇ ଲକ୍ଷ ଚଉତିରିଶ ହଜାର ମାଇଲ୍ ଉପରୁ ତଳେ ପଡ଼ିବା ଯେ କି ଭୟଙ୍କର ବିଷୟ, ତାହା କଳ୍ପନା କରିବା ସହଜ ନୁହେଁ । କୌଣସି ଦମ୍ (Spring) ଏ ଝଟଡ଼ାକୁ ଦବାଇ ପାରିବ ନାହିଁ । ମାଧ୍ୟାକର୍ଷଣ ନିୟମାନୁସାରେ କୌଣସି ପଦାର୍ଥକୁ ଯେତେ ବେଗରେ ଊର୍ଦ୍ଧ୍ୱକୁ ନିକ୍ଷେପ କରାଯାଇ ଥାଏ, ତାହା ସେତିକି ବେଗରେ ତଳେ ଆସି ପଡ଼େ । ସୁତରାଂ ଗୋଲା ତୋପ ଭିତରୁ ସେକେଣ୍ଡକେ ଯେଉଁ ଚାରି ହଜାର ଗଜ ବେଗରେ ଉଡ଼ିଥିଲା, ସେହି ବେଗରେ ତାହା ଆସି ତଳେ ପଡ଼ିବ ।

ନିକୋଲ ହତାଶ ହୋଇ କହିଲେ, "ଆମ୍ଭେମାନେ ଶେଷ ହୋଇଗଲୁଁ ।"

ବାର୍ବିକେନ ଟିକିଏ ଧର୍ମଭାବରେ କହିଲେ, "ଆମ୍ଭେମାନେ ମରିଗଲେ ଆମ ଯାତ୍ରାର ଫଳ ବହୁ ଆଡ଼ମ୍ବରରେ ବାଢ଼ିଯିବ । ଈଶ୍ୱର ତାଙ୍କ ଗୁପ୍ତକଥା ଆମ୍ଭଙ୍କୁ ଶିଖାଇଦେବେ । ପରଲୋକରେ ବିଜ୍ଞାନ ଲାଭପାଇଁ କଳକବ୍ଜା ଆବଶ୍ୟକ ହେବନାହିଁ । ଅନନ୍ତ ଜ୍ଞାନସଙ୍ଗେ ତାହା ମିଶିଯିବ ।"

ଅର୍ଡାନ୍ ଆଶ୍ୱସ୍ତ ହୋଇ କହିଲେ, "ସତକଥା, ପରଲୋକରେ ଆମେ ନିଶ୍ଚୟ ଆଶ୍ୱସ୍ତ ହେବା ଯେ ସାମାନ୍ୟ ଚନ୍ଦ୍ରମଣ୍ଡଳ ଅନ-ଦର୍ଶନରେ ବାଧାଦେଇ ପାରିବ ନାହିଁ ।"

ବାର୍ବିକେନ ବକ୍ଷରେ ଦୁଇବାହୁ ଛନ୍ଦି ଊର୍ଦ୍ଧ୍ୱକୁ ଦୃଷ୍ଟି କରି ମୃତ୍ୟୁକୁ ଅପେକ୍ଷା କରୁ କରୁ କହିଲେ,

"ଈଶ୍ୱରେଚ୍ଛା ପୂର୍ଣ୍ଣ ହେଉ" ।

---

## —ସତର—

### ସମ୍ପିହାନା ଜାହାଜ

ସୁକ୍ତରାଷ୍ଟ୍ରର ନୌବାହିନୀ ମଧ୍ୟରୁ ସମ୍ପିହାନା ଜାହାଜ ଉପରେ ଭାରପଡ଼ିଥିଲା ଯେ ତାହା ପ୍ରଶାନ୍ତ ମହାସାଗର ମଧ୍ୟରେ ଜଳର ଗଭୀରତା ମାପ କରିବ । ସେ ଜାହାଜର କାପ୍ତାନ ବ୍ରୁମସ୍‌ବେରୀ ତାଙ୍କ ଦଳସହ ଆମେରିକା ଉପକୂଳରୁ ନ୍ୟୁମେକ୍‌ସିକୋ ପର୍ଯ୍ୟନ୍ତ ଏହି ଉନିଶହ ମାଇଲ ଅଞ୍ଚଳ ମାପ କରୁଥିଲେ ।

ଡିସେମ୍ବର ତା ୧୧ ରାତି ୧୦ଟାବେଳେ ସେ ତାଙ୍କ ସହକର୍ମୀ-ମାନଙ୍କ ସହିତ ଆନନ୍ଦରେ ଖାନାପିନା ଶେଷକରି ନିଜ କକ୍ଷରେ ବିଶ୍ରାମ ନେଲେ । ସେହି ରାତିରେ ସମୁଦ୍ର ବକ୍ଷରେ ଅତି କମନୀୟ ଶୋଭା ଦେଖାଯାଉଥିଲା । ପବନର ସଞ୍ଚାର ମୁଣ୍ଡହିଁ ଅନୁଭୂତ ହେଉ ନ ଥିଲା । ମାସ୍ତୁଲ ଉପର ପତାକାସବୁ ନ ଉଡ଼ି ପଡ଼ିଯାଇଥିଲା । ରାତିର ସେ ମହନୀୟତା କାପ୍ତାନ୍ ଓ କର୍ମୀମାନଙ୍କୁ ଅଭୂତପୂର୍ବ ଆନନ୍ଦରେ ଭସାଇ ଦେଇଥିଲା । କାରଣ ଗନ୍‌ କ୍ଲବ ତୋପରୁ ଯେଉଁ ଧୂଆଁ ଉଠି ବିଶାଳ ଆକାଶକୁ ଦୀର୍ଘକାଳ ପର୍ଯ୍ୟନ୍ତ ଢାଙ୍କି ରଖିଥିଲା, ଓ ତାପରେ ଯେଉଁ ପ୍ରବଳ ବାତ୍ୟା ଉନଆଜ ପର୍ଯ୍ୟନ୍ତ ବୋହି ସେମାନଙ୍କୁ ବ୍ୟତିବ୍ୟସ୍ତ କରି ପକାଉଥିଲା, ତା ୧୧ ବେଳକୁ ସେସବୁର କୌଣସି ସତ୍ତା ନ ଥିଲା । ଆକାଶ ନିର୍ମଳ ଓ ବାୟୁ ନିଶ୍ଚଳ, ତେଣୁ ସେମାନଙ୍କ ମନରେ ଆନନ୍ଦ ଜାତହେବା ସଙ୍ଗେ ସଙ୍ଗେ କାର୍ଯ୍ୟ ମଧ୍ୟ ସୁଚାରୁରୂପେ ପରିଚାଳିତ ହେଲା । ତେଣୁ ସେମାନେ ଦିନର କାମ ଶେଷକରି ରାତିରେ ଖାନାପିନାର ବିଶେଷ ଧୂମ୍ କରିଥିଲେ ।

ମାପଚିତ୍ରର ଉଦ୍ଦେଶ୍ୟ ଏହିଥିଲା ଯେ ଆମେରିକା ଉପକୂଳରୁ ହ୍ୱାଜ୍ୟାନ୍ ଦ୍ୱୀପଯାଏ ଗୋଟାଏ ତାର ଲାଇନ୍ ପଡ଼ିବ । ଗୋଟାଏ ଶକ୍ତିଶାଳୀ କମ୍ପାନୀର ଏହା ଏକ ବିରାଟ ଯୋଜନା । ସେ କମ୍ପାନୀର ଏପରି ପ୍ରସ୍ତାବଥିଲା ଯେ, ଏ ଲାଇନ କାର୍ଯ୍ୟ ସଫଳ ହେଲେ ସେମାନେ ଓସିଏନିଆ ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ ତାରରେ ଛନ୍ଦିଦେବେ । ଏହା ଗୋଟାଏ ବିଶାଳ ପ୍ରଚେଷ୍ଟା ।

ଏହି ଚେଷ୍ଟାପାଇଁ ମାପ କରିବାର ଭାର ସସ୍କିହାନା ଉପରେ ପଡ଼ିଥିଲା । ତା ୧୧ ରାତିଠାରୁ ତା ୧୨ ପର୍ଯ୍ୟନ୍ତ ସେମାନେ ଓ୍ୱାଶିଂଟନ୍‌ର ପ୍ରଥମ ଦ୍ରାଘିମାଠାରୁ ପଶ୍ଚିମ ଅଞ୍ଚଳରେ ୨୭ ଓ ୪୧ ଡିଗ୍ରୀ ମଧ୍ୟରେ ଥିଲେ । ଚନ୍ଦ୍ର ଖୁବ୍ ଊର୍ଦ୍ଧ୍ୱରେ ରହି ଦିବ୍ୟଆଲୋକ ବିସ୍ତାର କରୁଥିଲା ।

କାପ୍ତାନ୍ ଶୋଇଲାପରେ ଜାହାଜର ଅଫିସର ଓ ନାବିକମାନେ ଚନ୍ଦ୍ରଗୋଲା ଓ ଯାତ୍ରୀମାନଙ୍କ ବିଷୟରେ ବହୁ ଆଲୋଚନାରେ ଲିପ୍ତ ହେଲେ । ସେମାନଙ୍କ ମନରେ ଦୃଢ଼ ଧାରଣା ହୋଇଥିଲା ଯେ ଗୋଲା ତା ୫ ଦିନ ଚନ୍ଦ୍ରରେ ପଡ଼ିଛି । ତେଣୁ ବାର୍ବିକେନ କାପର ବୈଜ୍ଞାନିକ ଆଲୋଚନାରେ ନିବିଷ୍ଟ ରହିଥିବେ, ନିକୋଲ୍ କାପର କମ୍ପାସ୍ ସାହାଯ୍ୟରେ ଲେଭଲ୍ ମାପ କରୁଥିବେ ଓ ଅର୍ଡାନ୍ କାପର ସିଗାର ଧୂଆଁରେ ଚନ୍ଦ୍ରଲୋକରେ କ୍ଷୁଦ୍ର ମେଘସବୁ ସୃଷ୍ଟି କରୁଥିବେ, ଏହି କଳ୍ପନାର ମାଦକତାରେ ସେମାନେ ବିଭୋର ହେଉଥିଲେ ।

ଏ ସମୟରେ ଜଣେ ଯୁବକ ଅଫିସର ପ୍ରସ୍ତାବ କଲେ ଯେ, ବାର୍ବିକେନ ଅଟରେ ଚିଠିପତ୍ର ଆଦାନ ପ୍ରଦାନ କରିବାକୁ ଆୟୋଜନ କରିବେ । ମାତ୍ର ଡାକବିଭାଗ ସେ ଚିଠିପତ୍ରସବୁ ନେବାପାଇଁ ଆମେରିକାକୁ ଆୟୋଜନ କରିବା ବିଷୟରେ

ଅସିଷ୍ଟାଣ୍ଟ କାପ୍ତାନ୍ ସନ୍ଦେହ ପ୍ରକାଶ କରିବାରୁ ସମସ୍ତେ ହସି ଉଠିଲେ । ଯୁବକ ଏପରି ଉପହାସରେ ଦବି ନ ଯାଇ ସ୍ଥିର ଭାବରେ କହିଲେ, "ସେମାନେ ଚନ୍ଦ୍ର ଦେହରେ ବଡ଼ ବଡ଼ ଅକ୍ଷରରେ ଲେଖାମାନ ଲେଖିଲେ , ଲଙ୍ଗସ୍ ପୀକ୍‌ରେ ଥିବା ଦୂରବୀକ୍ଷଣ ତାହା ସହଜରେ ବୁଝି ପାରିବ । ତାପରେ ପୃଥିବୀରୁ ଖବର ଦେବାକୁ ସେହିପରି ଅଯୋଜନ କରାଯିବ । ଅକ୍ଷରସବୁ ୬୦୦ ଫୁଟ ଉଚ୍ଚ ଓ ବାକ୍ୟସବୁ ତିନି ମାଇଲ ଲମ୍ବ ହେଲେ ଲଙ୍ଗ୍‌ସ୍ ପୀକ୍‌ରେ ଥିବା ଲୋକେ ସହଜରେ ବୁଝି ପାରିବେ ।"

ଏହାଶୁଣି ସମସ୍ତେ ତାଙ୍କର ପ୍ରଶଂସା କଲେ । ତାପରେ ପୃଥିବୀରୁ ଖବର ଯିବା ବିଷୟରେ ନାନାଦି କଳ୍ପନା ଜଳ୍ପନା ଚାଲିଲା । ସେହିପରି ପ୍ରକାଣ୍ଡ ଅକ୍ଷରସବୁ ଲେଖି ତାହା ଶକ୍ତିଶାଳୀ ବିଦ୍ୟୁତ ଅଲୋକରେ ଅଲୋକିତ କରି ରଖିଲେ, ସେମାନେ ଅବଶ୍ୟ ତାହା ପଢ଼ି ପାରିବେ । ତାପରେ ଅଳ୍ପଦିନେ ଯାତ୍ରୀ ଚନ୍ଦ୍ରକୁ ପଠାଇବା ପାଇଁ ପ୍ରସ୍ତାବ ହେଲା । ଟଫ୍ଲାବିଡ଼ା ତୋପ ଯେତେଦିନ ଯାଏ ଥିବ, ସେତେ ଦିନ ଯାଏ ଦିନକେ ଗୋଟାଏ ଲେଖାଏଁ ଗୋଳା ଯିବାରେ କ୍ଷତିକଅଣ ? ତାହେଲେ ସେକ୍ରେଟାରୀ ଜେ. ଟି. ମଷ୍ଟନ୍ ଦିନେଯାଇ ତାଙ୍କ ପ୍ରିୟ ବନ୍ଧୁମାନଙ୍କୁ ଦେଖିପାରିବେ । ତାଙ୍କ ପରେ ପୃଥିବୀର ଅର୍ଦ୍ଧେ ଲୋକ ଯାଇ ଚନ୍ଦ୍ରଲୋକରେ ଘରଦ୍ୱାର କରି ରହିବା ବିଚିତ୍ର କଣ ?

ଏହିପରି ନାନାବିଧ ମଧୁର ଅଲୋଚନାରେ ରାତି ଗୋଟାଏ ପର୍ଯ୍ୟନ୍ତ ସମୟ ଲାଗିଲା । ଏସବୁ କଳ୍ପନା ଜଳ୍ପନାରେ ସେମାନେ ଅତିଶୟ ଉନ୍ମତ୍ତ ହୋଇ ଉଠିଲେ । ବାର୍ବିକେନଙ୍କ ବିଶାଳ ଚେଷ୍ଟା

ସଫଳ ହେଲା ଏବଂ ଆଜି କୌଣସି କଥା ଅସମ୍ଭବ ବୋଲି ଆମେରିକା ଲୋକଙ୍କ ମନକୁ ଆସୁ ନ ଥିଲା ।

ଜାହାଜ ସେ ସ୍ଥାନର ଜଳମାପ କରି ଅନ୍ୟସ୍ଥାନକୁ ଯିବାପାଇଁ ପ୍ରସ୍ତୁତ ହେଲା । ଯନ୍ତ୍ରସବୁ ଖୋଲା ହୋଇ ନ ଥିଲା; ଏସମୟରେ ଗୋଟାଏ ସତର ମିନଟ୍ ସମୟରେ ଗୋଟାଏ ସୁ ସୁ ଶବ୍ଦ ଲେଫ୍‌ଟେନାଣ୍ଟ୍ ବ୍ରନ୍‌ସ୍‌ଫିଲ୍‌ଡ୍‌ଙ୍କ କାନରେ ବାଜିଲା । ସେ ଓ ତାଙ୍କ ସାଥୀମାନେ ପ୍ରଥମେ ମନେକଲେ, ଇଞ୍ଜିନର ଗୋଟାଏ କୌଣସି ନଳୀରୁ ଏ ଶବ୍ଦ ବାହାରୁଛି । ମାତ୍ର ବ୍ରନ୍‌ସ୍‌ଫିଲ୍‌ଡ୍ କାନଡେରି ଶୁଣିଲେ ଯେ ସେ ଶବ୍ଦ ଯନ୍ତ୍ରଭିତରୁ ନ ଆସି ଖୁବ୍ ଉଚ୍ଚ ଆକାଶ ଦେଇରୁ ଆସୁଛି । ସେମାନେ ଏକଥା ଭାବିବାକୁ ସମୟ ପାଇ ନ ପାଇଣୁ ସୁ-ସୁ ଶବ୍ଦ ଅତି ଭୟଙ୍କର ହୋଇ ଉଠିଲା । ହଠାତ୍ ଗୋଟାଏ ପ୍ରକାଣ୍ଡ ଉଲ୍‌କା ତୀବ୍ର ଆଲୋକରେ ଚାରିଆଡ଼ ଝଲମଲ କରି ଓ ବାୟୁମଣ୍ଡଳକୁ ଭୀଷଣରୂପେ ଥରାଇ ମାଡ଼ି ଆସିଲା । ସେ ତୀବ୍ର ଆଲୋକରେ ଏମାନଙ୍କର ଆଖି ବୁଜି ହୋଇଗଲା । ସେ ଅଗ୍ନିପିଣ୍ଡ ଯେତେ ପାଖକୁ ପାଖକୁ ଆସିଲା, ତା'ର ଆକାର ସେତେବଡ଼ ଦେଖାଗଲା । ତାହା ଗୋଟାଏ ବିରାଟ ବଜ୍ରପରି ଶବ୍ଦକରି ପାଣିରେ ପଡ଼ିଗଲା ଏବଂ ମୁହୂର୍ତ୍ତ ଭିତରେ ଅଦୃଶ୍ୟ ହୋଇଗଲା ।

କାପ୍ତାନ୍ ନିଦରୁ ଉଠିଆସି ବିହ୍ୱଳ ହୋଇ ପଚାରିଲେ, "ଘଟଣା କଅଣ ?"

ଯୁବକ ଅଫିସର କହିଲେ, "କାପ୍ତାନ୍ ! ସେମାନେ ପୁଣି ଫେରି ଆସିଲେ ।"

---

—ଅଠର—

## ଉତ୍ତୋଳନ

ସମ୍ଭିହାନା ତାହାଙ୍କର ପତନ ଉପରେ ଦେଖାଏ ଉତ୍ତେଜନା ଖେଳିଗଲା । ଅଫିସର ଓ ନାବିକମାନେ ଯେଉଁ ଭୀଷଣ ବିପଦରୁ ଯଦିଓ ମାତ୍ର ପାର ହୋଇଗଲେ, ଯାହା ଫଳରେ ତାହାଙ୍କ ବନ୍ଧୁ ବନ୍ଦିଯାଇ ସମସ୍ତଙ୍କ ସହିତ ଜଳ ସମାଧି ନେଉଥାନ୍ତା, ସେ କଥା ଆଡ଼କୁ ସେମାନେ ମୋଟେ ମନ-ଧ୍ୟାନ ଦେଲେ ନାହିଁ । ସମସ୍ତେ କେବଳ ଗୋଲ ଯାତ୍ରୀମାନଙ୍କ ପ୍ରାଣହାନି ନେଇ ଚିନ୍ତିତ ଓ ଦୁଃଖିତ ହେଲେ । ସେମାନେ ସ୍ଥିର ରୂପେ ବୁଝି ପାରିଲେ ଯେ, ସେହି ଅଗ୍ନେୟ ଗୋଲକ ଉଲ୍‌କା ନୁହେଁ । ନିଶ୍ଚୟ ଗନ୍ କ୍ଲବ ନିକ୍ଷେପ କରିଥିବା ଗୋଲ । ସୁତରାଂ ଏହି ସାହସୀ ଗୋଲ-ଯାତ୍ରୀମାନଙ୍କ ଜୀବନ ବିଷୟରେ କେବଳ ଆଲୋଚନା ହେଲା । କିଏ କହିଲା ସେମାନେ ମରି ଯାଇଛନ୍ତି; କିଏ କହିଲା ସେମାନେ ବଞ୍ଚିଛନ୍ତି । କାରଣ ଏଠାରେ ପାଣିର ଗଭୀରତା ବହୁତ । ଗୋଲ ପତନର ବେଗ ଏଠାରେ ନିଶ୍ଚୟ କମି ଯାଇଥିବ । ଆଉଜଣେ କହିଲା, "ସେମାନେ ପବନ ପାଇବେ ନାହିଁ । ଉଜ୍ଜ୍ୱଳ ହୋଇ ମରିଯିବେ ।" ଅପର ଜଣେ କହିଲା, "ସେମାନେ ମରିଥାନ୍ତୁ ବା ବଞ୍ଚିଥାନ୍ତୁ, ନିଶ୍ଚୟ ଗୋଲକୁ ବାହାର କରିବାକୁ ହେବ ।"

ଏମଧ୍ୟରେ କାପ୍ତାନ୍ ବ୍ଲମ୍‌ସ୍‌ବେରି ସବୁ ଅଫିସର ଓ ନାବିକ-ମାନଙ୍କୁ ଏକତ୍ର କରି ଗୋଟାଏ ମିଳିତ ଆଲୋଚନା କଲେ । ତଥାପି ହେଲା, ଅବିଳମ୍ବେ କିଛି ଗୋଟାଏ କରିବାକୁ ହେବ । ସର୍ବପ୍ରଥମ କାର୍ଯ୍ୟ ହେଉଛି ଗୋଲକୁ ହଠାତ୍ ଉତ୍ତୋଳନ କରିବା । ତାହା ଅତି କଠିନ କାମ

ହେଲେହେଁ ଅସମ୍ଭବ ନୁହେଁ । ତେବେ ଏ ଜାହାଜରେ ଶକ୍ତିଶାଳୀ ଉତ୍ତୋଳନ ଯନ୍ତ୍ର ନାହିଁ । ତେଣୁ ଜାହାଜକୁ ଅବିଳମ୍ବେ ନିକଟବର୍ତ୍ତୀ ବନ୍ଦରକୁ ପଠାଇବାକୁ ହେବ ଏବଂ ଗନ୍ କ୍ଲବକୁ ଏ ସମ୍ବାଦ ଜଣାଇବାକୁ ହେବ । ଏ ବିଷୟର ଠିକ୍ ହେବା ପରେ କାପ୍ତାନ୍ ପତନ ସ୍ଥାନରେ ଗୋଟାଏ ନଙ୍ଗର ପକାଇ ତହିଁରେ ଗୋଟିଏ ପତାକା ବାନ୍ଧି-ଦେଲେ ଏବଂ ନିକଟବର୍ତ୍ତୀ ବନ୍ଦର ସାନ୍‌ଫ୍ରାନସିସ୍‌କୋ ଅଭିମୁଖେ ଖୁବ ଜୋରରେ ଜାହାଜ ଛାଡ଼ିବାକୁ ଆଦେଶ ଦେଲେ । ଜାହାଜ ଯାତ୍ରା ସମୟରେ ଯାଉଥିଲା ।

ସପ୍ତହାନା ଜଳ ଗୋଟାଏ ଅତିଦ୍ରୁତଗାମୀ ଜାହାଜ ପକ୍ଷରେ ଛଅ ଶହ ମାଇଲ୍ ଦୂରବର୍ତ୍ତୀ ସାନ୍‌ଫ୍ରାନସିସ୍କୋ ପର୍ଯ୍ୟନ୍ତ ଏତେ ଦୂର ପଥ କମ ସମୟ ଭିତରେ ଯାତ୍ରା କରିବା କିଛି ବଡ଼ କଥା ନୁହେଁ । ତାକୁ ସମୁଦାୟ ଛବିଶ ଘଣ୍ଟା ଲାଗିଲା । ସେ ଡିସେମ୍ବର ତା ୧୪ ଘ ୧-୨୭ ମିଃ ସମୟରେ ଫ୍ରିସ୍କୋରେ ପହଞ୍ଚିଲା । ଅପ୍ରତ୍ୟାଶିତ ଭାବରେ ଏପରି ଗୋଟାଏ ଯୁଦ୍ଧ ଜାହାଜ ସେଠାରେ ପହଞ୍ଚିବା ଦେଖି ଲୋକଙ୍କର କୌତୂହଳ ବୃଦ୍ଧି ପାଇଲା । ଲୋକେ କୂଳରେ ଠିଆ ହୋଇ ଜାହାଜର ଲୋକଙ୍କୁ ଅପେକ୍ଷା କଲେ । କାପ୍ତାନ୍ ଓ ତାଙ୍କ ସହକାରୀ ଗୋଟିଏ ଛୋଟ ବୋଟ୍‌ରେ ଆସି କୂଳରେ ପହଞ୍ଚିଲେ ।

ସେମାନେ କୂଳରେ ପହଞ୍ଚିବା ମାତ୍ରକେ ଜନତା ହଜାର ହଜାର ପ୍ରଶ୍ନ ତାଙ୍କ ଉପରେ ଅଜାଡ଼ିଲେ । ମାତ୍ର ସେ କୌଣସି ପ୍ରଶ୍ନର ଉତ୍ତର ନ ଦେଇ ଟେଲିଗ୍ରାଫ୍ ଅଫିସ ଖୋଜି ସେହି ଆଡ଼େ ଦୌଡ଼ିଲେ । ଜନତା ତାଙ୍କୁ ପଥ ଛାଡ଼ିଲେ ନାହିଁ । ଖବର ନ ଜାଣିବା ପର୍ଯ୍ୟନ୍ତ ସମସ୍ତଙ୍କର ଉଦ୍‌ବେଗ ଲାଗି ରହିଲା । କାପ୍ତାନ୍ ଟେଲିଗ୍ରାମ୍

ଅଫିସରେ ପହଞ୍ଚି ସଙ୍ଗେ ସଙ୍ଗେ ଡଳଲିଖିତ ଟେଲିଗ୍ରାମ ଗୁଡ଼ିକ ସ୍ଥାନକୁ ପଠାଇଲେ ।

୧ମ, ନୌ ବିଭାଗର ସେକ୍ରେଟାରୀ, ଓ୍ୟାଶିଂଟନ୍ ।

୨ୟ, ଭାଇସ୍ ପ୍ରେସିଡେଣ୍ଟ; ଗନ୍‌କ୍ଲବ, ବାଲ୍‌ଟିମୋର ।

୩ୟ, ଅନରେବଲ୍ ଜେ. ଟି. ମାଷ୍ଟନ୍, ଲଂସ୍ ପୀକ୍, ରକି ପର୍ବତମାଳା ।

୪ର୍ଥ, ସବ୍‌ଡିରେକ୍‌ଟର, କେମ୍ବ୍ରିଜ୍ ଅବ୍‌ଜରଭେଟରୀ, ମାଶାଚୁସେଟସ୍ ।

ଟେଲିଗ୍ରାମ୍—

"କଲମ୍ବିଅଡ୍‌ର ଗୋଲା ଡିସେମ୍ବର ତା ୧୨ ରାତ ଘ୧-୧୭ ମିନିଟ ସମୟରେ ପ୍ରଶାନ୍ତ ମହାସାଗର ଭିତରେ ୨୦ ଅକ୍ଷାଂଶ ଓ ୪୧ ଦ୍ରାଘିମା ମଧ୍ୟରେ ପଡ଼ିଛି । ଉପଦେଶ ପଠାନ୍ତୁ ।

ବ୍ରୁମ୍‌ସବେରୀ

କମାଣ୍ଡର, ସସ୍କିହାନା ।"

ସମଗ୍ର ଫ୍ରିସ୍କୋ ସହର ପାଞ୍ଚ ମିନିଟ ଭିତରେ ଏ ଖବର ଜାଣିଗଲା । ଯୁକ୍ତରାଷ୍ଟ୍ରର ସମସ୍ତ ରାଜ୍ୟ ସନ୍ଧ୍ୟା ୬ଟା ପୂର୍ବରୁ ଏହି ଘୋର ବିପଦ କଥା ଅବଗତ ହୋଇଗଲେ । ଅତେବେଳାର ଏହି ସାହସିକ କାର୍ଯ୍ୟର ସମ୍ବାଦ ରାତ ଅଧ ମଧ୍ୟରେ କେବଲ୍ ସାହାଯ୍ୟରେ ସାରା ଇଉରୋପରେ ବ୍ୟାପିଗଲା । ଏପରି ଅପ୍ରତ୍ୟାଶିତ ସମ୍ବାଦରେ ପୃଥିବୀରେ କି ପ୍ରତିକ୍ରିୟା ହେଲା, ତାହା ବର୍ଣ୍ଣନା କରିବା ଅସମ୍ଭବ ।

ନୌ ବିଭାଗର ସେକ୍ରେଟାରୀ କମାଣ୍ଡରଙ୍କୁ ସଙ୍ଗେ ସଙ୍ଗେ ଟେଲିଗ୍ରାମ୍ ଦ୍ୱାରା ଜଣାଇ ଦେଲେ ଯେ, ଜାହାଜର ଇଞ୍ଜିନ ବସାବର ଚାଲୁରଖି ଓ ଫ୍ରିସ୍କୋ ଉପସାଗରରେ ଅପେକ୍ଷା କରି ରହ । କି ଦିନ କି ରାତି ଯେ କୌଣସି ମୁହୂର୍ତ୍ତରେ ଜାହାଜ ଯାତ୍ରା କରିବ ।

ଗନ୍‌କ୍ଲବରେ ଏ ଟେଲିଗ୍ରାମ ପହଞ୍ଚିଲା ମାତ୍ରକେ ଗୋଟାଏ ବୋମା ବିସ୍ଫୋରଣ ହେଲାପରି ଲାଗିଲା । ସମସ୍ତ ଯାନ୍ତ୍ରିକ ହଠାତ୍ ଏକତ୍ର ହୋଇଗଲେ । ଏହାର ଅବ୍ୟବହିତ ପୂର୍ବରୁ ଲଙ୍‌ସ୍‌ପୀକ୍‌ରୁ ଟେଲିଗ୍ରାମ୍ ଆସିଥିଲା ଯେ ଗୋଲା ଦେଖାଯାଉଛି ଓ ତାହା ଚନ୍ଦ୍ରର ପୃଷ୍ଠପଟେ ଘୂରୁଛି । ହଠାତ୍ ବ୍ଲମ୍‌ସବେରୀଙ୍କ ଏହି ଟେଲିଗ୍ରାମ୍‌ରେ ସମସ୍ତେ ବିସ୍ମିତ ହୋଇଗଲେ । କେତେକ ଏ ଘଟଣାକୁ ସତ୍ୟ କଲେ; କେତେକ ମଧ୍ୟ ଅବିଶ୍ୱାସ କଲେ । ଅନେକେ ଭାବିଲେ, ଗୋଟାଏ ଉଲ୍‌କାପାତକୁ ସମ୍ଭିହାନା ଦଳ ଭୁଲ୍‌ରେ ଗୋଲା ବୋଲି ଭାବିଛନ୍ତି । ଯାହାହେଉ ଏ ବିଷୟରେ କିଛି କରିବାକୁ ହେବ ବୋଲି ସ୍ଥିର କରି ସେମାନେ ଦୁଇଜଣ ମେମ୍ବରଙ୍କୁ ଅବିଳମ୍ବେ ଫ୍ରିସ୍କୋ ପଠାଇ ଦେଲେ ଏବଂ ସେମାନଙ୍କୁ ଉପଦେଶ ଦେଇଥିଲେ ଯେ; ସେମାନେ ଗୋଲା ଉଦ୍ଧାର କରିବାକୁ ଅବିଳମ୍ବେ ସମସ୍ତ ଆୟୋଜନ କରିବେ ।

ସେମାନେ ସେହି ମୁହୂର୍ତ୍ତରେ ଯାତ୍ରା କଲେ । ବାଲ୍‌ଟିମୋର ଠାରୁ ଫ୍ରିସ୍କୋ ପର୍ଯ୍ୟନ୍ତ ଯେତେ ରେଳ ଲାଇନ ଯାଇଛି, ସବୁଆଡ଼େ ସେମାନଙ୍କ ପାଇଁ ସ୍ପେଶାଲ ଟ୍ରେନ୍‌ର ବ୍ୟବସ୍ଥା ହେଲା ।

ଏଣେ ଜେ. ଟି. ମାଷ୍ଟନ୍ ଓ ବେଲ୍‌ଫାଷ୍ଟ ଲଙ୍‌ସ୍-ପୀକ୍‌ରେ ସ୍ଥାପିତ ବିରାଟ ବିଖ୍ୟାତ ଦୂରବୀକ୍ଷଣ ଯନ୍ତ୍ର ନିକଟରେ ଅବସ୍ଥିତ ରହି

ସେମାନଙ୍କ ବନ୍ଧୁଙ୍କୁ ବହି ନେଇଥିବା ଗୋଲକୁ ବରାବର ଦେଖିବାରେ ନିବିଷ୍ଟ ହେଲେ । ଠା ୧ ଘନ ଗୋଲ ନିକ୍ଷିପ୍ତ ହେଲେ ମଧ୍ୟ ଠା ୧୧ ପର୍ଯ୍ୟନ୍ତ ଚାରିଆଡ଼େ ମେଘ ଢାଙ୍କି ରହିଥିବାରୁ ସେମାନେ କିଛି ଦେଖି ପାରିଲେ ନାହିଁ । ଠା ୧୧ ରାତିକୁ ମେଘ ଟିକିଏ ଘୁଞ୍ଚି ଯିବାରୁ ସେମାନେ ଦେଖିଲେ ଯେ, ଗୋଲ ଚନ୍ଦ୍ରରେ ନ ପଡ଼ି ତାକୁ ସମାନ୍ତର କରି ଘୂରୁଛି । ସେମାନେ ସେହି ଅନୁସାରେ ଟେଲିଗ୍ରାମ କରି ଦୁନିଆଁକୁ ଜଣାଇ ଦେଇଥିଲେ ।

ତା' ପରେ ଗୋଲ ଚନ୍ଦ୍ରର ଅଦୃଶ୍ୟ ମଣ୍ଡଳରେ କୁଆଡ଼େ ଉଭେଇ ଯିବାରୁ ସେମାନେ ତାକୁ ଦେଖି ନ ପାରି ହତାଶ ହୋଇ ପଡ଼ିଥିଲେ । ସେମାନେ ପୁଣି ଗୋଲକୁ ଦେଖିବେ ବୋଲି ସତୃଷ୍ଣ ହୋଇ ଚାହିଁ ରହିଥିଲେ । ସେମାନେ ଯେତେ ଚେଷ୍ଟା କଲେ, ଆଉ ଗୋଲକୁ ଦେଖି ପାରିଲେ ନାହିଁ । ସେ ଦୁହିଙ୍କ ଭିତରେ ଖୁବ ବାଦ-ବିସମ୍ବାଦ ଘଟିଲା । ବେଲଫାଷ୍ଟ ଦୃଢ଼ ରୂପେ କହିଲେ ଯେ, ଆଉ ଗୋଲ ମୋଟେ ଦେଖାଯିବ ନାହିଁ । ତାହା ଅନନ୍ତ ଶୂନ୍ୟରେ ଚିରକାଳ ପାଇଁ ଉଭେଇ ଯାଇଛି । ମାତ୍ର ମାଷ୍ଟନ ତାହା ବିଶ୍ୱାସ କରିବାକୁ ନାରାଜ । ସେ ଖୁବ ଜୋରରେ ମତ ଦେଲେ ଯେ, ସେମାନେ ନିଶ୍ଚୟ ଗୋଲକୁ ଦେଖିବେ । ଏଣୁ ଉଭୟଙ୍କ ଭିତରେ ଟିକିଏ ରାଗାରାଗି ଓ ମୁଠା ଟେକାଟେକି ପର୍ଯ୍ୟନ୍ତ ଉଠିଥିଲା । ଯଦି ଠା ୧୪ ଓ ଠା ୧୫ ମଧ୍ୟବର୍ତ୍ତୀ ରାତିରେ ବ୍ଲୁମସ୍‌ବେରୀଙ୍କ ଟେଲିଗ୍ରାମ୍ ଆସି ବେଲଫାଷ୍ଟଙ୍କ ହାତରେ ପଡ଼ି ନ ଥାନ୍ତା, ତେବେ ସେ ମୁଠା ଧନେ ଅବଶ୍ୟ ତାହା ଉପରେ ପଡ଼ିଥାନ୍ତା ।

ବନ୍ଧୁଦ୍ୱୟ ଟେଲିଗ୍ରାମ୍ ପାଇ ଚମକି ପଡ଼ିଲେ । ଘୋର ଉତ୍ତେଜନାରେ ମାଷ୍ଟନ୍ ଗୋଟାଏ ତରଫକୁ ଅଜଣା ଯିବାରେ

ତଳେ ପଡ଼ିଗଲେ । ଯଦି ଡଲ ସ୍ଥାନରେ କେତେକ ଲୁଗାପଟା ଓ ଶେଯ ଅଗରୁ ସୌଭାଗ୍ୟକୁ ନ ଥାନ୍ତା, ତେବେ ମାଷ୍ଟ୍ରନ୍ ସାହେବ ୨୦ ଫୁଟ୍ ଉଚ୍ଚରୁ ପଡ଼ିବା ଫଳରେ ଖତମ ପାଇ ଯାଇଥାନ୍ତେ । ମାତ୍ର ତାଙ୍କର କିଛି ହୋଇ ନ ଥିଲା । ବେଲଫାଷ୍ଟ୍ ତାଙ୍କୁ ଯନ୍ତ୍ରବଳରେ ତଳୁ ଉପରକୁ ଉଠାଇ ନେଇଗଲେ ।

ଗୋଲା ପ୍ରଶାନ୍ତ ମହାସାଗର ଭିତରେ ପଡ଼ିଥିବା ସମ୍ବାଦ ଟେଲିଗ୍ରାମରୁ ପାଇ ସେମାନେ ପନ୍ଦର ମିନିଟ୍ ଭିତରେ ରକି ପର୍ବତମାଳା ଛାଡ଼ିଲେ ଏବଂ ଦ୍ରୁତଗାମୀ ଯାନ ଓ ସ୍ପେଶାଲ ଟ୍ରେନ ଆଶ୍ରୟରେ ସେ ଦୁହେଁ ଅସି ଦୁଇ ଦିନରେ ଫ୍ରିସ୍କୋ ସହରରେ ପହଞ୍ଚିଲେ । ଠିକ୍ ସେତିକିବେଳେ ଗନ୍ କ୍ଲବର ମେମ୍ବର ଦ୍ୱୟ ମଧ୍ୟ ପହଞ୍ଚିଲେ ।

ସେମାନେ ଦେଖାଦେବା ମାତ୍ରକେ ବ୍ରମସବେରୀ ଓ ତାଙ୍କ ସହକାରୀମାନେ ତାଙ୍କ ପାଖକୁ ଦୌଡ଼ିଯାଇ ଅଭିବାଦନ କଲେ ଏବଂ ଉପସ୍ଥିତ ଅବସ୍ଥାରେ କ'ଣ କରାଯିବ ବୋଲି ପଚାରିଲେ । ଜେ. ଟି. ମାଷ୍ଟ୍ରନ କହିଲେ, "ଯେତେ ଶୀଘ୍ର ସମ୍ଭବ ଗୋଲାକୁ ଉପରକୁ ଉଠାଇବାକୁ ହେବ ।"

ଯେଉଁ ସ୍ଥାନରେ ଗୋଲା ପାଣିରେ ପଡ଼ିଥିଲା, ସେ ସ୍ଥାନ ଭୁଲ ହୋଇଯିବାର କୌଣସି ଉପାୟ ନାହିଁ । ମାତ୍ର ଅସୁବିଧା କେବଳ ଉତ୍ତୋଳନ ଯନ୍ତ୍ରନେଇ । ସେପରି ଗୋଟାଏ ପ୍ରକାଣ୍ଡ ଗୋଲାକୁ ଉତ୍ତୋଳନ କରିବାଭଳି ଯନ୍ତ୍ର ସେଠାରେ ସମସ୍ତେ କଳ୍ପନା କରିବାରେ ଲାଗିଲେ । ଇଞ୍ଜିନିୟର ମର୍ଚିଶନ୍‌ଙ୍କୁ ସଙ୍ଗେ ସଙ୍ଗେ ଟେଲିଗ୍ରାମ୍ କରି ଅଣାହେଲା । ସେ ଆସିବାରୁ ଉତ୍ତୋଳନ ଯନ୍ତ୍ର

ଭଅର କାମ ଖୁବ୍ ଜୋରରେ ଚାଲିଲା ଏବଂ ଶେଷ ହେଉ ହେଉ ପାଞ୍ଚଦିନ ଲାଗିଗଲା ।

ଏତେ ଦୀର୍ଘ ବିଳମ୍ବ ପାଇଁ ମାଷ୍ଟନଙ୍କର ଧୈର୍ଯ୍ୟ ଆଉ ନ ଥିଲା । ଅବିଳମ୍ବେ ତାଙ୍କ ସାଥୀମାନଙ୍କୁ ସେ କର୍ମୀମାନଙ୍କୁ ଉତ୍ସାହ ଓ ଉତ୍ସାହ- ରେ ପୋତ ପକାଉଥିଲେ । ଦିନରାତି ଭିତରେ ଦଣ୍ଡେ ସୁଦ୍ଧା ତାଙ୍କରେ ବିରାମ ନ ଥିଲା । ଯାତ୍ରୀମାନେ ଅଦ୍ୟ ଜୀବନରେ ନାହାନ୍ତି ବୋଲି କେହି କହିଲେ ତାଙ୍କ ଅସନ୍ତୋଷର ସୀମା ଆଉ ନ ଥିଲା । ତାଙ୍କର ଦୃଢ଼ଧାରଣା, ଯାତ୍ରୀମାନେ ଏତେ କ୍ଷୁଦ୍ରବୁଦ୍ଧି ଲୋକ ନୁହନ୍ତିଯେ, ମୃତ୍ୟୁ ସହଜରେ ସେମାନଙ୍କୁ ଗ୍ରାସିପିବ । ସେମାନେ ବଞ୍ଚିବାର ସମସ୍ତ ଚେଷ୍ଟା ପ୍ରୟୋଗ କରି ସାରି ଯେବେ ବିଫଳ ହେବେ, ତେବେ ଯାଇ ମୃତ୍ୟୁବରଣ କରିବେ । ସେମାନଙ୍କ ନିକଟରେ ଖାଦ୍ୟ ଓ ଜଳ ଯଥେଷ୍ଟ ଥିଲା । ମାଷ୍ଟନ୍ ସେଥିପାଇଁ ବ୍ୟସ୍ତ ହୋଇ ନ ଥିଲେ । ମାତ୍ର ନିଶ୍ୱାସଗ୍ରହଣ ଯୋଗ୍ୟ ପବନ ସରିଗଲେ ସେମାନେ କଅଣ କରିବେ, ଏଥିପାଇଁ ସେ ବ୍ୟସ୍ତ ହେଉଥିଲେ । ଏଣୁ ବିଳମ୍ବହେଲେ ତାଙ୍କ ଧୈର୍ଯ୍ୟ ସୀମାଟପି ଯାଉଥିଲା । ଏ ପାଞ୍ଚଦିନ ମଧ୍ୟରେ ଖାନାପିନା ଓ ଶୟନ ସେ ଏକରକମ ଛାଡ଼ି ଦେଇଥିଲେ ।

ଯାହାହେଉ ଶେଷରେ ଉତ୍ତୋଳନ ଯନ୍ତ୍ର ଭଅର କାମ ସରିଗଲା । ତାହା ସେମାନେ ନେଇ ସୁସ୍କ୍ୱାହାନାରେ ବୋଝେଇ କରିଦେଲେ । ଜାହାଜ ଡିସେମ୍ବର ତା ୨୧ରିଖ ରାତି ଆଠଟା ସମୟରେ ମାଷ୍ଟନ୍, ମର୍ଚ୍ଚିଶନ୍, ଗନ୍‌କ୍ଲବର ମେମ୍ବରବୃନ୍ଦ ଓ ଅନ୍ୟ କର୍ମୀମାନଙ୍କୁ ଧରି ଯାତ୍ରାକଲା । ଲୋକେ କୂଳରେ ଥାଇ ଜାହାଜକୁ ଅଭିବାଦନ କରି ଶୁଭକାମନା କଲେ ଓ ଘନ ଘନ ହୁରି ରେ ଧ୍ୱନିରେ ଦିଗ ଦିଗନ୍ତ କମ୍ପାଇଦେଲେ ।

ଜାହାଜ ଭସ୍‌ଭସ୍ ଧୂମ ଉଦ୍‌ଗୀରଣ କରି ସାଗର ବକ୍ଷକୁ କାଟି ପଶ୍ଚିମପରି ଛୁଟିଗଲା । ସେମାନେ ଯାତ୍ରୀମାନଙ୍କ ଜୀବନ ବାବଦରେ, ଗୋଲର ନିରାପଦତା ବିଷୟରେ ନାନାବିଧ ସପକ୍ଷ ବିପକ୍ଷ ମତ ଦେଇ ଦେଇ ଜାହାଜ ତା ୨୩ ରାତ୍ରି ୮ଟା ସମୟରେ ଲକ୍ଷ୍ୟ-ସ୍ଥଳରେ ପହଞ୍ଚିଲା । ମାତ୍ର ସେମାନେ ଯେତେ ଖୋଜିଲେ, ଆଉ ସଙ୍କେତଚିହ୍ନ ପାଇଲେ ନାହିଁ । ଏଥିପାଇଁ ବହୁତ ଉଦ୍‌ବେଗ ଘଟିଲା, ବମସବେଷ୍ଟ କମାଣ୍ଡରେ ଘନ ଘନ ମାପଜରି ଉଗ ଟିକ୍ କଲେ ଏବଂ ଜାହାଜ ଚଳାଇବାରେ ମାଇଲ୍‌ଏ ଦୂରରେ ରାତ୍ରି ଘ୧୨-୪୭ ମି: ରେ ସଙ୍କେତ ପାଇଲେ । ତାହା ଅସ୍ପଷ୍ଟ ଭାବରେ ଜଳରେ ଭାସି ରହିଥିଲା ।

ସେଠାରେ ଜାହାଜକୁ ନଙ୍ଗର କରି ରଖାଗଲା । ଉତ୍ତୋଳନ ଯନ୍ତ୍ର ଅବଲମ୍ବେ ପାଣି ଭିତରକୁ ନିକ୍ଷେପ କରିବାକୁ ମାଷ୍ଟନ୍ ଆଦେଶ ଦେଲେ । ସଙ୍ଗେ ସଙ୍ଗେ ସେ, ଇଞ୍ଜିନିଅର ମର୍ଚିଶନ୍ ଓ ଗନ୍‌କ୍ଲବର ଜଣେ ମେମ୍ବର ସେହି ଯନ୍ତ୍ର ଭିତରେ ବନ୍ଦହୋଇ ରହିଲେ ସେମାନେ ଗଭୀର ଜଳ ଭିତରକୁ ଯାଇ ଗୋଲକୁ ଖୋଜିବେ ଏବଂ ସୁବିଧା ହେଲେ ବନ୍ଧୁମାନଙ୍କ ସଙ୍ଗେ ଭାବ ଆଦାନପ୍ରଦାନ କରିବେ । ସବୁ ଠିକ୍‌ଠାକ୍ ହୋଇଯିବାପରେ ଯନ୍ତ୍ର ଘ୧-୨୫ ମି: ସମୟରେ ପାଣି ଭିତରେ ପଶିଲା ଓ କ୍ରମେ କ୍ରମେ ଅଦୃଶ୍ୟ ହୋଇଗଲା ।

ପଟଉନ ଉପରେ ଥିବା ଅଫିସର ଓ ନାବିକମାନେ ଗୋଲ ଭିତରେ ବନ୍ଦୀଥିବା ତିନିବ୍ୟକ୍ତି ଓ ଯନ୍ତ୍ର ଭିତରେ ବନ୍ଦୀଥିବା ତିନି-ବ୍ୟକ୍ତିଙ୍କ ସମ୍ବନ୍ଧରେ ନାନାଦି କଳ୍ପନା କରୁଥିଲେ । ମାତ୍ର ଯନ୍ତ୍ର ବନ୍ଦୀମାନେ ନିଜ ବିଷୟ ଏକବାରେ ଭୁଲିଯାଇ କାଚ ଗବାକ୍ଷଦ୍ୱାରା ବିରାଟ ଜଳରାଶି ଓ ତା'ର ବିଭିନ୍ନସ୍ତରକୁ ଲକ୍ଷ୍ୟ କରୁଥିଲେ ।

ସେମାନେ ଖୁବ୍ ଶୀଘ୍ର ଶୀଘ୍ର ତଳକୁ ଖସିଗଲେ ଏବଂ ୪୨-୧୭ ମି: ସମୟରେ ତଳେ ଲାଗିଲେ । ସେଠାରେ ସେମାନେ ଯୁଆଡ଼କୁ ଚାହିଁଲେ, ସେଆଡ଼ ଖାଲି ମରୁଭୂମି । ଗୋଟାଏ ହେଲେ ସାମୁଦ୍ରିକ ଗଛ ବା ଶୈବାଳ ସେମାନଙ୍କ ଆଖିରେ ପଡ଼ିଲାନାହିଁ । ସେମାନେ ଯନ୍ତ୍ରବଳରେ ଆଲୋକ ପକାଇ ଚାରିଆଡେ ଦୂରକୁ ଚାହିଁଲେ । ମାତ୍ର ସେହି ଘନାନ୍ଧକାର ମଧ୍ୟରେ ଗୋଲାର ସଙ୍କେତ କେଉଁଆଡ଼େ ପାଇଲେ ନାହିଁ । ତାପରେ ସେମାନେ ଉପରକୁ ସଙ୍କେତ କରିବାରୁ ଅଧ୍ୟକ୍ଷ ସେ ଯନ୍ତ୍ରକୁ ଆଉ ମାଇଲିଏ ଦୂରକୁ ହଟାଇ ନେଲେ । ବୁଡ଼ାଳୀମାନେ ସେ ଅଞ୍ଚଳ ମଧ୍ୟ ଖୁବ୍ ନିରୀକ୍ଷଣ କରି ଦେଖିଲେ । କେଉଁଠାରେ ଗୋଟାଏ ଛୋଟ ପାହାଡ଼, କେଉଁଠାରେ ଗୋଟାଏ ଦୁମ, କେଉଁଠାରେ ସମତଳ ପଡ଼ିଆ ଦେଖାଗଲା । ମାତ୍ର ଗୋଲା ଆଉ ଆଖିରେ ପଡ଼ିଲା ନାହିଁ । ଏପରି ଭାବରେ ସେମାନେ ଏଠା ସେଠା ଅନେକ ଖୋଜିଲେ । ମାତ୍ର ହତାଶା ଛଡ଼ା ଆଉ କିଛି ପାଇଲେ ନାହିଁ । ଏଣେ ସଙ୍ଗରେ ଥିବା ପବନ ସରିଯିବାରୁ ସେମାନେ ସଙ୍କେତ କରନ୍ତେ ଉପରୁ ଯନ୍ତ୍ରକୁ ଟାଣି ନିଆଗଲା ।

ବୁଡ଼ାଳୀମାନେ ପୁଣି ଯନ୍ତ୍ରଭିତରେ ପଶି ପାଣିରେ ବୁଡ଼ିଲେ ଓ ସେହିପରି ଚାରିଆଡ଼ ଅନୁସନ୍ଧାନ କଲେ । ମାତ୍ର ଦିନଯାକର ଅକ୍ଲାନ୍ତ ପରିଶ୍ରମର କୌଣସି ଫଳ ହେଲାନାହିଁ । ତା୨୫ ଓ ତା୨୬ ଦୁଇଦିନ ମଧ୍ୟ ସେହିପରି ନିଷ୍ଫଳ ଚେଷ୍ଟା ହେଲା । ଏ ଅବସ୍ଥାରେ ହୃଦୟ ଭାଙ୍ଗିପଡ଼ିବାର କଥା । ଗୋଲା ଯାତ୍ରୀମାନେ ସେପର୍ଯ୍ୟନ୍ତ ଛବିଶ ଦିନ ଧରି ଗୋଲାଭିତରେ ଅବଦ୍ଧ ହୋଇଥିଲେ । ଗୋଲା ପତନର ଧକ୍କାରେ ଯଦି ସେମାନେ ମରି ନ ଥିବେ, ତେବେ ଏଣିକି ସେମାନଙ୍କର ନିଶ୍ୱାସ ରୁଦ୍ଧହୋଇଯିବାର କଥା । ତାହେଲେ ଏଣିକି

ତାଙ୍କର ବୁଦ୍ଧିବୃତ୍ତିସବୁ ଲୋପପାଇଯିବ ଏବଂ ଆତ୍ମରକ୍ଷାର ଶକ୍ତି ଆଉ ଜାଗ୍ରତ ହୋଇ ପାରିବ ନାହିଁ ।

ତା ୨୮ ଦିନ ସେମାନଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା । ଏ ବିଶାଳ ଜଳରାଶି ଭିତରୁ ଗୋଲକୁ ଉଦ୍ଧାର କରିବା ପାଗଳର କଳ୍ପନା ଛଡ଼ା ଆଉକିଛି ନୁହେ । ମାତ୍ର ମାଷ୍ଟନ୍ ଆଶା ହରାଇ ପାରୁ ନ ଥିଲେ । ସେ ତାଙ୍କ ବନ୍ଧୁମାନଙ୍କ କବର ସୁଦ୍ଧା ଦେଖିବାକୁ କାମନା କରୁଥିଲେ । ତେଣୁ ସେ ସେହି ଅଞ୍ଚଳରେ ଅପେକ୍ଷା କରିବାକୁ କଳ୍ପନାକଲେ । ଅନ୍ୟମାନେ ତାଙ୍କ ପ୍ରସ୍ତାବରେ ଏକମତ ହେଲେନାହିଁ । ମାତ୍ର କାପ୍ତାନ୍ ତାଙ୍କର ଏ ଜିଦ୍ ଦେଖି ବିରକ୍ତହୋଇ ଜାହାଜ ଛାଡ଼ିବାକୁ ଆଦେଶ ଦେଲେ । ତେଣୁ ସସ୍କିହାନା ତା ୨୯ ଦିନ ଫ୍ରିସ୍କୋ ଅଭିମୁଖେ ଯାତ୍ରାକଲା ।

ସେ ଦିନର ସକାଳ ୧୦ଟା । ମାସ୍ତୁଲ୍ ଦଣ୍ଡଉପରେ ଅବସ୍ଥିତ ରହି ଦୂରଅଡ଼କୁ ଲକ୍ଷ୍ୟ କରୁଥିବା ନାବିକ ପାଟିକରି କହିଲା, "ହେଇ ସେଠାରେ ଗୋଟାଏ ନଙ୍ଗର କରା ହୁଣ୍ଡା (Buoy) ଭାସୁଛି ।" ତା ସଙ୍କେତ ଅନୁସାରେ ଜଣେ ଅଫିସର ଦୂରବୀକ୍ଷଣ ସାହାଯ୍ୟରେ ତାହା ଲକ୍ଷ୍ୟ କଲା । ତାହା ଠିକ୍ ଗୋଟାଏ ନଙ୍ଗର ହୁଣ୍ଡାପରି ଦିଶୁ ନ ଥିଲା । ତା ଉପରେ ଛଅଫୁଟ ଉଚ୍ଚରେ ଗୋଟାଏ ପତାକା ଉଡ଼ୁଥିଲା । ତାର ଯେଉଁ ଅଂଶ ପାଣିଉପରେ ଥିଲା, ତାହା ସୂର୍ଯ୍ୟ କିରଣ ପଡ଼ି ଖୁବ୍ ଚକ୍ ଚକ୍ କରୁଥିଲା ଏବଂ ରୁପାରେ ତିଆରି ଗୋଟାଏ ସୁନ୍ଦର ପଦାର୍ଥପରି ଦେଖାଯାଉଥିଲା ।

କମାଣ୍ଡର, ମାଷ୍ଟନ୍ ଓ ଅନ୍ୟମାନେ ନୀରବରେ ଅଥଚ ଘୋର ଉଦ୍‌ବେଗର ସହିତ ସେ ଅପୂର୍ବ ପଦାର୍ଥକୁ ଚାହିଁ

ଦେଖୁଥିଲେ । କେହି ଗୋଟାଏ ବାକ୍ୟସୁଦ୍ଧା ଉଚ୍ଚାରଣ କରିବାକୁ ସାହସ କରୁ ନ ଥିଲେ । ଜାହାଜ ସେ ପଦାର୍ଥର ୮୦୦ ହାତ ଦୂରରେ ପହଞ୍ଚିବାରେ ଦେଖାଗଲା, ତହିଁ ଉପରେ ଯେଉଁ ପତାକା ଉଡୁଥିଲା, ତାହା ଆମେରିକାର ଜାତୀୟ ପତାକା ।

ଏ ସମୟରେ ଗୋଟାଏ ଗର୍ଜନ ଶୁଭିଲା । ମାଷ୍ଟନ୍ ଅଜ୍ଞାନହୋଇ ତଳେ ପଡ଼ିଗଲେ । କେତେକ ସମୟପରେ ତାଙ୍କୁ ସଚେତ କରିବାରେ ସେ କହିପକେଇଲେ, "ଅରେ ବୋକା ! କେଡ଼େ ଗଧ୍ଧା କେଡ଼େ ବୁଦ୍ଧିହୀନ !"

ମର୍ଚ୍ଚିଶନ୍ ତାଙ୍କୁ ସାଷ୍ଟମକର ପଚାରିଲେ, "ଅନରେବ୍ଲ ସେକ୍ରେଟାରୀ ! ଆପଣ ଏପରି ହେଲେ କାହିଁକି ? କାହାକୁ ବୋକା, ଗଧା ବୋଲି କହୁଛନ୍ତି ?"

ମାଷ୍ଟନ ଉତ୍ତେଜିତ ହୋଇ କହିଲେ, "ମୋତେ । ମୁଁ ଗଧ୍ଧା । ମୋ ମନରେ କଥାଟା ରହିଲା ନାହିଁ । ମୁଁ ଭୁଲିଗଲି । ଗୋଲାଟା ମୋଟେ ୧୯, ୨୫୦ ପାଉଣ୍ଡ ଓଜନ । ଖୁବ୍ ହାଲୁକା । ତେଣୁ ସେ ପାଣିରେ ଭାସୁଛି ।"

କଥାଟା ଯଥାର୍ଥ । ଗୋଲା ହାଲୁକା ଥିବା ଫଳରେ ପାଣିରେ ଖଣ୍ଡେ ବାଃଠ ବୁଡ଼ିଯାଇ ମଧ୍ୟ ହଠାତ୍ ଭାସି ଉଠିଛି ଏବଂ ପବନ ଓ ତରଙ୍ଗର ଦୟା ଉପରେ ନିର୍ଭର କରି ବୁଲୁଛି । ଜାହାଜର ବୋଟ୍-ସବୁ ତଳକୁ ଖସାହେଲା । ମାଷ୍ଟନ୍ ଓ ତାଙ୍କ ବନ୍ଧୁମାନେ ତାଭିତରକୁ ଡେଇଁପଡ଼ିଲେ । ଉତ୍ସାହ ଉନ୍ମାଦନାର ସୀମା ରହିଲା ନାହିଁ । ସମସ୍ତଙ୍କ ଛାତି ଧଡ୍ ଧଡ୍ ପଡ଼ିଲା । ଯାତ୍ରୀମାନଙ୍କୁ କା

ଅବସ୍ଥାରେ ଦେଖାଯିବ ? ମୃତ ନା ଜୀବିତ ? ମାଷ୍ଟନ୍ ପାଟିକରି କହିଲେ, "ନିଶ୍ଚୟ ସେମାନେ ଜୀବିତ । ନୋହିଲେ ପତାକା ଉଡ଼ାନ୍ତା କିଏ ?"

ବୋଟ୍‌ସବୁ ସେଆଡ଼କୁ ଦୌଡ଼ିଲେ । ମାଷ୍ଟନ୍‌ଙ୍କ ବୋଟ୍ ସବା ଆଗରେ । ସେ ଗୋଲାର ଗବାକ୍ଷ ନିକଟରେ ପହଞ୍ଚିବା ମାତ୍ରେ ଶୁଣିଲେ, ଅର୍ଡାନ୍ ପାଟିକରି କହୁଥିଲେ, "ବାର୍ବିକେନ୍, ମୋର ଘୋଡ଼ାରେ କିସ୍ତି ।" ସେତେବେଳେ ସେମାନେ ଚେସ୍‌ଖେଳରେ ନିବିଷ୍ଟଥିଲେ ।

---

—ଉଣିଶ—

## ସମଗ୍ର ଆମେରିକାରେ ଜାତୀୟ ଉତ୍ସବ

ଯେତେବେଳେ ଗୋଲକରୂପ ଯାନରେ ଚଢ଼ି ତିନି ବିଖ୍ୟାତ-ବ୍ୟକ୍ତି ଶୁଭଯାତ୍ରା କଲେ, ସେତେବେଳେ ସେମାନଙ୍କୁ ବିଦାୟ ଦେବାକୁ ଫ୍ଲୋରିଡ଼ାରେ ଯେଉଁ ବିରାଟ ଜନତା ଏକତ୍ର ହୋଇଥିଲା, ତାହା ପୃଥିବୀରେ ଗୋଟାଏ ଅଦ୍ୱିତୀୟ ଘଟଣା । ଏପର୍ଯ୍ୟନ୍ତ କୌଣସି ପୃଥିବୀବାସୀ ମାନବ ଏପରି ଅସୀମ ସାହସିକ କାର୍ଯ୍ୟରେ କେବେ ହାତ ଦେଇ ନ ଥିଲେ, କିମ୍ବା ଏପରି କଳ୍ପନା ସୁଦ୍ଧା ମନରେ ସ୍ଥାନ ଦେଇ ନ ଥିଲେ । ତେଣୁ ବାର୍ବିକେନଙ୍କର ସେ ବିରାଟ କଳ୍ପନା ଲୋକଙ୍କର ଯୁଗପତ୍ ବିସ୍ମୟ ଓ ଆଗ୍ରହ ଜାତ କରାଇଥିଲା । ତେଣୁ ଏତେବଡ଼ ଗୋଟାଏ ଉତ୍ସାହ ଉଦ୍ଦୀପନା ସବୁଆଡ଼େ ଦେଖା ଯାଇଥିଲା । ସେମାନେ ବର୍ତ୍ତମାନ ସେହି ବିସ୍ମୟକର ଅଭିଯାନ ଶେଷକରି ଫେରି

ଆସିବାରୁ ସେହିପରି ଅବସ୍ଥା ଘଟିଗଲା । ସମଗ୍ର ଆମେରିକାରେ ହୁଇଚଇ ପଡିଗଲା । ବାର୍ବିକେନ୍, ନିକୋଲ୍ ଓ ଆର୍ଡାନଙ୍କ ନାମରେ ଗଗନ ପବନ କମ୍ପିଉଠିଲା ।

ଯାତ୍ରୀମାନେ ଗୋଲାଭିତରୁ ଜାହାଜର ପଟାତଳ ଅଡ଼କୁ ଡେଇଁ ଆସିଲେ । ବନ୍ଧୁମାନେ ଯେତେବେଳେ ପରସ୍ପର ମିଳିତ ହେଲେ, ସେତେବେଳେ ଗୋଟାଏ ଶୋକାବହ ଦୃଶ୍ୟ ଘଟିଗଲା । ସମସ୍ତଙ୍କ ଆଖିରେ ଲୁହ, ସମସ୍ତଙ୍କ ଓଷ୍ଠ କମ୍ପିତ । ଏ ଅବସ୍ଥା ଦୁଇତିନି ମିନିଟ୍ ମଧ୍ୟରେ ପରିବର୍ତ୍ତିତ ହୋଇ ନିର୍ମଳ ଶାନ୍ତ ଆନନ୍ଦର ହାଓ୍ୱା ମାଡ଼ିଆସିଲା । ନାନା ହାସ୍ୟ କୌତୁକ, ନାନା ଆମୋଦ ପ୍ରମୋଦ ଓ ଖୁସିବାସି ଗଲ୍ପମଧ୍ୟରେ ଜାହାଜ ଗୋଲକୁ ସଙ୍ଗରେ ଧରି ନିର୍ଦ୍ଦିଷ୍ଟ ସମୟରେ ଫ୍ରିସ୍କୋ ବନ୍ଦରରେ ଆସି ନଙ୍ଗର କଲା ।

ହଜାର ହଜାର ଲୋକ ତୀରରେ ଥାଇ ଜାହାଜ ଆରୋହୀ-ମାନଙ୍କୁ ଆବେଗର ସହିତ ଅପେକ୍ଷା କରୁଥିଲେ । ବାର୍ବିକେନ୍ ଓ ତାଙ୍କ ବନ୍ଧୁମାନେ ମହାଅଭିଯାନ ପରେ ନିରାପଦରେ ଫେରିଛନ୍ତି କି ନା, ତାହା ଜାଣିବାକୁ ଓ ସେମାନଙ୍କୁ ଥରେ ଦେଖିବାକୁ ଅସୀମ ଆଗ୍ରହରେ ଅପେକ୍ଷା କରିଥିଲେ । ଜାହାଜରୁ ଗୋଟାଏ ଉତ୍ସାହପୂର୍ଣ୍ଣ ସଙ୍କେତ ଏ ସମୟରେ ଉପକୂଳ ଅଞ୍ଚଳରେ ଦେଖାଗଲା । ତାହାଦେଖି ସମସ୍ତେ ବୁଝିଲେ ଯେ ଯାତ୍ରୀମାନେ ନିରାପଦରେ ଫେରିଛନ୍ତି । ଜନତା ଆନନ୍ଦରେ ଭାଙ୍ଗିପଡ଼ିଲା । ଜୟ ଜୟ ନାଦ ଓ ବିରାଟ କୋଳାହଳରେ ଦଶଦିଗ କମ୍ପିଗଲା ।

ବାର୍ବିକେନ୍ ବନ୍ଧୁମାନଙ୍କସହ କୂଳରେ ଆସି ପହଞ୍ଚିଲେ ଏବଂ ଜନତାକୁ ଅଭିବାଦନ କରି ରେଲ ଷ୍ଟେସନ ଅଡ଼କୁ ଗଲେ । ସେହି

ମୁହୂର୍ତ୍ତରେ ଏମାନଙ୍କ ପ୍ରତ୍ୟାବର୍ତ୍ତନ ସମ୍ବାଦ ତାରଯୋଗେ ସମଗ୍ର ଆମେରିକାରେ ଘୃଣି ହୋଇପଡ଼ିଲା । ଏ ସମ୍ବାଦ ପୁରପଲ୍ଲୀ ସବୁଆଡ଼େ ମୁହୂର୍ତ୍ତ ମଧ୍ୟରେ ବ୍ୟାପିଗଲା । ଲୋକେ ତାଙ୍କୁ ଦେଖିବାକୁ ଓ ତାଙ୍କଠାରୁ କିଛିକଥା ଶୁଣିବାକୁ ବ୍ୟାକୁଳ ହୋଇ ଉଠିଲେ । କେଉଁ ଆମେରିକାବାସୀ ଏଥିପାଇଁ ଅସ୍ଥିର ନ ହେଲା, ଏପରି ନୁହେଁ । ତେଣୁ ଆମେରିକା ସରକାର ଲୋକଙ୍କର ଏ ଆଗ୍ରହ ରକ୍ଷାକରିବା ଉଦ୍ଦେଶ୍ୟରେ ସମଗ୍ର ଯୁକ୍ତରାଷ୍ଟ୍ରରେ ଯେତେ ରେଲ୍ ଲାଇନ ଅଛି, ତାହାସବୁ ଗୋଟିଏ ଦିନ ପର୍ଯ୍ୟନ୍ତ ରିଜର୍ଭ କରିନେଲେ ଏବଂ ତହିଁରେ ସମସ୍ତ ପ୍ରକାର ଟ୍ରେନ୍ ଚଳାଚଳ ବନ୍ଦ କରିଦେଇ କେବଳ ବାର୍ବିକେନ୍‌ଙ୍କ ସାଲୁନ୍ ସବୁଆଡ଼େ ଯେପରି ଅବାଧରେ ଗୋଟିଏଦିନଯାଏ ବୁଲିପାରିବ, ତାର ସୁବିଧା କରିଦେଲେ ।

ବାର୍ବିକେନ୍ ବନ୍ଧୁମାନଙ୍କ ସହ ବାଲ୍‌ଟିମୋରରେ ପହଞ୍ଚି ସାମାନ୍ୟ ବିଶ୍ରାମ ପରେ ସେହିଦିନ ଆମେରିକା ଭ୍ରମଣରେ ବାହାରିଲେ । ସେମାନେ ସବୁଆଡ଼େ ଅବାଧରେ ଭ୍ରମଣ କରି ପ୍ରତି-ଷ୍ଟେସନରେ ଲୋକମାନଙ୍କୁ ଦେଖାଦେଲେ ଏବଂ ଭ୍ରମଣ ସମ୍ବନ୍ଧରେ କେତେକ ସମ୍ବାଦ ଜଣାଇବାକୁ ଲାଗିଲେ । ଲୋକଙ୍କ ଉତ୍ସାହ, ଆନନ୍ଦ ଓ ବିପୁଳ ଅଭ୍ୟର୍ଥନା ସୀମା ଅତିକ୍ରମ କରିଗଲା ।

ସମଗ୍ର ଆମେରିକାରେ ଏହା ଗୋଟାଏ ଜାତୀୟ ଉତ୍ସବରେ ପରିଣତ ହେଲା । ପ୍ରତ୍ୟେକ ପୁରପଲ୍ଲୀ ବିବିଧ ଆଡ଼ମ୍ବରରେ ସଜ୍ଜିତ ହୋଇଥିଲା । ସବୁଆଡ଼େ ଭୋଜି, ଗାନ ବାଜଣା, ନାଚତାମସା ଓ ଖେଳ କୌତୁକର ବାତ୍ୟା ବୋହିଗଲା । କେଉଁ କେଉଁଠାରେ ବାର୍ବିକେନ୍‌ଙ୍କ ଦଳ ଯୋଗଦେଇ ପାରୁଥିଲେ, କେଉଁ କେଉଁଠାରେ

ଅବା ଯୋଗଦେଇ ନ ପାରି ବାର୍ତ୍ତା ପଠାଇ ଦେଇଥିଲେ । ଏପରି ଉତ୍ସବର ଉନ୍ମାଦନା ସ୍ପବଦନ ପର୍ଯ୍ୟନ୍ତ ଲାଗି ରହିଥିଲା ।

ବାର୍ବିକେନ୍‌ଙ୍କ ଭ୍ରମଣ ବୃତ୍ତାନ୍ତର ସମସ୍ତ ନୋଟ୍ ନିଉୟର୍କ ହେରାଲ୍‌ଡ ବିପୁଳ ଦାମରେ କିଣିନେଲା ଏବଂ ଉତ୍ସବର ଦ୍ୱିତୀୟ ଦିନ ତହିଁର ଅଧା ପ୍ରକାଶ କଲା । ତାହା ପଢ଼ିବାକୁ ଲୋକଙ୍କ ବ୍ୟାକୁଳତା ଅସୀମ । କାଗଜର ପ୍ରତିପୃଷ୍ଠାକୁ ମଧ୍ୟ ଲୋକେ ଦାମ୍‌ଦେଇ କିଣି-ନେବାକୁ ଗ୍ରହିଁଲେ । ଫଳରେ ସେଦିନ ପଞ୍ଚାଶ ଲକ୍ଷ କାଗଜ ଛପାହୋଇ ବିକି ହୋଇଥିଲା ।

ଉତ୍ସବ ସ୍ପବଦନ ସେମାନେ ସମଗ୍ର ଆମେରିକାରେ ଭ୍ରମଣକରି ପଞ୍ଚମଦିନ ବାଲ୍‌ଟିମୋରକୁ ଫେରିଆସିଲେ ଏବଂ ଅନ୍ତର୍ଗ୍ରହ ମଣ୍ଡଳ ଅବିଷ୍କାର ପାଇଁ ଜାତୀୟ କମ୍ପାନୀ ବୋଲି ଗୋଟିଏ ଅନୁଷ୍ଠାନ ଗଢ଼ିଲେ । ତହିଁରେ ବାର୍ବିକେନ୍ ସଭାପତି, କ୍ୟାପ୍‌ଟେନ ନିକୋଲ ଉପସଭାପତି, ଯେ. ଟି. ମାଷ୍ଟନ୍ ସେକ୍ରେଟାରୀ ଓ ମାଇକେଲ ଅର୍ଡାନ୍ ଡିରେକ୍‌ଟର ରହିଲେ । ସେ କମ୍ପାନୀର ଉଦ୍ଦେଶ୍ୟ ହେଲାଯେ, ଅନ୍ତର୍ଗ୍ରହ ମଣ୍ଡଳ ମଧ୍ୟରେ ପରସ୍ପର ଭିତରେ କିପରି ବାକ୍ୟ ବିନିମୟ, ଦ୍ରବ୍ୟ ଆଦାନପ୍ରଦାନ ଓ ଯାତାୟାତର ବ୍ୟବସ୍ଥା କରାଯାଇ ପାରିବ, ତା ପାଇଁ ସେମାନେ ଉପାୟ ଉଦ୍‌ଭାବନ କରିବେ ଏବଂ ସେମାନଙ୍କ ଅପୂର୍ବ ବୈଜ୍ଞାନିକ କୌଶଳ ପ୍ରଦର୍ଶନ କରି ଜଗତବାସୀଙ୍କୁ ଚମତ୍କୃତ କରିବେ ।

**ସମାପ୍ତ**

---

ମୁଦ୍ରାକର ଶ୍ରୀ ରାମଚନ୍ଦ୍ର କର, ସାରସ୍ୱତ ପ୍ରେସ, କଟକ-୮ ୧୯୬୨